

# ସାଇ କଲ୍ଲୋଳ

## ଶ୍ରୀ ଶିରିଡ଼ି ସାଇବାବାଙ୍କ ଲୀଳାମାହାତ୍ମ୍ୟର ଝଲକ

ଡଃ ଫକୀର ମୋହନ ସାହୁ

ପରି ଭଲ ଭଲ ଭାବ ଉଚ୍ଛୁଳି ଉଠୁଥିବା ସମୟରେ ତାହାର କେନ୍ଦ୍ରବିନ୍ଦୁ ରୂପେ ଈଶ୍ୱରଙ୍କୁ ସେସବୁର ଉତ୍ସ ରୂପେ ନିବେଦନ ଜଣାଇବା ଭକ୍ତି ଯୋଗର ଅଭିବ୍ୟକ୍ତି ହେବ ।

ଜ୍ଞାନ, ଭକ୍ତି ଓ କର୍ମ ଭିନ୍ନ ଭିନ୍ନ ନୁହନ୍ତି । ଦୈନନ୍ଦିନ ଜୀବନର ଗତି ମଧ୍ୟରେ ଏ ତିନୋଟି ଧାରାର ଏକତ୍ରୀକରଣ ସମ୍ଭବ । କର୍ମମୟ ମୁହୂର୍ତ୍ତରେ ସମର୍ପିତ କର୍ମର ମନୋଭାବ, ଭାବନାମୟ ମୁହୂର୍ତ୍ତରେ ଈଶ୍ୱରଙ୍କର ଚିନ୍ତା ଏବଂ ଆନନ୍ଦ ବେଳାରେ ଈଶ୍ୱରଙ୍କୁ ପ୍ରୀତିର ସହିତ ସମର୍ପଣ ସାଧନାକୁ ମହତ୍ତର କରିବା ସଂଗେ ସଂଗେ ଆତ୍ମୋପଲବ୍ଧିର ମାର୍ଗ ପ୍ରଶସ୍ତ କରିବ । ଅବତାର ପୁରୁଷ ଶ୍ରୀ ଶିରିଡ଼ି ସାଇଙ୍କ ଦିବ୍ୟ ସନ୍ଦେଶରେ ଏବଂ ତାଙ୍କର ଦିବ୍ୟ ସଂକଳ୍ପରେ ଏ ତିନୋଟି ଧାରାର ସମନ୍ୱୟ ଆମ ଜୀବନ ପାଇଁ ସ୍ପଷ୍ଟ ସଂକେତ ବହନ କରିଛି ।



# ସାଇ କଲ୍ଲୋଳ

ଶ୍ରୀ ଶିରିଡ଼ି ସାଇବାବାଙ୍କ ଲୀଳାମହାତ୍ମ୍ୟର ଝଲକ



ଡଃ ଫକୀର ମୋହନ ସାହୁ

ପ୍ରକାଶକ

**ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ**

ବିନୋଦବିହାରୀ, କଟକ - ୨

ସାଇ କଲ୍ଲୋଳ

ଲେଖକ :
ଡଃ ଫକୀର ମୋହନ ସାହୁ

ପ୍ରକାଶକ :
ଶ୍ରୀ ଗଙ୍ଗାଧର ତ୍ରିପାଠୀ
ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ
ବିନୋଦବିହାରୀ, କଟକ-୨

ପ୍ରଥମ ସଂସ୍କରଣ : ୨୦୧୧

ପ୍ରଚ୍ଛଦ :
ବିଜୟ ପ୍ରଧାନ

ଅକ୍ଷରସଜ୍ଜା :
ମିନି ଡି.ଟି.ପି., କଟକ-୨.

ମୁଦ୍ରଣ :
ସଙ୍ଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ :
ଟ.୭୫.୦୦

SAI KALLOLA

**Author :**
Dr. Fakir Mohan Sahoo

**Publisher :**
Sri Gangadhar Tripathy
**Prachi Sahitya Pratisthan**
Binodbihari, Cuttack-753002

**New Edition : 2011**

**Cover Design :**
Bijay Pradhan

**Laser Typeset :**
Mini DTP, Cuttack-2

**Printers :**
Sangita Printers, Cuttack

**Price : 75.00**

# ମୁଖଶାଳା

ସାଇ ଅନନ୍ତ, ସାଇର କଥା ଅନନ୍ତ । ସେ ଅନନ୍ତ ସାଗରକୁ ଧରିରଖିବା ଅସମ୍ଭବ ନିଶ୍ଚୟ । କିନ୍ତୁ ସାଇକଥାର କେତୋଟି କଲ୍ଲୋଳର ଚିନ୍ତନ, ସ୍ମରଣ ଓ ମନନ ନିଶ୍ଚିତ ଭାବରେ ଜୀବନଜ୍ୱାଳାକୁ ପ୍ରଶମିତ କରି ମନ ଓ ଆତ୍ମାରେ ଅମୃତର ସ୍ପର୍ଶ ଦେଇଥାଏ । ବିଭିନ୍ନ ସମୟରେ ସାଇକଥା କହିବାର ଯେଉଁ ସୌଭାଗ୍ୟମୟ ସୁଯୋଗ ମିଳିଛି, ତାହାକୁ ଆଧାର କରି ସାଇ କଲ୍ଲୋଳ ପୁସ୍ତକ ସାଇ ଚରଣାବିନ୍ଦରେ ସମର୍ପିତ ।

ଏଥିରେ ପ୍ରକାଶ ପାଉଥିବା ପ୍ରାୟ ସମସ୍ତ ରଚନା 'ସାଇବାଣୀ' ପତ୍ରିକାରେ ସ୍ଥାନ ପାଇଥିଲା । ସେଥିପାଇଁ ଶ୍ରୀଯୁକ୍ତ ସୁରେଶ ଚନ୍ଦ୍ର ପଣ୍ଡା ଓ ଶ୍ରୀମତୀ ଜୟନ୍ତୀ ରଥଙ୍କୁ କୃତଜ୍ଞତା ଜଣାଉଛି । ପୁସ୍ତକ ପ୍ରକାଶନରେ ଆଗ୍ରହ ଦର୍ଶାଇଥିବାର ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନର ସତ୍ତ୍ୱାଧିକାରୀ ଶ୍ରୀ ଗଙ୍ଗାଧର ତ୍ରିପାଠୀ ଏବଂ ଶ୍ରୀ ଶକ୍ତିପ୍ରସାଦ ତ୍ରିପାଠୀଙ୍କୁ ଧନ୍ୟବାଦ ଦେଉଛି ।

'ସାଇ କଲ୍ଲୋଳ'ରେ ଅବଗାହନ କରି ଓଡ଼ିଶାର ଭାଇଭଉଣୀମାନେ ସୁଖଶାନ୍ତିର ଅନୁଭବ ପାଆନ୍ତୁ, ଏହା ମୋର ଐକାନ୍ତିକ ପ୍ରାର୍ଥନା ।

**ଫକୀରମୋହନ ସାହୁ**
ସାଇଛାୟା
ଭି.ଆଇ.ଏମ୍. ୯୯, ଶୈଳଶ୍ରୀ ବିହାର,
ଭୁବନେଶ୍ୱର-୨୧

ଶ୍ରୀ ପଞ୍ଚମୀ
ଫେବୃୟାରୀ ୮, ୨୦୧୧



# ସୂଚୀପତ୍ର

# ଶିରିଡ଼ିକୁ ସାଇବାବାଙ୍କ ଆଗମନ ଓ ଅବସ୍ଥାନ

ମାନବ ଜୀବନକୁ ସଂସ୍କାରମୁଖୀ କରିବାର ସଂକଳ୍ପ ନେଇ ଅବତାର ପୁରୁଷମାନେ ଧରାଧାମରେ ଅବତୀର୍ଣ୍ଣ ହୁଅନ୍ତି । ମନୁଷ୍ୟ ଜୀବନର ପାପତାପ ଦୂରକରି ତାକୁ ଦିବ୍ୟତ୍ୱ ସଂପର୍କରେ ସଚେତନ କରିବାପାଇଁ ଦିବ୍ୟଯୋଜନା ପ୍ରସ୍ତୁତ କରନ୍ତି । ମୁନଷ୍ୟ ଜୀବନର ପରିଧିରେ ପ୍ରବେଶ କରିବା ପୂର୍ବରୁ ସେ ଲୀଳା ରଚନା କରି ପ୍ରଥମେ ଭୌଗୋଳିକ ସ୍ଥାନ ବାଛିନିଅନ୍ତି । ପରବର୍ତ୍ତୀ କାଳରେ ଏହି ଅଖ୍ୟାତ ସ୍ଥାନ ବହୁଜନ-ଚର୍ଚ୍ଚିତ ଓ କୋଟିଜନ-ବନ୍ଦିତ ପୀଠର ରୂପ ନିଏ । ଅବତାର ପୁରୁଷ ଶ୍ରୀ ସାଇବାବାଙ୍କର ଶିରିଡ଼ିକୁ ଆଗମନ ଓ ସେଠାରେ ଅବସ୍ଥାନ ସେହି କ୍ଷୁଦ୍ର ଗ୍ରାମଟିକୁ ଐତିହାସିକ ସ୍ୱୀକୃତି ପ୍ରଦାନ କରିଥିଲା ।

ଊନବିଂଶ ଶତକର ମଧ୍ୟଭାଗରେ ଶିରିଡ଼ି ବର୍ତ୍ତମାନର ବହୁଲୋକ କେନ୍ଦ୍ରିତ ରୂପଠାରୁ ଭିନ୍ନ ଥିଲା । ଶିରିଡ଼ି ଗ୍ରାମ ମହାରାଷ୍ଟ୍ରର ଅହମ୍ମଦନଗର ଜିଲ୍ଲାରେ ଗୋଦାବରୀ ନଦୀର ଅବବାହିକାରେ ଅବସ୍ଥିତ । ଏ ଶତକର ପ୍ରାରମ୍ଭରେ ଏ ଗ୍ରାମରେ ବସବାସ କରୁଥିବା ବହୁଲୋକ ଜଳସେଚନର ସୁବିଧା ପାଇଁ ଆଖୁଚାଷ ଆରମ୍ଭ କଲେ । ଏବେ ମଧ୍ୟ ଏ ସ୍ଥାନକୁ ପ୍ରବେଶ କଲାବେଳେ ଆଖୁକ୍ଷେତ୍ରରୁ ବହି ଆସୁଥିବା ଗନ୍ଧ ନାକକୁ ବାନ୍ଧିଦିଏ । ଅନ୍ତତଃ ୧୯୧୯ ମସିହା ପର୍ଯ୍ୟନ୍ତ ଶିରିଡ଼ି ସେପରି ଉଲ୍ଲେଖଯୋଗ୍ୟ ଭାବରେ ଉତ୍ପାଦନଶୀଳ ନଥିଲା । ଗ୍ରାମର ଅଧିକାଂଶ ବ୍ୟକ୍ତି ଚାଷ ଓ କ୍ଷେତକାମ କରି ଜୀବନ ଧାରଣ କରୁଥିଲେ । ଗ୍ରାମରେ ବିକ୍ଷିପ୍ତ ଭାବରେ ପ୍ରାୟ ଦୁଇଶହ ଘର ଥିଲା ଏବଂ ଲୋକସଂଖ୍ୟା ପ୍ରାୟ ଏକ ହଜାର ମଧ୍ୟରେ ସୀମିତ ଥିଲା । ଗ୍ରାମର ଅଧିକାଂଶ ବ୍ୟକ୍ତି ହିନ୍ଦୁ ଥିଲେ । ଜନବସତିର ପ୍ରାୟ ଏକ ଦଶମାଂଶ ମୁସଲମାନ ଥିଲେ ଏବଂ ସେମାନେ କୌଳିକ ବୃତ୍ତିରେ କାରିଗରୀ କାମକରି କିମ୍ବା କ୍ଷେତର ଶ୍ରମିକରୂପେ କାର୍ଯ୍ୟ କରୁଥିଲେ । ଗ୍ରାମରେ ମାରୁତି ଓ ଖଣ୍ଡୋବାଙ୍କର ଦୁଇଟି ହିନ୍ଦୁମନ୍ଦିର ଥିଲା । ବିଠଲାଙ୍କର ଗୋଟିଏ ଛୋଟ ମନ୍ଦିର ମଧ୍ୟ ଥିଲା । ବିଠଲାଙ୍କ ମନ୍ଦିର ପାଖରେ ଅବହେଳିତ ଅବସ୍ଥାରେ ଗୋଟିଏ ମସ୍ଜିଦ୍ ଥିଲା । ଶିରିଡ଼ିର ପ୍ରଖ୍ୟାତି

ପ୍ରସାରିତ ହେବା ପୂର୍ବରୁ ଏହାର କଳେବର ଏହିପରି ସାଧାରଣ ଓ ଅନାକର୍ଷଣୀୟ ରହିଥିଲା ।

**ଆଗମନ :** ପ୍ରଭାତ ସୂର୍ଯ୍ୟର ଆଗମନରେ ଧରାପୃଷ୍ଠ ଆଲୋକିତ ହୋଇଉଠିଲା ପରି ସାଇବାବାଙ୍କ ଆଗମନ ଶିରିଡ଼ିକୁ ନବରୂପ ପ୍ରଦାନ କଲା । ସେ କେଉଁଠାରୁ ଆସିଲେ ସେ ବିଷୟରେ ମତାମତର ଭିନ୍ନତା ଥାଇପାରେ । ମାତ୍ର ଭକ୍ତମାନଙ୍କର ଜୀବନରେ ଆଧାତ୍ମିକ ରୂପାନ୍ତର ଦୃଢ଼ କରିବାର ଲକ୍ଷ୍ୟ ନେଇ ଅଜାତଶ୍ମଶ୍ରୁ ସୁନ୍ଦର କିଶୋରଟି 'ନିମ୍ବ' ଗଛ ମୂଳରେ ଆବିର୍ଭୂତ ହେଲେ । ନାନା ଚୋପଦାରଙ୍କ ବୃଦ୍ଧମାତା ୧୯୦୦ ମସିହାରେ କହିଲେ ଯେ ସେ କିଶୋରୀ ଥିବାବେଳେ ଜଣେ ଫକୀରଙ୍କୁ ପ୍ରଥମଥର ପାଇଁ ଶିରିଡ଼ିରେ ଦେଖିଲେ । କିଶୋର ବୟସର ଏହି ବାଳକଟି ବିଷୟରେ ଅଧିକ କିଛି ଜଣାପଡୁ ନଥିଲେ ମଧ ସେ ବ୍ରହ୍ମଜ୍ଞାନୀ ବୋଲି ମନେ ହେଉଥିଲା । ପାର୍ଥିବ ବିଷୟ ପ୍ରତି ତାଙ୍କର ଆଗ୍ରହ ନଥିଲା । ଅଧିକାଂଶ ସମୟ ସେ ନିମ୍ବଗଛ ମୂଳରେ ଧ୍ୟାନାବିଷ୍ଟ ରହୁଥିଲେ । ତାଙ୍କର ଶରୀର ଗୌରବର୍ଣ୍ଣ ସତେଜ ଓ କମନୀୟ ଥିଲା । ଖରାବର୍ଷାକୁ ଭ୍ରୂକ୍ଷେପ ନ କରି ସେ କଠୋର ସାଧନାରେ ମଗ୍ନ ରହୁଥିଲେ । ଅନ୍ୟମାନଙ୍କ ସହିତ ବିଶେଷ ସଂପର୍କ ନଥିଲା । ସ୍ଥିରଚିତ୍ତ ଓ ଅନାଶକ୍ତିର ପ୍ରତୀକ ଏହି କିଶୋର କ୍ରମେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କଲା ।

ଶ୍ରୀ ଶିରିଡ଼ି ସାଇବାବାଙ୍କ ବିଷୟରେ ଲିଖିତ ନିତ୍ୟ ପାରାୟଣ ଗ୍ରନ୍ଥ ଶ୍ରୀ ସାଇ ସତ୍‌ଚରିତ ଅନୁଯାୟୀ ଶିରିଡ଼ିରେ ବାବାଙ୍କର ପ୍ରଥମ ଆବିର୍ଭାବ ୧୮୫୪ ମସିହାରେ ହୋଇଥିଲା । ବାଳକଟିର ଆଗମନ ଲୋକମାନଙ୍କ ମନରେ ଯେଉଁ ବିସ୍ମୟ ସଞ୍ଚାର କରିଥିଲା ତାହାର ଉପଶମ ଘଟିଥିଲା ଏକ କୌତୁହଳପୂର୍ଣ୍ଣ ଘଟଣା ମାଧମରେ । ସତ୍ ଚରିତରେ ବର୍ଣ୍ଣନା ଅଛି ଯେ ଥରେ ଭଗବାନ ଖଣ୍ଡୋବା ଜଣେ ଭକ୍ତ ଦେହରେ ପ୍ରବେଶ କଲେ । ଏହି ସୁଯୋଗରେ ଗ୍ରାମବାସୀମାନେ ତାଙ୍କୁ ନବାଗତ କିଶୋର ବିଷୟରେ ପଚାରି ବସିଲେ । ଭଗବାନ ଖଣ୍ଡୋବା ଲୋକଦେହରେ ଥାଇ ଗୋଟିଏ ଶାବଳ ଆଣି ଏକ ନିର୍ଦ୍ଦିଷ୍ଟ ଜାଗାକୁ ଖୋଳିବାକୁ କହିଲେ । ଖୋଳିଲାପରେ ଗୋଟିଏ ବଡ଼ ପଥର ଖଣ୍ଡ ଦେଖାଗଲା । ପଥର ଖଣ୍ଡଟି ଉଠାଇଦେବା ପରେ ତା' ତଳେ ଏକ ସୁଡ଼ଙ୍ଗ ପଥ ଦେଖାଗଲା । ଏହି ପଥରେ ଚାରିଗୋଟି ସାମୋୟୀ (ପ୍ରଦୀପ) ଜଳୁଥିଲା । ଏହି ସୁଡ଼ଙ୍ଗଟି ଗୋଟିଏ ଗୁମ୍ଫା ଭଳି କକ୍ଷ ପର୍ଯ୍ୟନ୍ତ ଯାଇଥିଲା ଏବଂ ସେହି କକ୍ଷରେ ଗୋ-ମୁଖାକୃତିର ମୁଖା, କାଠପଟା ଓ ହାର ପ୍ରଭୃତି ଦେଖିବାକୁ ମିଳିଥିଲା । ଖଣ୍ଡୋବା କହିଥିଲେ ଯେ ବାଳକଟି ସେହିଠାରେ ବାରବର୍ଷ ଧରି ତପସ୍ୟା

କରିଥିଲା । ଏହାପରେ ଲୋକମାନେ ବାଳକଟିକୁ ଅନେକ ପ୍ରଶ୍ନ ପଚାରିଥିଲେ । ମାତ୍ର ବାଳକଟି ସେ ସବୁ ପ୍ରଶ୍ନ ଏଡ଼ାଇଯାଇ ଏହା ତା'ର ଗୁରୁଙ୍କର ସ୍ଥାନ ବୋଲି କହିଥିଲା । ଉକ୍ତ ସ୍ଥାନଟିକୁ ସୁରକ୍ଷିତ ରଖି ତାକୁ ପବିତ୍ର ଭୂମିର ମର୍ଯ୍ୟାଦା ଦେବାକୁ ଅନୁରୋଧ କରିଥିଲା । ଲୋକମାନେ ଅନୁରୋଧ ରକ୍ଷାକରି ସୁଡ଼ଙ୍ଗଟିକୁ ପୂର୍ବପରି ବନ୍ଦ କରିଦେଲେ । ବାବାଙ୍କର ଭକ୍ତମାନେ ଏହି ସ୍ଥାନଟିକୁ ବାବାଙ୍କ ଗୁରୁଙ୍କ ବିଶ୍ରାମସ୍ଥାନ ମନେକରି ସାଷ୍ଟାଙ୍ଗ ପ୍ରଣିପାତ ଜଣାଇଥାଆନ୍ତି ।

ଦୀପ୍ତିମାନ ସୂର୍ଯ୍ୟ ଆକସ୍ମିକ ବାଦଲ ଘେର ମଧ୍ୟରେ କିଛିସମୟ ପାଇଁ ଲୋକଦୃଷ୍ଟିରେ ଅନ୍ତର୍ଦ୍ଧାନ ହୋଇଗଲା ପରି ଶିରିଡ଼ିରେ ଆବିର୍ଭୂତ ତାପସ-କିଶୋରଟି ହଠାତ୍ ଗ୍ରାମରୁ ଚାଲିଗଲେ । ସେ କେତେ ମାସ ଶିରିଡ଼ିରୁ ବାହାରେ ରହିଲେ ଏବଂ କେଉଁ କାର୍ଯ୍ୟରେ ନିମଗ୍ନ ଥିଲେ, ସେ ସଂପର୍କରେ ଏକାଧିକ ମତ ରହିଛି । କିନ୍ତୁ ଏ କଥା ସ୍ୱୀକୃତ ଯେ ସେ ଚାନ୍ଦ ପଟିଲଙ୍କ ଦ୍ୱାରା ଆୟୋଜିତ ଏକ ବରଯାତ୍ରୀ ଦଳରେ ଶିରିଡ଼ିରେ ପୁନଶ୍ଚ ପଦାର୍ପଣ କଲେ ।

ପୂର୍ବରୁ ଏକ ନିର୍ଦ୍ଦିଷ୍ଟ ଘଟଣାର ପରିପ୍ରେକ୍ଷୀ ମଧ୍ୟରେ ସାଇବାବାଙ୍କର ସହିତ ଚାନ୍ଦ ପଟିଲଙ୍କ ସଂଯୋଗ ଘଟିଥିଲା । ମହାରାଷ୍ଟ୍ରର ଔରଙ୍ଗାବାଦ୍ ଜିଲ୍ଲାର 'ଧୂପ୍' ଗ୍ରାମରେ ଚାନ୍ଦ୍ ପଟିଲ୍ ବସବାସ କରୁଥିଲେ । ଥରେ ଔରଙ୍ଗାବାଦ୍ ଯାଉଥିବା ବେଳେ ସେ ତାଙ୍କର ଘୋଡ଼ାଟି ହଜାଇ ବସିଲେ । ଦୁଇ ମାସ ଧରି ଚେଷ୍ଟା କରିବା ସତ୍ତ୍ୱେ ସେ ନିଜ ଘୋଡ଼ାର ସନ୍ଧାନ ପାଇ ନଥିଲେ । ବ୍ୟର୍ଥମନୋରଥ ହୋଇ ଅବ୍ୟବହୃତ ଘୋଡ଼ାର ଲଗାମଟିକୁ ଧରି ସେ ଔରଙ୍ଗାବାଦ୍‌ରୁ ଫେରୁଥିଲେ । ଆସିଲା ବେଳେ ସେ ଜଣେ ଫକୀରକୁ ଦେଖିଲେ । ଫକୀରଜଣକ ଚିଲମ ଧରିଥିଲେ । ସେ ଚାନ୍ଦ୍ ପଟିଲ୍‌କୁ ଡାକି କିଛି ସମୟ ବିଶ୍ରାମ ନେବାକୁ କହିଲେ । ଫକୀରଜଣକ ଲଗାମ ବିଷୟରେ ପଚାରିବାରୁ ଚାନ୍ଦ୍ ପଟିଲ୍ ତାଙ୍କର ହଜିଥିବା ଘୋଡ଼ାକଥା କହିଲେ । ଫକୀର ଏକ ନିର୍ଦ୍ଦିଷ୍ଟ ସ୍ଥାନର ସୂଚନା ଦେଇ ସେଠାରେ ଘୋଡ଼ାଟି ମିଳିଯିବ ବୋଲି ଇଙ୍ଗିତ ଦେଲେ । ଆଶ୍ଚର୍ଯ୍ୟର କଥା ଚାନ୍ଦ୍ ପଟିଲ୍ ସେ ସ୍ଥାନରେ ଘୋଡ଼ାଟି ପାଇଲେ । ସେ ଅନୁଭବ କଲେ ଅତି ସାଧାରଣ ଦେଖାଯାଉଥିବା ଫକୀରଜଣକ ନିଶ୍ଚିତ ଭାବରେ ଜଣେ ଅସାଧାରଣ ସିଦ୍ଧପୁରୁଷ ।

ଘୋଡ଼ାଟିକୁ ପାଇବାର ବିସ୍ମୟ ସହିତ ଆଉ ଗୋଟିଏ ଘଟଣା ଚାନ୍ଦ୍ ପଟିଲ୍‌ଙ୍କ ଅନୁଭବକୁ ଦୃଢ଼ କଲା । ଗଛ ମୂଳରେ ବସିଥିବା ଫକୀର ଚିଲମ୍ ପ୍ରସ୍ତୁତ କରିସାରିଥିଲେ ସତ, କିନ୍ତୁ ଚିଲମ୍‌ରେ ଅଗ୍ନି ସଂଯୋଗ କରିବା ପାଇଁ ନିଆଁ ନଥିଲା । ନିରର୍ଥକ

ଚିଲମ୍ ପ୍ରସ୍ତୁତିକୁ ପଟିଲ୍ ଜିଜ୍ଞାସୁ ନୟନରେ ଚାହିଁଥିଲେ । ନିଜ ପାଖରେ ଥିବା ଲୌହ ଚିମୁଟାକୁ ଉଠାଇ ଫକୀର ସାମନା ଭୂଇଁର ଚଟାଣ ହାଣିଲେ ଏବଂ ଚିମୁଟାକୁ ମାଟିରୁ ବାହାର କରିନେଲେ । ଭୂମି ବିଦୀର୍ଣ୍ଣ କରି ପ୍ରସ୍ରବଣଟି ସୃଷ୍ଟିହେଲା ପରି ଜଳର ସ୍ରୋତ ଝରି ଆସିଲା । ସେ ଲୁଗାର ଅଂଶ ବିଶେଷକୁ ଜଳରେ ଓଦା କଲେ । ତା'ପରେ ଚିମୁଟା ସାହାଯ୍ୟରେ ଦୁଇ ଅଙ୍ଗୁଳିଖଣ୍ଡେ ଖୋଳିଲେ । ଖୋଳିବା ପରେ ମାଟିକୁ ଆଡ଼େଇ ଦେଲେ । ଗର୍ଭ ଗହ୍ୱରରେ ଜ୍ୱଳନ୍ତ ଅଙ୍ଗାର ଦୃଷ୍ଟିଗୋଚର ହେଲା । ଅଙ୍ଗାରକୁ ଚିମୁଟାରେ ଉଠାଇ ଚିଲମ୍‌ରେ ଅଗ୍ନି ସଂଯୋଗ କଲେ । ଫକୀର ନିଜେ ଦମେ ଟାଣି ପଟିଲ୍‌ଙ୍କୁ ଚିଲମଟି ଟାଣିବା ପାଇଁ ବଢ଼ାଇଦେଲେ । ପଟିଲ୍ ଜୀବନରେ ଚିଲମ୍ ଟାଣି ନଥିଲେ । ମାତ୍ର ବିସ୍ମୟ ବିମୋହିତ ପଟିଲ୍ ଚିଲମ୍‌ଟି ଗ୍ରହଣ କଲେ ।

ମହାନ୍ ସନ୍ଥଙ୍କୁ ଆମନ୍ତ୍ରଣ କରି ସ୍ୱଗୃହକୁ ନେବାପାଇଁ ଚାନ୍ଦ୍ ପଟିଲ୍‌ଙ୍କ ଆଗ୍ରହ ଜନ୍ମିଲା । ତାଙ୍କ କୁଟୁମ୍ବରେ ବିବାହ ଉତ୍ସବଟିଏ ହେବାର ଥିଲା ଏବଂ ଏହି ଉତ୍ସବରେ ଯୋଗଦେବା ପାଇଁ ସେ ବିନମ୍ର ଅନୁରୋଧ ଜଣାଇଲେ । ଚାନ୍ଦ୍ ପଟିଲ୍‌ଙ୍କ ଆତିଥ୍ୟ ଗ୍ରହଣ କରି ଫକୀର କିଛିଦିନ ତାଙ୍କ ଘରେ ରହିଲେ । ଚାନ୍ଦ୍ ପଟିଲ୍‌ଙ୍କ ଶାଳକଙ୍କ ପୁତ୍ରର ବିବାହ ନିମିତ୍ତ ମନୋନୀତ ପାତ୍ରୀର ଘର ଶିରିଡ଼ିରେ । ସୁତରାଂ ବରଯାତ୍ରୀ ନେଇ ଶିରିଡ଼ି ଯିବାପାଇଁ ପଟିଲ୍ ସବୁ ଆୟୋଜନ କଲେ । ଫକୀର ମଧ୍ୟ ଏହି ବରଯାତ୍ରୀ ଦଳରେ ଶିରିଡ଼ି ଆସିଲେ ।

ବିଭାଘର ବରଯାତ୍ରୀ ଦଳଟି ଶିରିଡ଼ିରେ ପହଞ୍ଚି ପ୍ରଥମେ ଖଣ୍ଡୋବା ମନ୍ଦିର ନିକଟସ୍ଥ ଭଗତ୍ ମହଲାସ୍‌ପତିଙ୍କ ଜମିରେ ଥିବା ବରଗଛମୂଳରେ ଅଟକିଲେ । ଖଣ୍ଡୋବା ମନ୍ଦିରର ପ୍ରାଙ୍ଗଣରେ ଗାଡ଼ିସବୁ ରଖାଗଲା । ଘୋଡ଼ାମାନଙ୍କୁ ଖୋଲି ଦିଆଗଲା । ବରଯାତ୍ରୀମାନେ ଗାଡ଼ିରୁ ଧୀରେ ଧୀରେ ଓହ୍ଲାଇଲେ । ଫକୀର ମଧ୍ୟ ଓହ୍ଲାଇଲେ । ଭଗତ ମହଲାସ୍‌ପତି ଫକୀରକୁ ଚିହ୍ନିପାରି ''ୟା ସାଇ'' (ସ୍ୱାଗତ ସାଇ) ବୋଲି ସମ୍ଭାଷଣ କରିଥିଲେ । ସେହିଦିନଠାରୁ ସେ ସାଇବାବା ନାମରେ ପରିଚିତ ହେଲେ ।

ବିବାହ କାର୍ଯ୍ୟ ସଂପନ୍ନ ହେବାପରେ ବରଯାତ୍ରୀ ଦଳ 'ଧୂପ୍' ଗ୍ରାମକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ମାତ୍ର ସାଇ ଚିରଦିନ ପାଇଁ ଶିରିଡ଼ିରେ ରହିଗଲେ ।

ପୁନରାଗମନ ପରେ ବାବା ରହିବା ପାଇଁ ଏକ ସ୍ଥାନର ଆବଶ୍ୟକତା ଥିଲା । ବାବା ଖଣ୍ଡୋବା ମନ୍ଦିର ଓ ତାର ପରିବେଶ ଦେଖି ମୁଗ୍ଧ ହେଲେ । ରହିବା ପାଇଁ ଏ ସ୍ଥାନଟି ଖୁବ୍ ଉପଯୁକ୍ତ ବୋଲି ବିଚାର କଲେ । ମାତ୍ର ଗ୍ରାମବାସୀମାନେ ତାଙ୍କୁ

ମୁସଲମାନ ବୋଲି ଭାବୁଥିଲେ ଏବଂ ମନ୍ଦିରର ପୂଜକ ମହଲାସ୍‌ପତି ବାବାଙ୍କର ଅନୁଗତ ହୋଇଥିଲେ ମଧ୍ୟ ଏ ଦିଗରେ ସମ୍ମତି ଦେଇପାରିଲେ ନାହିଁ । ମହଲାସ୍‌ପତି ଏପରି ଇଙ୍ଗିତ ଦେଇ ପରିତ୍ୟକ୍ତ ଅବସ୍ଥାରେ ପଡ଼ିରହିଥିବା ମସ୍‌ଜିଦ୍‌ର ମରାମତି କରାଇ ସେଠାରେ ରହିବାର ବନ୍ଦୋବସ୍ତ କରାଯାଇପାରେ ବୋଲି ସୂଚନା ଦେଲେ ।

ବାବା ପୁରୁଣା ନିମଗଛ ମୂଳକୁ ଆସିଲେ ଏବଂ ନିଜର ବିଶ୍ରାମସ୍ଥଳୀ ରୂପେ ବାଛିନେଲେ । ନିଜର ଖାଦ୍ୟ ପାଇଁ ସେ ନିଜେ କୌଣସି ବ୍ୟବସ୍ଥା କରୁ ନଥିଲେ । ଗ୍ରାମରେ ମୁଖ୍ୟ ଗଣପତି ରାଏ ପଟିଲ୍‌ଙ୍କ ପତ୍ନୀ ବାୟାଜୀ ବାଈ ବାବାଙ୍କ ପାଇଁ ଖାଦ୍ୟର ବ୍ୟବସ୍ଥା କରୁଥିଲେ । ଅଳ୍ପଦିନ ପରେ ବାବା ପରିତ୍ୟକ୍ତ ଓ ଅବହେଳିତ ମସ୍‌ଜିଦ୍ ଆସି ସେଠାରେ ରହିବାକୁ ଲାଗିଲେ ।

## ଦ୍ୱାରକାମାୟୀର ପ୍ରଭୁ

ସାଇବାବା ମସ୍‌ଜିଦ୍‌ରେ ଅବସ୍ଥାନ କରିବା ପରେ ପରେ ଏହା ନୂତନ ରୂପ ଧାରଣ କଲା । ବାବାଙ୍କର ଅନୁଗତମାନଙ୍କ ପାଇଁ ଏହାର ଦ୍ୱାର ଉନ୍ମୁକ୍ତ ରହିଲା । ବାବା ଏହାର ନାମକରଣ କଲେ 'ଦ୍ୱାରକାମୟୀ' । ଏହି ଦ୍ୱାରକାମାୟୀର ପ୍ରଭୁ ସାଇବାବାଙ୍କ ବ୍ୟକ୍ତିତ୍ୱ ସଂପର୍କରେ ସାଇ ସତ୍‌ଚରିତରେ ନିମ୍ନମତେ ବର୍ଣ୍ଣନା ଦିଆଯାଇଛି :

> ଯେଉଁ ସାଂସାରିକ ମୋହ କାଟିବା ଅତି କଷ୍ଟକର, ସେହି ମୋହମାୟାକୁ ସେ ଜୟ କରିଥିଲେ । ପ୍ରଶାନ୍ତି ବା ମାନସିକ ସ୍ଥିରତା ତାଙ୍କର ଲକ୍ଷଣ ଏବଂ ସେ ଥିଲେ ଜ୍ଞାନର ଅଖଣ୍ଡ ଭଣ୍ଡାର । ବୈଷ୍ଣବ ଭକ୍ତଗଣଙ୍କ ପାଇଁ ସେ ଥିଲେ ଏକ ଆବାସସ୍ଥଳୀ ସ୍ୱରୂପ । ଉଦାରଚେତାଙ୍କ ମଧ୍ୟରେ ସେ ଅତି ଉଦାର, ସକଳ ସାରଗୁଣର ସେ ଥିଲେ ଜୀବନ୍ତ ପ୍ରତୀକ । କ୍ଷୟଶୀଳ ଅନିତ୍ୟ ବିଷୟ ପ୍ରତି ତାଙ୍କର ମୋହ ନଥିଲା ଏବଂ ସର୍ବଦା ସେ ଆତ୍ମଦର୍ଶନରେ ମଜ୍ଜି ରହୁଥିଲେ । ଏହାହିଁ ତାଙ୍କର ଏକମାତ୍ର କର୍ମ ଥିଲା । କୌଣସି ଜାଗତିକ କିମ୍ବା ବହିର୍ଜାଗତିକ ବସ୍ତୁ ପ୍ରତି ତାଙ୍କର ଅନୁରାଗ ନଥିଲା । ତାଙ୍କ ଅନ୍ତର ଥିଲା ଦର୍ପଣ ପରି ସ୍ୱଚ୍ଛ ଏବଂ ତାଙ୍କ ବାଣୀରୁ ସଦାସର୍ବଦା ଅମୃତ ଝରୁଥିଲା । କି ଧନୀ କି ଦରିଦ୍ର ସମସ୍ତେ ତାଙ୍କ ପାଖରେ ସମାନ ଥିଲେ । ଯଶ ବା ଅପଯଶ କ'ଣ, ତାହା ସେ ଜାଣି ନଥିଲେ ବା ସେଥିପାଇଁ ଭ୍ରୂକ୍ଷେପ କରୁ ନଥିଲେ । ସେ ଥିଲେ ସମସ୍ତଙ୍କର ପ୍ରଭୁ ।

ସେ ସ୍ପଷ୍ଟବାଦୀ ଥିଲେ ଏବଂ ସବୁ ଶ୍ରେଣୀର ଲୋକଙ୍କ ସହିତ ମିଶୁଥିଲେ । ନର୍ତ୍ତକୀମାନଙ୍କର ଅଭିନୟ ଦେଖୁଥିଲେ ଏବଂ ଗଜଲ୍ ମଧ୍ୟ ଶୁଣୁଥିଲେ । ତଥାପି ତାଙ୍କର ସମାଧି ବା ମାନସିକ ସ୍ଥିରତାରୁ ସେ ତିଳେହେଲେ ବିଚ୍ୟୁତ ହେଉ ନଥିଲେ । ତାଙ୍କ ତୁଣ୍ଡରେ ସଦାସର୍ବଦା ଆଲ୍ଲାଙ୍କ ନାମ ଉଚ୍ଚାରିତ ହେଉଥିଲା । ଯେତେବେଳେ ପୃଥିବୀ ଜାଗ୍ରତ ସେ ସୁପ୍ତ ଓ ଯେତେବେଳେ ପୃଥିବୀ ସୁପ୍ତ ସେ ଥିଲେ ଜାଗ୍ରତ ପ୍ରହରୀ ସଦୃଶ । ତାଙ୍କ ଅନ୍ତଃସ୍ଥଳୀ ଗଭୀର ସାଗର ଭଳି ସ୍ଥିର ଅଚଞ୍ଚଳ ଥିଲା । ତାଙ୍କ ଆଶ୍ରମ କେଉଁଠି ସ୍ଥିର କରାଯାଇ ପାରୁ ନଥିଲା । ତାଙ୍କର ଗତିବିଧି ମଧ୍ୟ ନିର୍ଦ୍ଦିଷ୍ଟ ଭାବରେ ସ୍ଥିର କରାଯାଇ ପାରୁ ନଥିଲା । ସେ ଗୋଟିଏ ସ୍ଥାନରେ ରହୁଥିଲେ ମଧ୍ୟ ପୃଥିବୀର କେଉଁ କୋଣରେ କ'ଣ ଘଟୁଛି ସବୁ ଜାଣିପାରୁଥିଲେ । ତାଙ୍କର ଦରବାର ବେଶ୍ ଚମତ୍କାର । ପ୍ରତିଦିନ ସେ ଶହ ଶହ କଥା କହୁଥିଲେ ହେଁ, ନିରବତାର ସଂକଳ୍ପରୁ ଦିନେ ବିଚ୍ୟୁତ ହେଉ ନଥିଲେ ।

ବାବା ସିଦ୍ଧପୁରୁଷ ହୋଇଥିଲେ ମଧ୍ୟ ସେ ଏକ ସାଧାରଣ ସାଧକ ଭଳି ଆଚରଣ ଦର୍ଶାଉଥିଲେ । ସେ ଥିଲେ ଜଣେ ସରଳ, ବିନମ୍ର ଓ ଅହଙ୍କାରଶୂନ୍ୟ ବ୍ୟକ୍ତିତ୍ୱ । ତାଙ୍କର ପୋଷାକପତ୍ର ଥିଲା ଅତି ସାଧାରଣ । କଥିତ ଅଛି ଯେ ମୋହିଦ୍ଦିନ୍ ତାମ୍ବୋଲୀ ନାମରେ ଜଣେ ମଲ୍ଲଯୋଦ୍ଧା ସହିତ ତାଙ୍କର ମଲ୍ଲଯୁଦ୍ଧ ଲାଗିଲା ଓ ବାବା ପରାଜିତ ହେଲେ । ତା'ପରେ ବାବାଙ୍କ ପୋଷାକପତ୍ରରେ ପରିବର୍ତ୍ତନ ଆସିଲା । ସେ ଏକ କାଫ୍‌ନୀ (ଲମ୍ବ ପଞ୍ଜାବୀ) ପରିଧାନ କଲେ, ଲେଙ୍ଗୁଟି ମାରିଲେ ଏବଂ ମସ୍ତକକୁ ଗୋଟିଏ କନାରେ ଆବୃତ୍ତ ରଖିଲେ । ବସିବା ପାଇଁ ଓ ଶୋଇବାପାଇଁ ଖଣ୍ଡେ ଅଖା ଆଦରି ନେଲେ ଏବଂ ଛିଣ୍ଡାଫଟା କନ୍ଥାରେ ସନ୍ତୁଷ୍ଟ ରହିଲେ । ବାପା ପାଦରେ କିଛି ବ୍ୟବହାର କରୁ ନଥିଲେ ଏବଂ ଖାଲିପାଦରେ ଚଲାବୁଲା କରୁଥିଲେ ।

କେତେକ ସୂତ୍ରରୁ ଜଣାଯାଏ ଯେ ବାବା ନୃତ୍ୟଗୀତପ୍ରିୟ ଥିଲେ । ବେଳେବେଳେ ସେ ମୁସଲିମ୍ ପରିଦର୍ଶକମାନଙ୍କ ପାଇଁ ଉଦ୍ଦିଷ୍ଟ ବିଶ୍ରାମସ୍ଥଳୀକୁ ରାତିରେ ଯାଉଥିଲେ ଏବଂ ଭକ୍ତି ସଂଗୀତ ଗାନ କରୁଥିଲେ । ସେ ସୁଲଳିତ କଣ୍ଠରେ କବୀରଙ୍କ ଗୀତସବୁ ଗାଉଥିଲେ । ସମ୍ଭବତଃ ସେ ପର୍ସିଆନ ଓ ଆରବିକ୍ ଭାଷାରେ ଗାଉଥିବାରୁ ଲୋକମାନଙ୍କର ବୁଝିବାରେ ଅସୁବିଧା ହେଉଥିଲା । ବେଳେବେଳେ ପାଦରେ ଘୁଙ୍ଗୁର ପିନ୍ଧି ଆନନ୍ଦ ଉଲ୍ଲାସରେ ନାଚୁଥିଲେ ।

ବାବାଙ୍କ ଗୀତ ଓ ନୃତ୍ୟରେ 'ଆଲ୍ଲା' ଓ 'ହରି'ଙ୍କ ପ୍ରତି ପ୍ରେମଭକ୍ତି ପ୍ରକଟିତ ହେଉଥିଲା । ପରବର୍ତ୍ତୀ ସମୟରେ ବାବା ନିଜେ ପ୍ରକାଶ କରିଥିଲେ ଯେ ନିରାକାର ଓ ସାକାର ଉପାସନା ମଧ୍ୟରେ କୌଣସି ବିରୋଧ ନାହିଁ । ନିରାକାର ବ୍ରହ୍ମଙ୍କ ବର୍ଣ୍ଣନା ପାଇଁ ଉଦ୍ଦିଷ୍ଟ କବୀରଙ୍କ ଗୀତସବୁ ବାବାଙ୍କର ଅତିପ୍ରିୟ ଥିଲା । ତଥାପି ନିଜର ଇଷ୍ଟଦେବଙ୍କୁ ସ୍ମରଣ, ବନ୍ଦନ, କୀର୍ତ୍ତନ ଇତ୍ୟାଦି ମାଧ୍ୟମରେ ଗଭୀର ସାକାର ଉପାସନା ବ୍ୟକ୍ତ କରିବା ସଂପୂର୍ଣ୍ଣ ମାନବଧର୍ମୀ ବୋଲି ସେ ବିଚାର କରୁଥିଲେ ।

ବାବା ଉଦ୍ୟାନ କର୍ମରେ ମଧ୍ୟ ନିଜର ଆଗ୍ରହ ଦର୍ଶାଉଥିଲେ । ଶିରିଡ଼ିର ଅଳ୍ପ ଦୂରରେ 'ରାହାତା'ରେ ବିଧିବଦ୍ଧ ଦୋକାନ ବଜାର ସବୁ ଥିଲା । ଥରେ ବାବା ରାହାତରୁ କିଛି ଚାରା ଓ ମଞ୍ଜି ନେଇ ଆସିଲେ । ଉନ୍ମୁକ୍ତ ସ୍ଥାନରେ ଚିହ୍ନଦେଇ ସେଗୁଡ଼ିକ ରୋପଣ କଲେ ଏବଂ ନିୟମିତ ପାଣି ଦେବାକୁ ଆରମ୍ଭ କଲେ । ତାଙ୍କର ଜଣେ ଅନୁଗତ ଗ୍ରାମବାସୀ ବାମନ ତାତିୟା ତାଙ୍କୁ ଦୁଇଟି କଳସୀ ଦେଇଥିଲେ । ବାବା କାନ୍ଧରେ ପାଣିଭରା କଳସୀ ଦୁଇଟି ଧରି ପାଣିଦେବାକୁ ଆସନ୍ତି । ଗଛରେ ପାଣିଦିଆ ସରିଗଲେ କଳସୀ ଦୁଇଟି ରାତିରେ ନିମଗଛ ମୂଳରେ ରଖାଯାଏ । ମାଟି ନିର୍ମିତ ଏହି କଳସୀ ନଷ୍ଟ ହୋଇଯାଏ । ପୁନଶ୍ଚ କଳସୀର ବ୍ୟବସ୍ଥା କରାଯାଏ । କ୍ରମାଗତ ଭାବରେ ପ୍ରାୟ ତିନିବର୍ଷ ଧରି ଏପରି ଯତ୍ନ ନିଆଯିବା ଫଳରେ ଏକ ସୁନ୍ଦର ବଗିଚା ମୁଣ୍ଡଟେକି ଉଠିଲା । ବାବା ଏହି ଉଦ୍ୟାନର ପ୍ରସ୍ଫୁଟିତ ପୁଷ୍ପନେଇ ହିନ୍ଦୁମନ୍ଦିର ଓ ମସ୍‌ଜିଦ୍‌ମାନଙ୍କରେ ବିତରଣ କରୁଥିଲେ । ଏହି ଉଦ୍ୟାନ ଉପରେ ହିଁ ପରବର୍ତ୍ତୀ କାଳରେ ବାବାଙ୍କ ସମାଧି ମନ୍ଦିର ପ୍ରତିଷ୍ଠିତ ହେଲା ।

ଏ ସମସ୍ତ ମାନବୀୟ କାର୍ଯ୍ୟକ୍ରମ ବ୍ୟତୀତ ବାବା ରୀତିମତ ଆସନ ଓ ଯୋଗସାଧନା କରୁଥିଲେ । ସତ୍ ଚରିତରେ ବର୍ଣ୍ଣିତ ଅଛି ଯେ ମସ୍‌ଜିଦ୍‌ଠାରୁ ବେଶ୍ କିଛି ଦୂରରେ ଥିବା ଏକ ବରଗଛ ପାଖ କୂଅ ପାଖକୁ ତିନିଦିନରେ ଥରେ ଯାଉଥିଲେ । ସେଠାରେ ସେ ଧୌତି ବା ପେଟ ଓ ଅନ୍ତନାଳୀ ପରିଷ୍କାର କରିବା ପ୍ରଣାଳୀ ଅବଲମ୍ବନ କରୁଥିଲେ । ଥରେ ସେ ନିଜ ପାକସ୍ଥଳୀର ଅନ୍ତନାଡ଼ିକୁ ବାନ୍ତିକରି ବାହାରକରି ତାକୁ ପରିଷ୍କାର ଭାବରେ ଧୁଆଧୋଇ କରି ଗୋଟିଏ ଜାମୁଗଛ ଡାଳରେ ଶୁଖାଇ ଥିବାର ଦେଖାଯାଇଥିଲା । ଶିରିଡ଼ିର କେତେକ ଗ୍ରାମବାସୀ ବାବାଙ୍କର ଏପରି କାର୍ଯ୍ୟ ଦେଖିଥିଲେ । ସାଧାରଣତଃ ତିନିଇଞ୍ଚ ଓସାରର ସାଢ଼େ ୨୨ ଫୁଟ ଲମ୍ବ ଓଦାକନା ସାହାଯ୍ୟରେ ଧୋତି କରାଯାଏ । ଏହି କନାଖଣ୍ଡିକ ଧୀରେ ଧୀରେ ଗିଳି ପେଟ ଭିତରକୁ ନିଆଯାଏ ଏବଂ ପେଟ ଭିତରେ ପ୍ରାୟ ଅଧଘଣ୍ଟା ରହିବା ପରେ ଧୀରେ

ଧୀରେ ଟାଣି ବାହାର କରାଯାଏ । ମାତ୍ର ବାବାଙ୍କର ଧୌତି ପ୍ରଣାଳୀ ବିଚିତ୍ର ଧରଣର ଥିଲା ।

ସେହିପରି 'ଖଣ୍ଡଯୋଗ' ଅବଲମ୍ବନ କରି ବାବା ଶରୀରର ବିଭିନ୍ନ ଅଙ୍ଗକୁ ଶରୀରରୁ ଅଲଗାକରି ନେଇ ମିସ୍‌ଜିଦ୍‌ର ବିଭିନ୍ନ ସ୍ଥାନରେ ରଖୁଥିଲେ । ଥରେ ଜଣେ ବ୍ୟକ୍ତି ବାବାଙ୍କ ଶରୀରର ବିଭିନ୍ନ ଅଂଶ ମସ୍‌ଜିଦ୍‌ରେ ପୃଥକ୍ ପୃଥକ୍ ସ୍ଥାନରେ ଦେଖି ଭୟଭୀତ ହୋଇ ପଡ଼ିଥିଲେ । ବାବାକୁ ହତ୍ୟା କରାଯାଇଥିବାର ଆଶଙ୍କା କରି ସେ ଗ୍ରାମବାସୀମାନଙ୍କୁ ଖବର ଦେବାପାଇଁ ଉଦ୍ୟତ ଥିଲେ । ମାତ୍ର ତାଙ୍କୁ ହତ୍ୟାକାରୀ ବୋଲି ସନ୍ଦେହ କରାଯାଇପାରେ ଭାବି ସେ ନିରବ ରହିଲେ । ମାତ୍ର ପରଦିନ ସେ ବାବାଙ୍କୁ ସୁସ୍ଥ ସବଳ ଶରୀରରେ ଦେଖିବାକୁ ପାଇଲେ । ତାଙ୍କ ବିସ୍ମୟର ସୀମା ରହିଲା ନାହିଁ ।

ଯୋଗ ସାଧନ ଭଳି ବାବାଙ୍କର ଅସାଧାରଣତ୍ୱ ଲୋକଙ୍କ ମନରେ ଯେପରି ବିସ୍ମୟ ସଞ୍ଚାର କରୁଥିଲା, ତାଙ୍କର ସାଧାରଣ ଜୀବନ ଯାପନ ସେପରି ଅନ୍ତରକୁ ସ୍ପର୍ଶ କରୁଥିଲା । ସାଧାରଣ ଭିକ୍ଷୁକ ପରି ବାବା ଶିରିଡ଼ିର ଘର ଆଗରେ ଠିଆହୋଇ ଭିକ୍ଷାପାଇଁ ଡାକ ଦେଉଥିଲେ ଏବଂ ଭିକ୍ଷା ଗ୍ରହଣ ପାଇଁ ହାତ ବଢ଼ାଇ ଦେଉଥିଲେ । ଗୋଟିଏ ହାତରେ ତାଙ୍କର ଟିଣ ପାତ୍ରଟିଏ ଥିଲା ଏବଂ ଅନ୍ୟ ହାତରେ ଲୁଗାର ଚାରିକୋଣିଆ ଝୁଲିଟିଏ ଥିଲା । ଝୋଳ, ତରକାରୀ, କ୍ଷୀର ବା ଘୋଳଦହି ପରି ତରଳ ଖାଦ୍ୟସବୁ ଟିଣପାତ୍ରରେ ନେଉଥିଲେ ଏବଂ ରୁଟି ଓ ଭାତ ପ୍ରଭୃତି ଖାଦ୍ୟ ଝୋଲିରେ ଗ୍ରହଣ କରୁଥିଲେ । ସଂଗୃହୀତ ହୋଇଥିବା ବିଭିନ୍ନ ପ୍ରକାର ଖାଦ୍ୟସବୁ ଏକାଠି ହୋଇଯିବା ପ୍ରତି ତାଙ୍କର ଭ୍ରୂକ୍ଷେପ ନଥିଲା । ଖାଦ୍ୟସବୁକୁ ଗୋଳାଗୋଳି କରି ମନ ଖୁସିରେ ବାବା ଖାଉଥିଲେ । କେବେକେବେ ଅଳ୍ପ ସମୟ ପାଇଁ ଯାଉଥିଲେ ଏବଂ ଆଉ କେବେ ମଧ୍ୟାହ୍ନ ପର୍ଯ୍ୟନ୍ତ ଭିକ୍ଷା କରୁଥିଲେ । ଭିକ୍ଷାର୍ଜିତ ଖାଦ୍ୟସବୁ ଗୋଟିଏ ମାଟିକୁଣ୍ଡରେ ରଖିଦେଉଥିଲେ । କୁକୁର, ବିରାଡ଼ି ଓ କାଉମାନେ ଆସି ସେଥିରୁ ଖାଉଥିଲେ ମଧ୍ୟ ବାବା ସେମାନଙ୍କୁ ଘଉଡ଼ାଉ ନଥିଲେ । ମସ୍‌ଜିଦ୍ ସେବାକାରୀ କେହି କେହି ସେଥିରୁ ଖାଦ୍ୟ ନେଉଥିଲେ ।

ବାବା ଭିକ୍ଷାବୃତ୍ତି କାହିଁକି ଅବଲମ୍ବନ କରୁଥିଲେ, ସେ ବିଷୟରେ ସାଇ ସତ୍‌ଚରିତର ରଚୟିତା ଦୁଇଟି ବିଚାର ବ୍ୟକ୍ତ କରିଛନ୍ତି । ପ୍ରଥମତଃ ଶାସ୍ତ୍ରାନୁସାରେ ତିନୋଟି ମୁଖ୍ୟ ବାସନା (ବଂଶବୃଦ୍ଧି, ଧନସଂପଦ, ଯଶ ସମ୍ମାନ) ପରିହାର କରିଥିବା ବ୍ୟକ୍ତିମାନଙ୍କର ଭିକ୍ଷାବୃତ୍ତି ଅବଲମ୍ବନ କରିବାର ଅଧିକାର ଅଛି ବୋଲି ସେ କହନ୍ତି ।

ସାଇବାବା ଥିଲେ ଜଣେ ବ୍ରହ୍ମଚାରୀ ସନ୍ନ୍ୟାସୀ । ବାଳକ ଅବସ୍ଥାରୁ ସେ ଥିଲେ ଗୃହତ୍ୟାଗୀ । ତେଣୁ ଭିକ୍ଷାଥାଳ ଆଶ୍ରୟ କରିବାର ତାଙ୍କ ପକ୍ଷରେ ଯଥାର୍ଥ ଥିଲା । ଦ୍ୱିତୀୟତଃ ଖାଦ୍ୟପ୍ରସ୍ତୁତ କରିବା ସମୟରେ ପାଞ୍ଚୋଟି ପ୍ରଣାଳୀ ଅନୁସୃତ ହୁଏ ଏବଂ ଏହାଦ୍ୱାରା ପାଞ୍ଚୋଟି ପାପ କରାଯାଇଥାଏ । କୁଟିବା, ଗୁଣ୍ଡକରିବା, ପାତ୍ର ଧୋଇବା, ଓଳାଓଳି କରିବା ଓ ଚୂଲୀ ଜାଳିବା ପରି ପାଞ୍ଚୋଟି ପ୍ରଣାଳୀ ମଧ୍ୟରେ ବହୁ କୀଟପତଙ୍ଗ ଓ କ୍ଷୁଦ୍ରଜୀବ ବିନଷ୍ଟ ହୁଅନ୍ତି । ଏଥିପାଇଁ ଗୃହୀଲୋକ ପାପଭାଗୀ ହୋଇଥାଏ । ଏ ପାପର ପ୍ରାୟଶ୍ଚିତ ସ୍ୱରୂପ ପାଞ୍ଚୋଟି ତ୍ୟାଗ ସ୍ୱୀକାର କରିବାକୁ ହୋଇଥାଏ । ସେ ତ୍ୟାଗଗୁଡ଼ିକ ହେଲା : (୧) ବ୍ରହ୍ମଙ୍କୁ ସମର୍ପଣ ବା ବେଦପାଠ, (୨) ପିତୃଯଜ୍ଞ ବା ପିତୃପୁରୁଷଙ୍କୁ ସମର୍ପଣ, (୩) ଦେବଯଜ୍ଞ ବା ଦେବଦେବୀଙ୍କୁ ସମର୍ପଣ, (୪) ଭୂତଯଜ୍ଞ ବା ଜୀବମାନଙ୍କୁ ସମର୍ପଣ ଓ (୫) ମନୁଷ୍ୟ ଅତିଥିଯଜ୍ଞ ବା ଅତିଥିଙ୍କୁ ସମର୍ପଣ । ଏ ସମସ୍ତ ତ୍ୟାଗ ସ୍ୱୀକାର କରିବା ଦ୍ୱାରା ମନ ପବିତ୍ର ହୁଏ ଏବଂ ଆତ୍ମୋପଲବ୍ଧି ସହଜ ହୁଏ । ଦ୍ୱାର ଦ୍ୱାର ବୁଲି ଭିକ୍ଷା କରିବା ମାଧ୍ୟମରେ ବାବା ଗୃହସ୍ୱାମୀମାନଙ୍କୁ ସେମାନଙ୍କ କର୍ତ୍ତବ୍ୟ ବିଷୟରେ ସଚେତନ କରାଉଥିଲେ ।

ବାବା ଯେଉଁ ଚାରିପାଞ୍ଚଜଣ ଗୃହସ୍ୱାମୀଙ୍କ ଘରକୁ ଭିକ୍ଷାପାଇଁ ଯାଉଥିଲେ ସେମାନଙ୍କ ମଧ୍ୟରେ ଥିଲେ ଗ୍ରାମର ମୁଖ୍ୟ ଗଣପତି ରାଓ ପାଟିଲ କୋଟେ । ପାଟିଲଙ୍କ ପତ୍ନୀ ବାୟାଜୀ ବାଈକୁ ବାବା 'ଭଉଣୀ' ବୋଲି ସମ୍ବୋଧନ କରି ନିଜର ବିଶେଷ ଅନୁରାଗ ଦର୍ଶାଇଥିଲେ । ବାବାଙ୍କୁ ପ୍ରଥମଥର ଦେଖିଲା ବେଳେ ବାୟାଜୀ ବାଈଙ୍କର ମଧ୍ୟ ଅନୁରୂପ ଭାବ ଆସିଥିଲା । ବାବା ନ ଖାଇବା ପର୍ଯ୍ୟନ୍ତ ସେ ଅନ୍ନ ସ୍ପର୍ଶ କରିବେ ନାହିଁ ବୋଲି ଶପଥ କରି ପକାଇଲେ । ବହୁତ ସମୟରେ ବାବାଙ୍କୁ ଖୁଆଇବା ପାଇଁ ତାଙ୍କର ଅନ୍ୱେଷଣରେ ବାୟାଜୀ ବାଈ ତୋଟାରେ ବୁଲନ୍ତି । ସେ ଦେଖନ୍ତି ଯେ ବାବା ଧ୍ୟାନମଗ୍ନ ହୋଇ ବସିଛନ୍ତି । ତାଙ୍କ ସମ୍ମୁଖରେ ଖାଦ୍ୟଦ୍ରବ୍ୟ ରଖିଦେଇ ସେ ନିରବରେ ଫେରିଯାଆନ୍ତି । ଦୀର୍ଘ ଦିନଧରି ଭକ୍ତି ସହକାରେ ବାୟାଜୀ ବାଈ ବାବାଙ୍କର ସେବା କରିଆସିଥିଲେ । ଭକ୍ତିପୂତ ହୃଦୟରେ ଅର୍ପିତ ହେଉଥିବା ସେବା ଭଗବାନ ଗ୍ରହଣ କରନ୍ତି । ବାବା ନିଜେ ମଧ୍ୟେ ସ୍ୱୀକାର କରିଥିଲେ ଯେ ବାୟାଜୀ ବାଈଙ୍କ ହାର୍ଦ୍ଦିକତା ସେ କେବେ ଭୁଲିପାରିବେ ନାହିଁ ।

ବାୟାଜୀ ବାଈଙ୍କ ପୁତ୍ର ତାତିୟା କୋଟେଲ ପ୍ରତି ମଧ୍ୟ ବାବାଙ୍କର ଅଗାଧ ସ୍ନେହ ଥିଲା । ବାବାଙ୍କ ଉପରେ ମା' ପୁଅ ଉଭୟଙ୍କର ଅଗାଧ ବିଶ୍ୱାସ ଥିଲା ଏବଂ ସେମାନଙ୍କ ଦୃଷ୍ଟିରେ ବାବା ଥିଲେ ସ୍ୱୟଂ ଭଗବାନ । କେତେବର୍ଷ ପରେ ବାବା

ଜଙ୍ଗଲ ଭିତରକୁ ଯିବା ଛାଡ଼ିଦେଇ ଗାଁ ଭିତରେ ରହିଲେ ଏବଂ ମସ୍‌ଜିଦ୍ ଭିତରେ ଖିଆପିଆ କଲେ । ସେହି ସମୟରୁ ଜଙ୍ଗଲରେ ବାବାଙ୍କୁ ଖୋଜିବୁଲିବାର କଷ୍ଟ ବାୟାଜୀ ବାଈଙ୍କ ପାଇଁ ଦୂର ହେଲା । ବାବା ଅନ୍ୟସବୁ ଯେଉଁ ଘରମାନଙ୍କରୁ ଭିକ୍ଷା ଗ୍ରହଣ କରୁଥିଲେ ସେମାନେ ହେଲେ ପାଟିଲ୍‌ବୁଆ ଗୋନ୍ଦକାର, ନନ୍ଦରାମ୍ ଶୈବରାମ୍, ଆପାଜୀ କୋଟେ ଓ ନାରାୟଣ ତେଲୀ ।

ବାବା ମସ୍‌ଜିଦ୍‌ରେ ଅବସ୍ଥାନ କରୁଥିବା ସମୟରେ ଏକାକୀ ସାଧନାମଗ୍ନ ରହୁଥିଲେ । ସମୟ ସମୟରେ ଅନ୍ୟାନ୍ୟ ହିନ୍ଦୁ ଓ ମୁସଲ୍‌ମାନ ସାଧକମାନଙ୍କ ସହିତ ତାଙ୍କର ସାକ୍ଷାତ ଘଟୁଥିଲା । ପଣ୍ଢାରପୁର ଓ ରାମେଶ୍ୱର ପରି ତୀର୍ଥ ସ୍ଥାନକୁ ଯାତ୍ରା କରିବାବେଳେ କେହି କେହି ସନ୍ନ୍ୟାସୀ ଶିରିଡ଼ି ଆସି ବାବାଙ୍କୁ ସାକ୍ଷାତ କରୁଥିଲେ ।

ଶ୍ରୀ ସାଇ ସତ୍‌ଚରିତର ବର୍ଣ୍ଣନା ଅନୁଯାୟୀ ଦେବୀ ଦାସ ନାମକ ଜଣେ ଅଳ୍ପବୟସର ହିନ୍ଦୁ ସନ୍ନ୍ୟାସୀଙ୍କୁ ବାବା ସ୍ନେହ କରୁଥିଲେ । ଦେବୀଦାସ ବହୁଦିନ ଧରି ଶିରିଡ଼ିରେ ବସବାସ କରୁଥିଲେ । ଦେବୀଦାସ ଶିରିଡ଼ିର ମାରୁତି ମନ୍ଦିରରେ ରହୁଥିଲେ ଏବଂ ଏହି ମନ୍ଦିରରେ ବାବା ଓ ଦେବୀଦାସଙ୍କ ସାକ୍ଷାତ ଘଟୁଥିଲା । ଜାନକୀ ଦାସ ନାମକ ଅନ୍ୟ ଜଣେ ହିନ୍ଦୁ ସନ୍ନ୍ୟାସୀ ମଧ୍ୟ ବାବାଙ୍କୁ ସାକ୍ଷାତ କରୁଥିଲେ ।

ସତ୍ ଚରିତରେ ଆଉ ମଧ୍ୟ ବର୍ଣ୍ଣନା ଅଛି ଯେ ଗଙ୍ଗାଗିରି ନାମକ ଜଣେ ସନ୍ନ୍ୟାସୀ ବାବାଙ୍କୁ ଦେଖି ଆନନ୍ଦ ବିହ୍ୱଳ ଅବସ୍ଥାରେ ଚିତ୍କାର କରିଉଠିଥିଲେ । ସେ କହିଲେ – ''ଶିରିଡ଼ିର ଭୂମି ଧନ୍ୟ । ଶିରିଡ଼ି ଅମୂଲ୍ୟ ରତ୍ନଟିଏ ପାଇଛି । ଆଜି ପାଣି ବୋହୁଥିବା ଲୋକଟି ସାମାନ୍ୟ ନୁହେଁ । ଏହି ଅସାଧାରଣ ବ୍ୟକ୍ତିତ୍ୱଟିଏ ପାଇ ଶିରିଡ଼ିର ଭାଗ୍ୟ ବଦଳିଯିବ ।'' ଅକଲକୋଟ୍ ସ୍ୱାମୀଜୀଙ୍କର ଜଣେ ଶିଷ୍ୟ ଆନନ୍ଦନାଥ, ବାବାଙ୍କୁ ଦର୍ଶନ କରି ଅନୁରୂପ ମନ୍ତବ୍ୟ ପ୍ରକାଶ କରିଥିଲେ । ସେ କହିଥିଲେ ''ଏ ଖଣ୍ଡେ ହୀରା । ଦେଖାଯାଉଛି ଖୁବ୍ ସାଧାସିଧା । ମାତ୍ର ସେ ସାଧାରଣ ନୁହେଁ, ସେ ହେଉଛି ଅନନ୍ୟ । ନିକଟ ଭବିଷ୍ୟତରେ ତୁମ୍ଭେମାନେ ସମସ୍ତେ ଉପଲବ୍ଧି କରିବ ।''

ବାବା ଖୁବ୍ ବେଶୀ କଥାବାର୍ତ୍ତା କରୁ ନଥିଲେ । ପ୍ରଶ୍ନ ପଚାରିଲେ ସେ ଉତ୍ତର ଦେଉଥିଲେ । ବାବା ମନକୁ ମନ କିଛି କହୁଥିବାର ଏବଂ ଅନୁଚ୍ଚ ସ୍ୱରରେ ଗୁଣୁଗୁଣୁ ହେଉଥିବାର ଗ୍ରାମବାସୀମାନେ ଶୁଣୁଥିଲେ । ମାଧବ ରାଓ ଦେଶ୍‌ପାଣ୍ଡେ ଗ୍ରାମର ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ । ୧୮୮୧ ମସିହାରେ ସେ ବାବାଙ୍କୁ ନିଜର ଗୁରୁ ରୂପେ ଗ୍ରହଣ କଲେ ଏବଂ ଶେଷପର୍ଯ୍ୟନ୍ତ ସେ ବାବାଙ୍କର ଅନୁଗତ ଥିଲେ । ବାବା

ତାଙ୍କୁ ଶ୍ୟାମା ବୋଲି ସମ୍ବୋଧନ କରୁଥିଲେ । ମସ୍‌ଜିଦ୍ ଭିତରେ ରାତିରେ ବାବା ହିନ୍ଦୀ, ଇଂରାଜୀ ଓ ଅନ୍ୟାନ୍ୟ ଭାଷାରେ କଥା କହୁଥିବାର ଶ୍ୟାମା ଶୁଣୁଥିଲା । ଏହା ତାକୁ ବିସ୍ମୟାଭିଭୂତ କରିଥିଲା ।

ବାବା ଅଧିକାଂଶ ସମୟରେ 'ଆଲ୍ଲା ମାଲିକ' ବୋଲି ଉଚ୍ଚାରଣ କରୁଥିଲେ । ଅନ୍ୟ ସମୟରେ ସେ ହିନ୍ଦୁ ରୀତିନୀତି ଅନୁଯାୟୀ ଭଗବାନଙ୍କ ନାମ ଉଚ୍ଚାରଣ କରୁଥିଲେ । ବେଳେବେଳେ 'ନମାଜ୍' ମଧ୍ୟ ଆବୃତ୍ତି କରୁଥିଲେ । ମାତ୍ର ଦୈନିକ ପାଞ୍ଚଥର 'ନମାଜ୍' କରିବା ପରି ବାହ୍ୟ ରୀତିନୀତି ନିମୟିତ ଭାବରେ କରୁ ନଥିଲେ । ବାବାଙ୍କ ଜୀବନୀ ଲେଖିଥିବା ପ୍ରଖ୍ୟାତ ଗବେଷକ ନରସିଂହ ସ୍ୱାମୀ ମତ ଦିଅନ୍ତି ଯେ ବାବାଙ୍କ ପରି ଜନ୍ମସିଦ୍ଧ ଅବତାର ପୁରୁଷ ବାହ୍ୟିକ ସୋପାନସବୁ ଅତିକ୍ରମ କରି ଉର୍ଦ୍ଧ୍ୱରେ ପହଞ୍ଚି ସାରିଥିଲେ । ଆତ୍ମା ସହିତ ଆତ୍ମାର ସଂଯୋଗଭଳି ଉଚ୍ଚତମ ସୋପାନରେ ସେ ଅଧିଷ୍ଠିତ ଥିଲେ ।

## ଶିରିଡ଼ିର ଦୀପ୍ତି ଓ ବ୍ୟାପ୍ତି

ଶିରିଡ଼ିର ଦ୍ୱାରକାମାୟୀ ମସ୍‌ଜିଦ୍ ଓ ସାଇବାବାଙ୍କୁ କେନ୍ଦ୍ରକରି ଜନଚେତନାର ଆଲୋକ ଧୀରେ ଧୀରେ ବିଚ୍ଛୁରିତ ହେବାକୁ ଲାଗିଥିଲା । ବାବା ଭୌତିକ ଶରୀର ନେଇ ଚଳପ୍ରଚଳ ହେଉଥିଲେ ମଧ୍ୟ ସେ ଦେହାତୀତ, ଏ ଧାରଣା କ୍ରମଶଃ ବଳବତୀ ହେଉଥିଲା । ଶିରିଡ଼ିରେ ପାଦଦେଇଥିବା ଏକଦା "ପାଗଳ ଫକୀର" ଯେ ଅନନ୍ୟ, ତା'ର ଉପଲବ୍ଧି ଗଭୀର ହେବାକୁ ଲାଗିଲା ।

ବାବାଙ୍କର ପ୍ରକୃତ ସ୍ୱରୂପ କ'ଣ, ତାହା ସେ ସିଧାସଳଖ ଭାବରେ ନିଜେ ଘୋଷଣା କରି ନଥିଲେ । ମାତ୍ର ବିଭିନ୍ନ ଘଟଣାରୁ ସିଦ୍ଧାନ୍ତ ଗ୍ରହଣ କରିବାରେ ବାଧା ନଥିଲା । ଥରେ ଧରାପଡ଼ିଥିବା ଗୋଟିଏ ଚୋର ବିଚାରାଳୟରେ କହିଲା ଯେ ଶିରିଡ଼ିର ସାଇବାବା ତାଙ୍କୁ ସେସବୁ ପଦାର୍ଥ ଦେଇଛନ୍ତି । ସୁତରାଂ ବିଚରାପତି ସାଇବାବାଙ୍କୁ ବିଚାରାଳୟରେ ଉପସ୍ଥିତ ହେବାପାଇଁ ନିର୍ଦ୍ଦେଶ ଦେଲେ । ବାବା ସେ ଆଦେଶପତ୍ରକୁ ମସ୍‌ଜିଦ୍‌ର ନିଆଁରେ ପକାଇଦେଲେ । ଶିରିଡ଼ିର ଭକ୍ତମାନେ ବିଚାରପତିଙ୍କ ପାଖକୁ ଯାଇ ବାବା ଅବତାର ପୁରୁଷ ରୂପେ ଜନବନ୍ଦିତ ବୋଲି କହିବାରୁ ବିଚାରପତି ଚୋରି ସଂପର୍କରେ ଅନୁସନ୍ଧାନ ପାଇଁ ଜଣେ କମିଶନର୍‌କୁ ପଠାଇଲେ । କମିଶନର୍ କେବଳ କେତୋଟି ପ୍ରଶ୍ନ ପଚାରିବେ ବୋଲି ଜଣାଇବାକୁ ବାବା ଉତ୍ତର ଦେବାପାଇଁ ରାଜି ହେଲେ । ବାବା ଓ କମିଶନର୍‌ଙ୍କ ମଧ୍ୟରେ କଥୋପକଥନ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା । ଏହିପରି ଭାବରେ କଥାବାର୍ତ୍ତା ଚାଲିଥିଲା ।

| | |
|---|---|
| କମିଶନର୍ | ତୁମର ନାମ କ'ଣ ? |
| ବାବା | ଲୋକେ ମୋତେ ସାଇବାବା ବୋଲି ଡାକନ୍ତି । |
| କମିଶନର୍ | ତୁମ ବାପାଙ୍କ ନାମ ? |
| ବାବା | ତାଙ୍କ ନାମ ମଧ୍ୟ ସାଇବାବା । |
| କମିଶନର୍ | ତୁମ ଗୁରୁଙ୍କ ନାମ ? |
| ବାବା | ଓ୍ୱେଙ୍କୁଶା |
| କମିଶନର୍ | ଧର୍ମ ବା ସଂପ୍ରଦାୟ ? |
| ବାବା | କବୀର |
| କମିଶନର୍ | ଜାତି ବା ଗୋଷ୍ଠୀ ? |
| ବାବା | ଭଗବାନ୍ |
| କମିଶନର୍ | ବୟସ ? |
| ବାବା | ଲକ୍ଷ ଲକ୍ଷ ବର୍ଷ |
| କମିଶନର୍ | ତୁମେ ଶପଥ କରିବ କି ତୁମେ ଯାହା କହିବ ତାହା ସତ୍ୟ । |
| ବାବା | ସତ୍ୟ |
| କମିଶନର୍ | ଧରାପଡ଼ିଥିବା ଚୋରକୁ ତୁମେ ଜାଣ ? |
| ବାବା | ହଁ, ମୁଁ ତାକୁ ଜାଣେ । ମୁଁ ସମସ୍ତଙ୍କୁ ଜାଣେ । |
| କମିଶନର୍ | ସେ ଲୋକଟି କହୁଛି ଯେ ସେ ତୁମର ଭକ୍ତ ଏବଂ ସେ ତୁମ ପାଖରେ ରହୁଥିଲା । ଏ କଥା କ'ଣ ଠିକ୍ ? |
| ବାବା | ହଁ, ମୁଁ ସମସ୍ତଙ୍କ ସହିତ ରହେ । ସମସ୍ତେ ମୋର । |
| କମିଶନର୍ | ସେ ତୁମଠାରୁ ଧନରତ୍ନ ନେଇଥିଲା କି ? |
| ବାବା | ହଁ, ମୁଁ ଦେଲି । କିଏ, କ'ଣ, କାହାକୁ ଦେଉଛି ? |
| କମିଶନର୍ | ତୁମେ ଯଦି ସେସବୁ ଧନରତ୍ନ ତାକୁ ଦେଲ, ସେ ସବୁ ପଦାର୍ଥ ତୁମ ପାଖରୁ ପ୍ରଥମେ ଆସିଲା କିପରି ? |
| ବାବା | ସବୁ ଜିନିଷ ତ ମୋର । |
| କମିଶନର୍ | ବାବା, ଅଭିଯୁକ୍ତ ଆସାମୀ କହିଛି ଯେ ତୁମେ ସବୁ ଜିନିଷ ତାକୁ ଦେଇଛ । ଏ ତ ଅପରାଧ । |
| ବାବା | ଏ ସବୁ କ'ଣ ? ଧନସଂପଦରୁ ମୋତେ କ'ଣ ମିଳିବ ? |

କହିବା ଅନାବଶ୍ୟକ ଯେ ପରେ ଚୋରଟିର କଥା ମିଥ୍ୟା ବୋଲି ପ୍ରମାଣିତ ହୋଇଥିଲା । ବାବାଙ୍କୁ କୌଣସି କାଗଜପତ୍ରରେ ସ୍ୱାକ୍ଷର କରିବାକୁ ପଡ଼ି ନଥିଲା । ଚୋରଟି ଯେଉଁ ସମୟରେ ବାବାଙ୍କଠାରୁ ସେସବୁ ଜିନିଷ ପାଇଥିଲା ବୋଲି କହିଲା ସେ ସମୟରେ ଚୋରଟି ଶିରିଡ଼ିରେ ନଥିଲା ବୋଲି ଜଣାଗଲା । ପୁନଶ୍ଚ ବାବା ଶିରିଡ଼ି ଛାଡ଼ି ବାହାରକୁ ଯାଇନାହାନ୍ତି ବୋଲି ମଧ୍ୟ ପ୍ରମାଣ ମିଳିଲା ।

ଅଭିଯୋଗଟି କାଳ୍ପନିକ ବୋଲି ପ୍ରମାଣ ହେବାଠାରୁ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ହେଉଛି ବାବାଙ୍କ ବକ୍ରୋକ୍ତିଭରା ବାକ୍ୟମାନ । ପରୋକ୍ଷ ଭାବରେ ବାବା ସୂଚନା ଦେଲେ ଯେ ସମଗ୍ର ମାନବଜାତି ସହିତ ତାଙ୍କର ନିଗୂଢ଼ ସଂପର୍କ ରହିଛି ଏବଂ ପୃଥିବୀର ଯାବତୀୟ ବସ୍ତୁ ତାଙ୍କର ପରିପ୍ରକାଶ ମାତ୍ର । ଆତ୍ମାସତ୍ତାର ଉପଲବ୍ଧି ପାଇଁ ବ୍ୟାକୁଳିତ ଥିବା ସବୁ ମଣିଷର ସେ ଯେ ସହାୟକ, ଏ କଥା ବାବା ଇଙ୍ଗିତ ମାଧମରେ ସୂଚାଇଦେଲେ ।

ଭୌଗୋଳିକ ସୀମା ଅତିକ୍ରମ କରି ଶିରିଡ଼ିର ଗୁରୁତ୍ୱ ପ୍ରସାରିତ ହେବା ପ୍ରକ୍ରିୟା ଘଟଣାବିହୀନ ନଥିଲା । ଆରମ୍ଭରୁ ବାବାଙ୍କର ଦୁଇ ଦୁଇଟି ଚମତ୍କାର ଲୀଳା ଶିରିଡ଼ିର ପ୍ରଖ୍ୟାତିକୁ ପରିବ୍ୟାପ୍ତ କଲା ।

ବାବା ମସ୍‌ଜିଦ୍ ଭିତରକୁ ଆଲୋକିତ ରଖିବା ପାଇଁ ରାତିରେ ଦୀପର ବ୍ୟବହାର କରୁଥିଲେ । ସେ ତେଲ ବିକାଳୀଙ୍କଠାରୁ ତେଲ ଭିକ୍ଷା କରି ଦୀପସବୁ ପ୍ରଜ୍ୱଳିତ ରଖୁଥିଲେ । ଗ୍ରାମରେ ଦୁଇଟି ତେଲ ଦୋକାନ ଥିଲା ଏବଂ ସେମାନେ ନିୟମିତ ତେଲ ଦେଉଥିଲେ । ଥରେ ଏହି ବ୍ୟବ: ୟୀ ଦୁଇଜଣ ମନେ ମନେ ସ୍ଥିର କଲେ ଯେ ସେମାନେ ତେଲ ଯୋଗାଇବା ବନ୍ଦ କରିଦେବେ, ଫଳରେ ବାବା ସେମାନଙ୍କର ପ୍ରାଧାନ୍ୟ ବୁଝିପାରିବେ । ତେଲ ଥିଲେ ମଧ ସେମାନଙ୍କ ପାଖରେ ତେଲ ନାହିଁ ସେମାନେ ବାବାଙ୍କୁ ଜଣାଇ ଦେଲେ ଫଳରେ ଶୂନ୍ୟପାତ୍ରଟି ଧରି ବାବା ମସ୍‌ଜିଦ୍‌କୁ ଫେରି ଆସିଲେ । ଦୂରରେ ଠିଆ ହୋଇ ବ୍ୟବସାୟୀ ଦୁଇଜଣ ମଜା ଦେଖିବାକୁ ଅପେକ୍ଷା କରି ରହିଥିଲେ । ବାବା ପାଣିପାତ୍ରରୁ ପାଣିନେଇ ତେଲଡବାରେ ପୂରାଇଲେ ଏବଂ ତେଲଡବାରେ ଲାଗିଥିବା କେଇବୁନ୍ଦା ତେଲଥିବା ଡବାକୁ ଖୁବ୍ ଜୋର୍‌ରେ ହଲାଇଲେ । ତା'ପରେ ସେ ଡବାଟିକୁ ମୁହଁ ଲଗାଇ ସବୁ ପିଇଦେଲେ । ପାଣିପାତ୍ରରୁ ପାଣିଆଣି ଚାରୋଟି ଦୀପରେ ଦେଲେ ଏବଂ ସଳିତାବତୀକୁ ପାଣିରେ ଓଦାକରି ଦୀପରେ ରଖିଲେ । ତାପରେ ଦୀପ ଜଳାଇଲେ । ଅପେକ୍ଷା କରିଥିବା

ବ୍ୟବସାୟୀମାନେ ଭାବିଥିଲେ ଅଳ୍ପ ସମୟ ପରେ ଓଦା ସଳିତାବତୀ ସବୁ ଲିଭିଯିବ । ମାତ୍ର ଆଶ୍ଚର୍ଯ୍ୟର କଥା ଚାରୋଟିଯାକ ଦୀପ ଜଳିରହିଲା । ବ୍ୟବସାୟୀମାନେ ନିଜର ଅଜ୍ଞତା ବୁଝିପାରି ବାବାଙ୍କ ପାଖକୁ ଆସିଲେ ଏବଂ କ୍ଷମା ମାଗିଲେ । କାରୁଣିକ ବାବା ସେମାନଙ୍କୁ କ୍ଷମାଦେଇ ଏପରି ବ୍ୟବହାର ଭବିଷ୍ୟତରେ ନ ଦର୍ଶାଇବାକୁ ପରାମର୍ଶ ଦେଲେ ।

ଏ ଘଟଣାଟି ପରେ ଶିରିଡ଼ିର ଗୁରୁତ୍ୱ ପ୍ରସାରିତ ହେଲା । ସେହିପରି ଆଉ ଗୋଟିଏ ଘଟଣା ହେଉଛି ବାବାଙ୍କୁ ଚନ୍ଦନ ଚର୍ଚ୍ଚିତ କରି ପୂଜାକରିବାର ଘଟଣା । ମହାଲାସ୍‌ପତି ବାବାଙ୍କ ମସ୍ତକରେ ଚନ୍ଦନ ଦେଇ ତାଙ୍କୁ ପୂଜା କରୁଥିଲେ । ଏ ଘଟଣା ରକ୍ଷଣଶୀଳ ମୁସଲମାନଙ୍କ ମଧ୍ୟରେ ତୀବ୍ର ଅସନ୍ତୋଷ ସୃଷ୍ଟି କରିଥିଲା । ସେମାନେ ବାରମ୍ବାର ବାବାଙ୍କ ପାଖରେ ଆପତ୍ତି ଜଣାଇ ଏହା ଧର୍ମ ବିରୋଧୀ ବୋଲି ଯୁକ୍ତି ବାଢ଼ିଥିଲେ । ବାବା ଏହାର ପ୍ରତିରୋଧ ନ କରିବାରୁ କେତେକ ମୁସଲମାନ ବଳ ପ୍ରୟୋଗ କରି ଏହା ବନ୍ଦ କରାଇବାର ନିଷ୍ପତ୍ତି ନେଲେ ।

ଦିନେ ସକାଳେ ତାମ୍ବଲୀ ନାମଧାରୀ ଜଣେ ଗୁଣ୍ଡାଶ୍ରେଣୀୟ ବ୍ୟକ୍ତି ଓ ତାହାର ଚାରିଜଣ ସାଥୀ ମସ୍‌ଜିଦ୍‌ର ଦ୍ୱାରଦେଶରେ ଠେଙ୍ଗାଧରି ଅପେକ୍ଷା କରି ରହିଲେ । ସେମାନେ ମହାଲାସ୍‌ପତିଙ୍କୁ ଚେତାବନୀ ଶୁଣାଇ ସେ ଚନ୍ଦନ ପୂଜା କଲେ ଶାସ୍ତି ନିଶ୍ଚୟ ପାଇବ ବୋଲି ଧମକ ଦେଲେ । ମହଲାସ୍‌ପତି ଶାନ୍ତ ସ୍ୱଭାବର ବ୍ୟକ୍ତି । ମହଲାସ୍‌ପତି ଦୁଃଖ ଓ ଭୟରେ କିଛି ସ୍ଥିର ନ କରିପାରି ଏକ ବିକଳ୍ପ ପନ୍ଥା ଅବଲମ୍ବନ କଲେ । ସେ ମସ୍‌ଜିଦ୍ ମଧ୍ୟକୁ ପ୍ରବେଶ ନ କରି ବାହାରପଟୁ ମସ୍‌ଜିଦ୍ କାନ୍ଥରେ ପୂଜାଦ୍ରବ୍ୟ ବ୍ୟବହାର କଲେ । କାନ୍ଥରେ ଜଳ, ପୁଷ୍ପ ଓ ସୁଗନ୍ଧ ଲେପନ କରିବା ସମୟରେ ବାବା ଜାଣିପାରି ସେ କ'ଣ କରୁଛି ବୋଲି ପଚାରିଲେ । ମହାଲସ୍‌ପତି ଘଟଣାର ଭୟାବହତା ବୁଝାଇଲେ । ବାପା ସ୍ପଷ୍ଟ ଓ ବଜ୍ରନିର୍ଘୋଷ ସ୍ୱରରେ କହିଲେ – "ଭିତରକୁ ଆସି ଯେପରି ପୂଜା କରିବାର କରିଯାଅ । ଯେଉଁଠାରେ ଚନ୍ଦନ ଦେବାର କଥା ଦିଅ । ତୁମକୁ କିଏ ମାରିବ ସେ କଥା ମୁଁ ଦେଖୁଛି ।" ଏହା କହି ବାବା ନିଜ ହାତରେ ଧରିଥିବା ସଟ୍‌କା, ସାହାଯ୍ୟରେ ଭୂମି ଉପରେ ଶବ୍ଦ କଲେ । ଘୋର ଗର୍ଜନ ଶବ୍ଦ ହେଲା । ମହଲାସ୍‌ପତିଙ୍କୁ ବାଧାଦେବା ଅର୍ଥ ବାବାଙ୍କ ସହିତ ମୁକାବିଲା କରିବାକୁ ହେବ । ଏପରି ଭାବନାର ସମ୍ମୁଖୀନ ହେବାପାଇଁ ସେମାନଙ୍କର ମାନସିକ ବଳ ନଥିଲା । ସୁତରାଂ ମହଲାସ୍‌ପତିଙ୍କୁ ବାଧା ଦେବା ପରିବର୍ତ୍ତେ ସେମାନେ ଛତ୍ରଭଙ୍ଗ ଦେଇ ପଳାୟନ କରିଥିଲେ । ନିର୍ବିଘ୍ନରେ ଚନ୍ଦନ ଦେଇ ବାବାଙ୍କୁ ପୂଜା କରିବା

ପରେ ମହଲାସ୍ପତି ଆନନ୍ଦରେ ଫେରିଲେ । ପରବର୍ତ୍ତୀ ସମୟରେ ମଧ୍ୟ ସେ କୌଣସି ପ୍ରତିବନ୍ଧକର ସମ୍ମୁଖୀନ ହେଲେ ନାହିଁ । ଜଳକୁ ତୈଳରେ ପରିଣତ କରିବା ଏବଂ ଗୁଣ୍ଡାଶ୍ରେଣୀୟ ବ୍ୟକ୍ତିମାନଙ୍କୁ ଅନାୟାସରେ ଆୟତ୍ତ କରିବାର ଚମତ୍କାରିତାଦ୍ୱୟ ଶିରିଡ଼ିରେ ଏବଂ ବାହାରେ ଚହଳ ସୃଷ୍ଟି କଲା ।

ଏହି ଦୁଇଟି ଘଟଣା ପରେ ପରେ ଶିରିଡ଼ିରେ ଦ୍ୱାରକାମାୟୀ ମସ୍‌ଜିଦ୍ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସାଧକମାନଙ୍କର ଏକ ମିଳନ ପୀଠର ରୂପ ନେଲା । ଧୀରେ ଧୀରେ ଶିରିଡ଼ିରେ ପର୍ବପର୍ବାଣୀର ସୂତ୍ରପାତ ହେଲା । ଶିରିଡ଼ିର ପାର୍ଶ୍ୱବର୍ତ୍ତୀ ଗ୍ରାମମାନଙ୍କର ବହୁସଂଖ୍ୟକ ଭକ୍ତଙ୍କ ସମାଗମ ଆରମ୍ଭ ହେଲା । ବାବାଙ୍କର ପରମ ଅନୁଗତ ଭକ୍ତ ଶ୍ୟାମା (ମାଧବ ରାଓ ଦେଶ୍‌ପାଣ୍ଡେ) ଏହି ଭକ୍ତ ସମାଗମକୁ ନିୟନ୍ତ୍ରିତ କରିଥିଲେ ଏବଂ ବାବାଙ୍କ ଦର୍ଶନଲାଭ କରିବାକୁ ଇଚ୍ଛାପ୍ରକାଶ କରୁଥିବା ବ୍ୟକ୍ତିମାନଙ୍କର ଦିଗ୍‌ଦର୍ଶକ ରୂପେ ଦାୟିତ୍ୱ ସଂପନ୍ନ କରୁଥିଲେ । ବାବାଙ୍କ ପାଦରେ ପୁଷ୍ପ ଅର୍ପଣ କରି ଏବଂ ସାଷ୍ଟାଙ୍ଗ ପ୍ରଣିପାତ ଜଣାଇ ଆଗନ୍ତୁକ ଭକ୍ତମାନେ ନିଜର ନିବେଦନ ଜଣାଉଥିଲେ । ପ୍ରଥମେ ପ୍ରଥମେ ବାବା ବାରଣ କରୁଥିଲେ । ମାତ୍ର ଲୋକମାନେ ଉତ୍ତର ଦେଉଥିଲେ – ''ଆପଣ ଆମପାଇଁ ଚଳନ୍ତି ଓ କଥାକୁହା ପ୍ରଭୁ'', ସୁତରାଂ ପଣ୍ଢାରପୁର ଓ ତିରୁପତି ପରି ଦେବସ୍ଥାନମାନଙ୍କର ଅନୁସୃତ ପୂଜା ଅର୍ଚ୍ଚନାପରି ବାବାଙ୍କର ପୂଜା ଅର୍ଚ୍ଚନା କରାଗଲା । ପ୍ରାୟ ୧୯୦୮ ମସିହା ବେଳକୁ ଏପରି ପୂଜା ଅର୍ଚ୍ଚନାର ବ୍ୟବସ୍ଥା ହେଲା ବୋଲି ଜଣେ ଭକ୍ତ କହିଥାନ୍ତି ।

ପରେ ପରେ ଅଧିକ ବର୍ଣ୍ଣାଢ଼୍ୟ ଓ ଜନସମାବେଶ ମଧ୍ୟରେ ପୂଜା ଅର୍ଚ୍ଚନାର କାର୍ଯ୍ୟକ୍ରମ ପ୍ରସ୍ତୁତ କରାଗଲା । ୧୯୦୯ ମସିହାରୁ ୧୯୧୮ ପର୍ଯ୍ୟନ୍ତ ଏପରି ଶୋଭାପୂର୍ଣ୍ଣ ଦରବାରର ଦୃଶ୍ୟ ଦେଖିବାକୁ ମିଳୁଥିଲା । ଦିନେ ଛଡ଼ା ଦିନେ ବାବା ମସ୍‌ଜିଦ୍ ଛାଡ଼ି ଚାୱାଡ଼ିରେ ଶୋଇବାକୁ ଯାଉଥିଲେ । ଭକ୍ତମାନେ ପାଲିଙ୍କି ସଜାଇ ବାବାଙ୍କୁ ମହାରାଜା ରୂପେ ସଜାଇ ଶୋଭାଯାତ୍ରା କରି ନେଇଯାଉଥିଲେ । ଅଦ୍ୟାବଧି ସେ ସ୍ମୃତିକୁ ସଜୀବ ରଖିବା ପାଇଁ ପ୍ରତି ଗୁରୁବାର ରାତିରେ ଚାୱାଡ଼ି ଯାତ୍ରାର ଆୟୋଜନ କରାଯାଉଛି ।

ଶିରିଡ଼ିରେ ଦୁଇଟି ପର୍ବ ମହାସମାରୋହରେ ପାଳିତ ହେଉଥିଲା । ତା ହେଉଛି ହିନ୍ଦୁମାନଙ୍କର ରାମନବମୀ ପର୍ବ ଓ ମୁସଲମାନଙ୍କର ଉରସ୍ ଶୋଭାଯାତ୍ରା । ଅଧିକାଂଶ ସମୟରେ ଏ ଦୁଇଟିଯାକ ପର୍ବ ଗୋଟିଏ ଦିନରେ ପାଳିତ ହେଉଥିଲା । ହିନ୍ଦୁ ଓ ମୁସଲମାନ୍‌ମାନେ ଏକ ମନପ୍ରାଣରେ ଆନନ୍ଦ ଉଲ୍ଲାସ ମଧ୍ୟରେ ପର୍ବ ପାଳନ

କରୁଥିଲେ । ଥରେ ଏ ଦୁଇଟି ପର୍ବପାଳନ କରାଯାଉଥିବା ସମୟରେ ଉତ୍କଟ ଜଳାଭାବ ଦେଖାଗଲା । ଉତ୍ସବ ସମୟରେ ଲୋକସଂଖ୍ୟା ପ୍ରାୟ ପାଞ୍ଚ ହଜାର ହେବା ସ୍ଥଳେ ସେ ବର୍ଷ ୭୫୦୦ ଭକ୍ତ ସମାବିଷ୍ଟ ହୋଇଥିଲେ । ଶିରିଡ଼ିର ଦୁଇଟି କୂପ ମଧ୍ୟରୁ ଗୋଟିଏ ଶୁଷ୍କ, ଅନ୍ୟଟିର ଜଳ କୃଷ୍ଣବର୍ଣ୍ଣ । ବାବା ଖବର ପାଇବା ପରେ କିଛି ଫୁଲ ପକାଇ ଦେଇ କୃଷ୍ଣବର୍ଣ୍ଣର ଜଳକୁ ମଧୁର ପାନୀୟ ଜଳରେ ରୂପାନ୍ତର କଲେ । ବାବାଙ୍କର ଏ ବିଚିତ୍ର ଲୀଳା ଉତ୍ସବ ପାଳନକୁ ଅଧିକ ମାଧୁର୍ଯ୍ୟ ପ୍ରଦାନ କଲା ।

ବିଂଶ ଶତକର ପ୍ରଥମ ଦଶକ ବାବାଙ୍କ ପ୍ରଖ୍ୟାତି ଓ ଶିରିଡ଼ିର ପ୍ରାଧାନ୍ୟ ପରିବ୍ୟାପ୍ତ ହେବାକୁ ଲାଗିଲା । ଜନୈକ ଡେପୁଟି କଲେକ୍ଟର୍ ଚନ୍ଦ୍ରକର୍ ଏବଂ ତାଙ୍କର ଅର୍ଦ୍ଦଳି ଦାସଗୁଣ୍ ୧୯୮୨ ମସିହାରେ ବାବାଙ୍କୁ ଦର୍ଶନ କରିବାକୁ ଆସି ବାବାଙ୍କ ଅସୀମ ଶକ୍ତି ପାଖରେ ମନ୍ତ୍ରମୋହିତ ହୋଇ ବାବାଙ୍କର ଆନୁଗତ୍ୟ ଗ୍ରହଣ କଲେ । ଚନ୍ଦ୍ରକର୍‌ଙ୍କ ଉଦ୍ୟମ ଫଳରେ ବାଳ ଗଙ୍ଗାଧର୍ ତିଳକଙ୍କ ପରି ଗଣ୍ୟମାନ୍ୟ ବ୍ୟକ୍ତି ଶିରିଡ଼ିକୁ ଆସିବାକୁ ଇଚ୍ଛା ପ୍ରକାଶ କଲେ । ଦାସଗୁଣ୍ ସୁନ୍ଦର ସୁଲଳିତ ସ୍ୱରରେ ଲୋକଗୀତ ମାଧ୍ୟମରେ ବାବାଙ୍କର ମହାତ୍ମ୍ୟ ପ୍ରଚାର କଲେ ।

ଊନବିଂଶ ଶତକର ମଧ୍ୟଭାଗରେ ଅଖ୍ୟାତ ରହିଥିବା ଶିରିଡ଼ି ଗ୍ରାମ ବିଂଶଶତକ ପ୍ରଥମ ଦୁଇଦଶକରେ ଗୁରୁତ୍ୱ ଲାଭ କରି ଭାରତର ମୁଖ୍ୟ ତୀର୍ଥସ୍ଥଳୀମାନଙ୍କ ସହିତ ମର୍ଯ୍ୟାଦା ଲାଭ କଲା । ଯାଦୁକାରୀର କୁହୁକ କାଠିରେ ସାମାନ୍ୟ ବସ୍ତୁ ମହାର୍ଘ ସଂପଦର ରୂପ ନେଲା ପରି ସାଇବାବାଙ୍କ ଆଗମନ ଓ ଅବସ୍ଥାନ ଏକ କ୍ଷୁଦ୍ରଗ୍ରାମକୁ ଭୌଗୋଳିକ ପରିଚୟର ଊର୍ଦ୍ଧ୍ୱରେ ଜନଚେତନାର କେନ୍ଦ୍ରବିନ୍ଦୁରେ ସ୍ଥାପନ କଲା ।



# ଶ୍ରୀ ଖପର୍ଡ଼େଙ୍କ ଶିରିଡ଼ି ଦିନଲିପି

**ପ୍ରାରମ୍ଭିକ ସୂଚନା :** ବିଶିଷ୍ଟ ମରାଠୀ ଓ ସଂସ୍କୃତଭାଷା ଗବେଷକ ଶ୍ରୀଯୁକ୍ତ ଗଣେଶ ଶ୍ରୀକୃଷ୍ଣ ଖପର୍ଡ଼େଙ୍କ ଶିରିଡ଼ି ଦିନଲିପି ଆଧ୍ୟାତ୍ମିକ ତାତ୍ପର୍ଯ୍ୟରେ ପରିପୂର୍ଣ୍ଣ । ଶ୍ରୀଯୁକ୍ତ ଖପର୍ଡ଼େ ଲୋକମାନ୍ୟ ବାଳଗଙ୍ଗାଧର ତିଳକଙ୍କ ସହକର୍ମୀ ଥିଲେ । ସେ ତାଙ୍କର ପରିପୂର୍ଣ୍ଣ ଜୀବନ ମଧ୍ୟରେ ଦୁଇଥର ଶିରିଡ଼ି ଯାତ୍ରା କରିଥିଲେ । ୧୯୧୦ ମସିହାରେ ତିନି ଚାରିମାସ ଶିରିଡ଼ିରେ ଅବସ୍ଥାନ କରି ପରମ ଆରାଧ୍ୟ ଶିରିଡ଼ିବାବାଙ୍କ କରୁଣା ଲାଭ କରିଥିଲେ ।

ଏହି ଅବସ୍ଥାନ କାଳରେ ଶ୍ରୀ ଖପର୍ଡ଼େ ଦିନଲିପି ଲେଖିଥିଲେ । ଏହି ଦିନଲିପି ସ୍ୱଚ୍ଛ ଓ ପ୍ରାଞ୍ଜଳ । ବାବାଙ୍କର ଅର୍ଥପୂର୍ଣ୍ଣ ମନ୍ତବ୍ୟ ଓ ଗଳ୍ପ ଛଳରେ ତାତ୍ତ୍ୱିକ ଉପଦେଶ ଏବଂ ସର୍ବୋପରି ସମଗ୍ର ମାନବ ଜାତି ପାଇଁ ତାଙ୍କର ପ୍ରେମ ଏଥିରେ ପ୍ରତିଫଳିତ । ଏହି ଦିନଲିପି ପାଠ କରିବା ମାଧ୍ୟମରେ ମାନସିକ ସ୍ତରରେ ସେ ସ୍ଥାନ ଏବଂ ସେ ସମୟକୁ ଫେରିଯାଇ ସାଇ ଚେତନା ସ୍ରୋତରେ ସାମିଲ ହେବାର ସମ୍ଭାବନା ଥିବା ଦୃଷ୍ଟିରୁ ଖପର୍ଡ଼େଙ୍କ ଲିଖିତ ଦିନଲିପିର ଓଡ଼ିଆ ଭାଷାନ୍ତର ନିମ୍ନରେ ପ୍ରଦତ୍ତ ।

**ଶିରିଡ଼ିରେ ଗୋଟିଏ ସପ୍ତାହର ରହଣି :–**

୧୯୧୦ ମସିହା ଡିସେମ୍ବର ମାସର ୫ ତାରିଖ । ଅପରାହ୍ନ ପ୍ରାୟ ଚାରିଟା ବେଳେ ଶିରିଡ଼ିରେ ପହଞ୍ଚିଗଲୁ । ଆଗନ୍ତୁକମାନଙ୍କର ସୁବିଧାପାଇଁ ଶ୍ରୀସାଠେଙ୍କ ଦ୍ୱାରା ନିର୍ମିତ ହୋଇଥିବା ଧର୍ମଶାଳାରେ ରହିଲୁ । ମାଧବରାଓ ଦେଶ୍‌ପାଣ୍ଡେ ଆମକୁ ଅତିଥି ଦୃଷ୍ଟିରେ ଦେଖିବାକୁ ଲାଗିଲେ । ସେ ସମୟରେ ଧର୍ମଶାଳାରେ ନିଜର ପରିବାର ସହିତ ତାତିଆ ସାହେବ ନୁଲ୍‌କର୍, ବାପୁସାହେବ ଜୋଗ୍ ଏବଂ ବାବା ସାହେବ ସହସ୍ରବୁଦ୍ଧ ରହୁଥିଲେ । ପହଞ୍ଚିବାର ଅଳ୍ପସମୟରେ ଆମେ ସମସ୍ତେ ମିଳିମିଶି ସାଇ ମହାରାଜାଙ୍କ ଦର୍ଶନପାଇଁ ଗଲୁ । ସାଇ ମହାରାଜ ମସ୍‌ଜିଦ୍‌ରେ ରହୁଥିଲେ । ଯଥାରୀତି ପ୍ରଣିପାତ ଜଣାଇବା ପରେ ମୁଁ ଓ ମୋର ପୁଅ ବାବାଙ୍କୁ କିଛି ଫଳମୂଳ ଅର୍ପଣ କଲୁ । ତାପରେ ତାଙ୍କ କଥାରେ କିଛି ଦକ୍ଷିଣା ମଧ୍ୟ ଦେଲୁ । ସାଇବାବା କହିଲେ ଯେ ବିଗତ ଦୁଇବର୍ଷ କି ତା'ଠାରୁ ବେଶି ସମୟଧରି ତାଙ୍କର ଦେହ ଭଲ ରହିନାହିଁ ।

ସେ କେବଳ ଶୁଖିଲା ରୋଟି ଏବଂ ଅଳ୍ପକିଛି ପାଣି ବ୍ୟତୀତ ଅନ୍ୟକିଛି ଖାଇ ନାହାନ୍ତି । ସେ ତାଙ୍କର ପାଦ ଦେଖାଇ ଗୋଟିଏ ଫୁଲା ଜାଗାକୁ ଦେଖାଇଲେ । ସେଠାରେ ଗୋଟିଏ ବାରମୂଳିଆ ହୋଇଥିଲା । ତାହାର ମଂଜି ସେଥିରୁ ବାହାରି ଯାଇଛି । ତଥାପି ସେ ଜାଗାରେ ବାରମ୍ବାର ବାରମୂଳିଆ ବାହାରୁଛି । ସେ କହିଲେ ସେ ଶୁଣିଥିଲେ ଯେ ନିଜର ଗ୍ରାମକୁ ନଯିବା ପର୍ଯ୍ୟନ୍ତ ତାହା ଭଲ ହେବ ନାହିଁ । ଏ କଥା ତାଙ୍କର ମନରେ ଥିଲା । କିନ୍ତୁ ନିଜ ଜୀବନ ଅପେକ୍ଷା ନିଜର ଲୋକମାନଙ୍କ ସ୍ନେହଶ୍ରଦ୍ଧା ପ୍ରତି ସେ ବେଶି ଜୋର୍ ଦେଉଥିଲେ । ସେ କହିଲେ ଯେ ବହୁଲୋକଙ୍କ ସମାଗମ ଫଳରେ ତାଙ୍କୁ ବିଶ୍ରାମ ମିଳୁ ନଥିଲା । କିନ୍ତୁ କିଛି କରିବାର ନଥିଲା । ତାପରେ ସେ ଆମକୁ ଆସିବାକୁ କହିବାରୁ ଆମେ ଧୀରେ ଧୀରେ ପ୍ରସ୍ଥାନ କଲୁ । ସଂଧ୍ୟାବେଳେ ସେ ଧର୍ମଶାଳା ପାଖଦେଇ ଯାଉଥିଲେ । ଆମେ ସମସ୍ତେ ଯାଇ ପ୍ରଣାମ ଜଣାଇଲୁ । ମାଧବରାଓ ଦେଶ୍‌ପାଣ୍ଡେ ଓ ମୁଁ ସେଠାରେ ଥିଲୁ । ଆମେ ପ୍ରଣାମ ଜଣାଇବା ପରେ ସେ କହିଲେ – "ଧର୍ମଶାଳାକୁ ଯାଇ ଶାନ୍ତ ହୋଇ ବସ ।" ସୁତରାଂ ମାଧବରାଓ ଓ ମୁଁ ଫେରିଆସିଲୁ । ଆମେ ସମସ୍ତେ ବସି କଥାବାର୍ତ୍ତା ହେଲୁ । ସେମାନେ ବାବାଙ୍କ ଚମତ୍କାରିତା ବର୍ଣ୍ଣନା କଲେ ।

ସକାଳେ ମୁଁ ପ୍ରାତଃଭ୍ରମଣ ସାରିଥାଏ । ସ୍ନାନସାରି ଆମେ ସବୁ ଦେଖିଲୁ ଯେ ସାଇମହାରାଜାଙ୍କ ମୁଣ୍ଡ ଉପରେ ଗୋଟିଏ ବଡ଼ ସୁସଜ୍ଜିତ ଛତା ଧରାଯାଇଛି ଏବଂ ସେ କେଉଁଆଡ଼େ ବାହାରିଛନ୍ତି । ପରେ ଆମେ ମସ୍‌ଜିଦ୍‌କୁ ଗଲୁ । ସାଇବାବା ଉତ୍ତେଜିତ ଥିଲାପରି ଜଣାପଡୁଥିଲେ । ତା'ପରେ ସେ ଠିଆ ହୋଇପଡ଼ିଲେ । ସେଠାରେ ଜମିଯାଇଥିବା ଖାଦ୍ୟ ପଦାର୍ଥସବୁ ବାଣ୍ଟିବାକୁ ଆରମ୍ଭ କଲେ । ଉଦି (ବିଭୂତି) ଦେଲାପରେ ଆମକୁ ଆସିବାକୁ କହିଲେ । ଆମେ ସବୁ ଚାଲିଗଲୁ । ଅପରାହ୍ଣ ସାଢ଼େ ଦୁଇଟା ପର୍ଯ୍ୟନ୍ତ ମଧ୍ୟାହ୍ନ ଭୋଜନର ଆୟୋଜନ ହୋଇପାରି ନଥିଲା । ଖାଇବା ପରେ ଆମେ ବସି କଥାବାର୍ତ୍ତା କଲୁ । ସଂଧ୍ୟାବେଳେ ବାବା ବୁଲିବାହାରିଛନ୍ତି ବୋଲି ଦେଖିଲୁ । ପରେ ସାଇ ମହାରାଜ ଆଜି ଯେଉଁ ଚାୱାଡ଼ିରେ ଶୋଇବେ ସେଠାକୁ ଗଲୁ । ବାବାଙ୍କ ମୁଣ୍ଡ ଉପରେ ସୁସଜ୍ଜିତ ଛତାଟି ଧରା ହୋଇଥିଲା । ସେ ହାତରେ ରୂପାବାଡ଼ିଟି ଧରିଥିଲେ । ପାଖରେ ଭକ୍ତମାନେ ଥିଲେ । ସ୍ଥାନଟି ସୁନ୍ଦର ରୂପେ ଆଲୋକରେ ସଜା ହୋଇଥିଲା । ରାଧାକ୍ରିଷ୍ଣ ମାଈ ନାମକ ଜଣେ ମହିଳା ବତୀ ଧରି ଆସିଥିଲେ । ମୁଁ ତାଙ୍କୁ କିଛି ଦୂରରୁ ଦେଖିବାକୁ ପାଇଲି । ମାଧବରାଓ ଓ ଦେଶପାଣ୍ଡେ ମୋତେ କହିଲେ ଯେ ସେ ଆଗାମୀକାଲି ଅନୁପସ୍ଥିତ

ରହିବେ ଏବଂ ତାପରଦିନ ଫେରିବେ । ସେ ବାବାଙ୍କ ଅନୁମତି ପ୍ରାର୍ଥନା କଲେ ଏବଂ ବାବା ଅନୁମତି ଦେବାପରେ ବାହାରିଗଲେ ।

୭-୧୨-୧୯୧୦

ମୋର ସଂଧ୍ୟାପ୍ରାର୍ଥନା ସରିବାପରେ ସକାଳବେଳା ଜଣେ ଅବସରପ୍ରାପ୍ତ ମାମଲତ୍‌ଦାର୍ ଶ୍ରୀ ବାବାସାହେବ ଭଟ ଆମ ଧର୍ମଶାଳାକୁ ଆସିଲେ ଏବଂ ଆମ ସହିତ କଥାବାର୍ତ୍ତା ଆରମ୍ଭ କଲେ । କିଛିଦିନ ଧରି ସେ ଏଠାରେ ରହୁଥିଲେ ଏବଂ ତାଙ୍କ ମୁଖମଣ୍ଡଳରେ ଏକ ପ୍ରଶାନ୍ତିଭାବ ଲାଗି ରହିଥିଲା । ସାଇମହାରାଜାଙ୍କୁ ବାହାରକୁ ଯିବାର ଆମେ ଦେଖିଲୁ । ଅପରାହ୍ଣରେ ମସ୍‌ଜିଦ୍‌କୁ ଯାଇ ତାଙ୍କ ପାଖକୁ ଆସିଲୁ । ବାବାସାହେବ ସହସ୍ରବୁଦ୍ଧ, ମୁଁ, ମୋର ପୁଅ ବାବା, ବାପୁସାହେବ ଜୋଗ୍ ଏବଂ ପିଲାମାନେ ସମସ୍ତେ ଏକାଠି ହୋଇ ସେଠାକୁ ଗଲୁ ଏବଂ ବସିଲୁ । ସାଇମହାରାଜଙ୍କ ମନ ଖୁସି ଥିଲା । ସେ ବାବାସାହେବ ସହସ୍ରବୁଦ୍ଧ ବମ୍ବେରୁ ଆସିଛନ୍ତି କି ନାହିଁ ବୋଲି ପଚାରିଲେ । ବାବା ସାହେବ ହଁ ବୋଲି କହିଲେ । ସେ ବମ୍ବେ ଫେରିଯିବେ କି ବୋଲି ପୁଣି ପଚାରିବାରୁ ବାବାସାହେବ ହଁ ବୋଲି କହିଲେ । ବାବା ସାହେବ କହିଲେ ଯେ ସେ ବମ୍ବେରେ କେତେଦିନ ରହିବେ ସେ ବିଷୟରେ ନିଶ୍ଚିତ ନୁହନ୍ତି, କାରଣ ତାଙ୍କର ରହିବା ନ ରହିବା ଅନେକ ଅବସ୍ଥା ଉପରେ ନିର୍ଭର କରେ । ସାଇମହାରାଜ କହିଲେ – ହଁ, ଏକଥା ସତ ଯେ ତୁମ ହାତରେ ବହୁତ କାମ ଅଛି ଏବଂ ତୁମକୁ ଆହୁରି କାମ କରିବାକୁ ପଡ଼ିବ । ତୁମର ଏଠି ଚାରି ପାଞ୍ଚଦିନ ରହିଯିବା ଆବଶ୍ୟକ । ତମେ ଏଠି ରହିବ ଏବଂ ନିଜ ଆଖିରେ ଦେଖିବ । ଏଠିକାର ଅନୁଭୂତି ନିଛକ ଓ ବାସ୍ତବ । ଏସବୁ କାଳ୍ପନିକ ନୁହେଁ । ହଜାର ହଜାର ବର୍ଷ ପୂର୍ବେ ମଧ୍ୟ ମୁଁ ଏଠାରେ ଥିଲି । ସାଇ ମହାରାଜା ମୋ ପାଖକୁ ଆସିଲେ ଏବଂ ଗୋଟିଏ ନୂଆ ବିଷୟରେ କଥା ଆରମ୍ଭ କଲେ । ସେ କହିଲେ – "ଏ ପୃଥିବୀ ହେଉଛି ବିଚିତ୍ର । ସମସ୍ତେ ମୋର ପ୍ରଜା । ମୁଁ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖେ । କିନ୍ତୁ କେତେକ ଚୋରିବୃତ୍ତି କରନ୍ତି । ମୁଁ ସେମାନଙ୍କ ପାଇଁ କ'ଣ କରିପାରିବି ? ମରଣର ପାଖାପାଖି ଥିବା ଲୋକମାନେ ମଧ୍ୟ ଅନ୍ୟର ମୃତ୍ୟୁକଥା ଚିନ୍ତା କରନ୍ତି । ସେମାନେ ମୋତେ ଅପମାନିତ କରନ୍ତି । ସେମାନେ ମୋତେ ବହୁତ ଆଘାତ ଦିଅନ୍ତି ।" ମୁଁ କିଛି କହିଲି ନାହିଁ । ମୁଁ ନିରବ ରହିଲି । ସେ ପୁଣି କହିଲେ – "ଭଗବାନ୍ ମହାନ୍ । ତାଙ୍କର ପ୍ରତିନିଧି ସବୁ ସ୍ଥାନରେ ଅଛନ୍ତି । ସେମାନେ ଖୁବ୍ ଶକ୍ତିମାନ୍ । ଭଗବାନ୍ ମଣିଷକୁ ଯେପରି ଅବସ୍ଥାରେ ରଖିଛନ୍ତି ସେ ଅବସ୍ଥାରେ ମନୁଷ୍ୟ ସନ୍ତୁଷ୍ଟ ରହିବା ଉଚିତ୍ । କିନ୍ତୁ

ମୋର ଶକ୍ତି ଅସୀମ । ଆଠ ଦଶ ହଜାର ବର୍ଷ ପୂର୍ବେ ମଧ୍ୟ ମୁଁ ଏଠାରେ ଥିଲି ।'' ପୂର୍ବରୁ ଯେପରି ଗଳ୍ପ କହିଥିଲେ ସେହିପରି ଏକ ଗଳ୍ପ କହିବାକୁ ମୋର ପୁଅ ଅନୁରୋଧ ଜଣାଇଲା । ସାଇ ମହାରାଜା ପଚାରିଲେ କି ପ୍ରକାର ଗଳ୍ପ, ସେ ପୂର୍ବେ କହିଥିଲେ । ମୋର ପୁଅ ଉତ୍ତର ଦେଲା ଯେ, ଘଟଣାଟି ମସ୍‌ଜିଦ୍ ଯାଇଥିବା ତିନୋଟି ଭାଇଙ୍କ ବିଷୟରେ ଗଳ୍ପ । ଗୋଟିଏ ଭାଇ ବାହାରକୁ ଯାଇ ଭିକ୍ଷା ମାଗିବା ପାଇଁ ମନକଲା । ଅନ୍ୟ ଭାଇମାନେ ସେପରି କରିବାକୁ ରାଜି ହେଲେ ନାହିଁ । ସେମାନଙ୍କର ଯୁକ୍ତି ଥିଲା ଯେ ଭିକ୍ଷାଲବ୍ଧ ଖାଦ୍ୟସବୁ ଦୂଷିତ ଏବଂ ଏହା ବାସସ୍ଥାନକୁ ମଧ୍ୟ ଅପବିତ୍ର କରିବ । ତୃତୀୟ ଭାଇଟି କହିଲା ଯେ ସେ ରହିଥିବା ଜାଗାରେ ଖାଦ୍ୟସବୁ ପଡ଼ିଲେ ଅନ୍ୟମାନଙ୍କର ଗୋଡ଼ସବୁ କାଟିଦେବା ଉଚିତ୍ । ସାଇମହାରାଜ କହିଲେ ଯେ ଏଇଟି ଖୁବ୍ ଭଲ ଗଳ୍ପ । ତାଙ୍କର ମନ ଭଲ ଥିଲା ବେଳେ ସେ ଆଉ ଗୋଟିଏ ଗଳ୍ପ କହିବେ । ମୋର ପୁଅ କହିଲା ଯେ କେବେ ସେ ସୁଯୋଗ ଆସିବ । ମୋର ପୁଅ ସେଠାରୁ ଚାଲିଗଲା ପରେ ବାପା ଗପ କହିଲେ, ସେ ଆଉ ଶୁଣିବାର ଆନନ୍ଦ ପାଇବ ନାହିଁ । ସାଇ ମହାରାଜ କହିଲେ ଯେ ମୋର ପୁଅ ଯିବା ପୂର୍ବରୁ ନିଶ୍ଚୟ ଗଳ୍ପ ଶୁଣିବାର ସୁଯୋଗ ମିଳିବ ଏଥିରେ ସନ୍ଦେହ ନାହିଁ । ଗତକାଲି ବାବା କାହିଁକି ରାଗିଥିଲେ ବୋଲି ପଚାରିଲି ଏବଂ ସେ କହିଲେ ଯେ ଡେଲି କିଛି କହିବାରୁ ସେ ରାଗିଲେ । ଖାଦ୍ୟ ବିତରଣ ସମୟରେ ''ବାଡ଼ାଅ ନାହିଁ, ବାଡ଼ାଅ ନାହିଁ'' ବୋଲି ସେ ଆଜି କାହିଁକି ପାଟିକରି ଉଠିଲେ । କାରଣ ପାଟିଲ୍ ପରିବାରର ଲୋକେ ସେମାନଙ୍କର ମଧ୍ୟରେ କଳି କରୁଥିଲେ । ସାଇମହାରାଜାଙ୍କ କଥାରେ ଅଭୁତପୂର୍ବ ମଧୁରତା ଭରି ରହିଥିଲା । ଅଧିକାଂଶ ସମୟରେ ତାଙ୍କ ମୁଖରେ ସ୍ମିତ ହସ ଲାଗି ରହିଥିଲା । ତାଙ୍କ କଥାରେ ଅପୂର୍ବ କୃପା ଭରି ରହିଥିଲା । ଏସବୁ ମୋର ସ୍ମୃତିରେ ଅଙ୍କିତ ହୋଇ ରହିଗଲା । ଦୁର୍ଭାଗ୍ୟକୁ ଏପରି ମଧୁର ମୁହୂର୍ତ୍ତରେ ଅନ୍ୟଲୋକମାନେ ଆସି ପହଞ୍ଚି ଗଲେ ଏବଂ ଆମର କଥାବାର୍ତ୍ତା ଅଧା ରହିଗଲା । ଆମ ମନ ଖରାପ ହୋଇଗଲା କିନ୍ତୁ କିଛି କହିବାର ନଥିଲା । ଏସବୁ ବିଷୟରେ ଗପସପ କରି କରି ଆମେ ଫେରି ଆସିଲୁ । କଥାବାର୍ତ୍ତାର ଆରମ୍ଭବେଳେ ତାତିଆ ସାହେବ ନୁଲକର୍ ସେଠାରେ ଉପସ୍ଥିତ ନଥିଲେ । କିନ୍ତୁ ପରେ ଆସିଲେ । ସଂଧ୍ୟାବେଳେ ବାଲାସାହେବ ଭଟ ଆସିଲେ ଏବଂ ବାବାଙ୍କ ସହିତ ହୋଇଥିବା କଥାବାର୍ତ୍ତା ବିଷୟରେ ଆମେ ପୁଣି ଚର୍ଚ୍ଚା ଆରମ୍ଭ କରିଦେଲୁ ।

୮-୧୨-୧୯୧୦

ସକାଳେ ପ୍ରାର୍ଥନା ସରିବା ପରେ ଆମେ ସାଇମହାରାଜାଙ୍କୁ ବାହାରକୁ ବୁଲିଯାଉଥିବାର ଦେଖିଲୁ । ପରେ ଅପରାହ୍ଣରେ ଆମେ ତାଙ୍କର ଦର୍ଶନ ପାଇଁ ଗଲୁ କିନ୍ତୁ ସେତେବେଳେ ସେ ତାଙ୍କର ଗୋଡ଼ ଧୋଉଥିବାରୁ ଆମକୁ ଫେରି ଆସିବାକୁ ପଡ଼ିଲା । ସହସ୍ରବୁଦ୍ଧ, ମୁଁ, ମୋର ପୁଅ ଏବଂ ଆଜି ସକାଳେ ଆସି ପହଞ୍ଚିବା ଜଣେ ଭଦ୍ରଲୋକ ଏହି ଦଳରେ ଥିଲେ । ପୂରା ଦଳଟିକୁ ଫେରିଯିବାକୁ ହେଲା । ପରେ ଆମେ ପୁଣିଥରେ ଗଲୁ । କିନ୍ତୁ ସାଇମହାରାଜ ଆମକୁ ବିଦା କରିଦେଲେ । ସୁତରାଂ ଆମେ ସବୁ ଫେରି ଆସିଲୁ । ସେ ଗଭୀର ଭାବରେ କ'ଣ ଭାବୁଥିଲା ପରି ମନେ ହେଲା ।

ରାତିରେ ସାଇମହାରାଜା ଚାଓ୍ୱାଡ଼ିରେ ଶୋଇଲେ ଏବଂ ଆମେ ଶୋଭାଯାତ୍ରା ଦେଖିବାକୁ ଗଲୁ । ଖୁବ୍ ଭଲଲାଗିଲା । ଆମ ସଙ୍ଗରେ ଥିବା ଭଦ୍ରଲୋକଜଣକ ପୋଲିସ୍ ଅଫିସର୍ । ମୋର ବିଶ୍ୱାସ ସେ ମୁଖ୍ୟ କନେଷ୍ଟବଲ୍ ପଦରେ କାର୍ଯ୍ୟ କରୁଥିଲେ । ଅନ୍ୟମାନଙ୍କଠାରୁ ଟଙ୍କା ଆଦାୟ କରିବାର ଅଭିଯୋଗରେ ସେସନ୍ କୋର୍ଟରେ ତାଙ୍କର ବିଚାର ଚାଲିଥିଲା । ନିର୍ଦ୍ଦୋଷରେ ଖଲାସ ହେଲେ ଏବଂ ନିଜର ଶପଥ ରକ୍ଷାପାଇଁ ସେ ଶିରିଡ଼ି ଆସିଥିଲେ । ଭଦ୍ରବ୍ୟକ୍ତିଙ୍କୁ ଦେଖି ସାଇମହାରାଜ ବିଚଳିତ ହେଲା ପରି ଜଣାପଡ଼ିଲା । ସେ କହିଲେ – ''ତୁମେ ସେଠି ଆଉ କିଛି ଦିନ ରହିଲ ନାହିଁ କାହିଁକି ?'' ଏକଥା ସେ ଦୁଇଥର କହିଲେ । ଆମେ ପରେ ଜାଣିଲୁ ଯେ ଭଦ୍ରବ୍ୟକ୍ତିଙ୍କ ବଂଧୁମାନେ ତାଙ୍କୁ ରହିବା ପାଇଁ ଜୋର୍ କରୁଥିଲେ କିନ୍ତୁ ସେ ସେମାନଙ୍କ ଅନୁରୋଧ ରକ୍ଷା କରି ନଥିଲେ । ଭଦ୍ରବ୍ୟକ୍ତି ପୂର୍ବରୁ କେବେ ସାଇମହାରାଜାଙ୍କୁ ଦେଖି ନ ଥିଲେ । ଅବଶ୍ୟ ସାଇ ମହାରାଜ କିପରି ସେ ବ୍ୟକ୍ତିକୁ ଜାଣିଲେ ଏବଂ ତାଙ୍କର ନାମ ଏବଂ ରହିବା ଘଟଣା ଜାଣିଲେ – ଏହା ବିସ୍ମୟ ସୃଷ୍ଟି କଲା ।

୯-୧୨-୧୯୧୦

ମୁଁ ଓ ମୋର ପୁଅ ଆଜି ଚାଲିଯିବୁ ବୋଲି ବ୍ୟବସ୍ଥା କରିଥିଲୁ । ସକାଳେ ପ୍ରାର୍ଥନା ପରେ ସବୁଦିନ ପରି ଆମେ ସାଇମହାରାଜାଙ୍କ ଦର୍ଶନ ପାଇଁ ବାହାରିଲୁ । ଚାଲିଯିବା ପାଇଁ ଠିକ୍ କରିଛି କି ବୋଲି ସେ ମୋର ପୁଅକୁ ପଚାରିଲେ ଏବଂ ଇଚ୍ଛା କଲେ ଆମେ ଚାଲିଯାଇପାରୁ ବୋଲି କହିଲେ । ଆମେ ଭାବିଲୁ ଯେ ଯିବାପାଇଁ ଅନୁମତି ମିଳିଯାଇଛି ଏବଂ ସେହି ଅନୁପାତରେ ଯିବାର ଯୋଗାଡ଼ଯନ୍ତ୍ର କଲୁ । ବାବା ଜିନିଷସବୁ ବନ୍ଧାବନ୍ଧି କରାଇଦେଲେ ଏବଂ ଆମପାଇଁ ଓ ଜିନିଷପତ୍ର ପାଇଁ ଆଉ ଗୋଟିଏ ଗାଡ଼ିର ବ୍ୟବସ୍ଥା କରାଇଦେଲେ । ଯିବା ପୂର୍ବରୁ ଅପରାହ୍ଣରେ

ଆମେ ବାବାଙ୍କ ଦର୍ଶନ ପାଇଁ ଗଲୁ । ମୋତେ ଦେଖି ବାବା ପଚାରିଲେ ''ସତରେ କ'ଣ ତମେ ଯିବା ପାଇଁ ଚାହୁଁଛ ?'' ମୁଁ କହିଲି – ''ଯିବାର ଅଛି, କିନ୍ତୁ ଆପଣ ଅନୁମତି ନ ଦେଲେ ମୁଁ ଯିବିନାହିଁ ।'' ସେ କହିଲେ – ''ତା ହେଲେ ତୁମେ କାଲି କିମ୍ବା ତା'ପରଦିନ ଯାଇପର । ଏଇଟା ଆମର ଘର । ୱାଡ଼ା ବି ଆମର ଘର । ମୁଁ ଏଠି ଥିବା ପର୍ଯ୍ୟନ୍ତ ଅନ୍ୟକୁ ଭୟ କରିବା କି ଦରକାର ।'' ମୁଁ ରହିଯିବା ପାଇଁ ରାଜି ହେଲି ଏବଂ ଯିବାର ସବୁ ଆୟୋଜନ କଲି । ଆମେ ବସି କଥାବାର୍ତ୍ତା ହେଲୁ । ସାଇମହାରାଜ ଖୁବ୍ ଖୁସି ମନରେ ଥିଲେ ଏବଂ ଅନେକ କଥା କହିଲେ । ଅବଶ୍ୟ ମୁଁ ସବୁ କଥା ବୁଝିପାରିଲି ନାହିଁ ।

୧୦-୧୨-୧୯୧୦

ସକାଳ ପ୍ରାର୍ଥନା ପରେ ଆମର ଯିବା ବିଷୟରେ ସାଇମହାରାଜାଙ୍କୁ କିଛି ନ କହିବାକୁ ମୋର ପୁଅ (ବାବା)କୁ କହିଲି । ସେ ସମସ୍ତଙ୍କୁ ଜାଣନ୍ତି ଏବଂ ଆମକୁ କେତେବେଳେ ପଠାଇବେ ସେ କଥା ସେ ଜାଣନ୍ତି । ସବୁଦିନ ପରି ସାଇମହାରାଜଙ୍କୁ ବାହାରକୁ ଯିବାର ଦେଖିଲୁ । ଆମେ ମସ୍‌ଜିଦ୍‌କୁ ଯିବାରୁ ସାଇମହାରାଜ ଖୁବ୍ ଖୁସି ହେଲେ । ତାଙ୍କ ସହିତ ଖେଳୁଥିବା ଗୋଟିଏ ଝିଅର ପୂର୍ବଜନ୍ମ ସଂପର୍କରେ ଗୋଟିଏ ଗପ କହିଲେ । ବାବା କହିଲେ ଯେ ପୂର୍ବ ଜନ୍ମରେ ଝିଅଟି କଳାକାର ଥିଲା । ତା'ର ମୃତ୍ୟୁପରେ ତାକୁ କବର ଦିଆଗଲା । ସାଇମହାରାଜ ସେଇବାଟ ଦେଇ ଯାଉଥିଲେ ଏବଂ ଗୋଟିଏ ରାତି ତାଙ୍କୁ ସେ କବର ପାଖରେ କାଟିବାକୁ ପଡ଼ିଥିଲା । ଝିଅଟିର ଅଶରୀରୀ ରୂପ ବାବାଙ୍କର ଅନୁଧାବନ କଲା । ବାବା ତାକୁ ଗୋଟିଏ ଗଛରେ ରଖିଲେ ଏବଂ ତା'ପରେ ଏଠାକୁ ଆଣିଲେ । ବାବା କହିଲେ ଯେ ସେ ପୂର୍ବରୁ କବୀର ଥିଲେ ଏବଂ ସୂତା ବୁଣୁଥିଲେ । କଥାବାର୍ତ୍ତା ଖୁବ୍ ପ୍ରୀତିପୂର୍ଣ୍ଣ ଭାବରେ ଚାଲିଥିଲା । ଅପରାହ୍ନରେ ୱାର୍ଦ୍ଧାର ଶ୍ରୀ ଶ୍ରୀଧର ପାଣି ପାରାଞ୍ଜପେ, ତାଙ୍କ ସହିତ ଜଣେ ଡାକ୍ତର ଶ୍ରୀ ପଣ୍ଡିତ୍ ଏବଂ ତୃତୀୟଜଣକ ଜଣେ ଭଦ୍ରବ୍ୟକ୍ତି ଆସିଲେ । ଅହମ୍ମଦନଗରର ଶ୍ରୀ ପଟ୍ଟବର୍ଦ୍ଧନ ମଧ୍ୟ ସେମାନଙ୍କ ସହିତ ଥିଲେ । ମୋର ପୁଅ ଓ ପଟ୍ଟବର୍ଦ୍ଧନ ପୁରୁଣା କଲେଜ ବଂଧୁ । ସେମାନେ ସମସ୍ତେ ମହାରାଜଙ୍କ ଦର୍ଶନ ପାଇଁ ଗଲେ ଏବଂ ଆମେ ମଧ୍ୟ ଗଲୁ । ସମସ୍ତଙ୍କୁ ଯେପରି ବ୍ୟବହାର କରନ୍ତି ସାଇମହାରାଜ ସେମାନଙ୍କ ସହିତ ସେପରି ବ୍ୟବହାର କଲେ । ସେ ପ୍ରଥମେ ତେଲୀମାରୱାଡ଼ିଙ୍କ ବିଷୟରେ କହିଲେ । ସେ କହିଲେ – ପୃଥିବୀ ପାଗଳ । ପ୍ରତି ଲୋକ ଖରାପ ଚିନ୍ତା ଅଭ୍ୟାସରେ ପଡ଼ିଯାଇଛନ୍ତି । ମୁଁ ସେମାନଙ୍କ ସହିତ ନିଜକୁ ସମାନ କରିବାକୁ

ଚାହେଁନା । ସେମାନଙ୍କ କଥାରେ କାନ ଦିଏନାହିଁ । ମୁଁ ସେମାନଙ୍କୁ ଉତ୍ତର ମଧ୍ୟ ଦିଏନାହିଁ । କି ଉତ୍ତର ବା ଦେବି ? ତା ପରେ ସେ ଉଦି ବିତରଣ କଲେ ଏବଂ ୱାଡ଼ାକୁ ଫେରିଯିବା ପାଇଁ ଆମକୁ କହିଲେ । ସେ ପଟବର୍ଦ୍ଧନ ୱାଡ଼ାକୁ ଚାହିଁ ଚିରାଚରିତ ଭଙ୍ଗୀରେ ପ୍ରସ୍ଥାନ ସମୟ କାଲି ବୋଲି କହିଦଲେ । ମୁଁ ଏବଂ ବାବା ସାହେବ ସହସ୍ରବୁଦ୍ଧ ୱାଡ଼ାକୁ ଫେରିଆସିଲୁ । ପାରାଞ୍ଜପେ ଏବଂ ତାଙ୍କର ସାଥୀ ରାଧାକ୍ରିଷ୍ଣ ମାଈଙ୍କ ପାଖକୁ ଗଲେ । ବାପୁ ସାହେବ ଜୋଗ୍‌ଙ୍କ ପତ୍ନୀ ଅସୁସ୍ଥ ଥିଲେ । ଏହି ମହିଳା ଜଣେ ସାଇବାବାଙ୍କ କଥାମାନି ଥାଆନ୍ତି ଏବଂ ବାପୁ ସାହେବ ମଧ୍ୟ କିଛି ବାହାରର ଔଷଧପତ୍ର ଦିଅନ୍ତି ନାହିଁ । କିନ୍ତୁ ଆଜି ବୋଧହୁଏ ସେ ଧୈର୍ଯ୍ୟହରା ହୋଇ ଶିରିଡ଼ି ଛାଡ଼ି ଚାଲିଯିବେ ବୋଲି ବସିଥିଲେ । ଏପରିକି ବାପୁସାହେବ ମଧ୍ୟ ଅସହାୟ ହୋଇପଡ଼ି ତାଙ୍କୁ ଯିବା ପାଇଁ ହଁ କରିଦେଲେ । ତାଙ୍କର ଦେହ କିପରି ଅଛି ଏବଂ ସେ କେବେ ଯାଉଛନ୍ତି ବୋଲି ବାବା ବାରମ୍ବାର ପଚାରି ଚାଲିଥାଆନ୍ତି । ସଂଧ୍ୟାବେଳେ ବାପୁସାହେବ ବାବାଙ୍କ ଅନୁମତି ନେବାପାଇଁ ବାହାରିଥାଆନ୍ତି । ଠିକ୍ ସେହି ସମୟରେ ତାଙ୍କ ସ୍ତ୍ରୀ ତାଙ୍କୁ କହିଲେ ଯେ ତାଙ୍କୁ ଟିକେ ଭଲ ଲାଗୁଛି ଏବଂ ସେ ଶିରିଡ଼ି ଛାଡ଼ି ଯିବାକୁ ଚାହୁଁନାହାନ୍ତି । ଆମେ ସମସ୍ତେ ଆନନ୍ଦ ବିସ୍ମୟରେ ଆତ୍ମହରା ହେଲୁ ।

୧୧।୧୨।୧୯୧୦

ସକାଳେ ପ୍ରାର୍ଥନା ଓ ସ୍ନାନାଦି ସାରିବା ପରେ ମୁଁ ଓ ବମ୍ବେର ଶ୍ରୀ ହରିଭାଇ ଦୀକ୍ଷିତ୍ ଓ ତାଙ୍କର କେତେକ ବଂଧୁ ବାବାଙ୍କ ଦର୍ଶନ ପାଇଁ ଗଲୁ । ସ୍ୱର୍ଗତ ଡକ୍ଟର ଆତ୍ମାରାମ ପାଣ୍ଡୁରଙ୍ଗାଙ୍କ ପୁତ୍ର, ଶ୍ରୀ ତାରଖଣ୍ଡ ଏବଂ ଆଲୋକର ମହାଜନ ଆବା ସାହେବଙ୍କ ସମ୍ପର୍କୀୟ ଭାଇ ଶ୍ରୀ ମହାଜନୀ ଏହି ଦଳରେ ଥିଲେ । ପ୍ରତିଦିନ ପରି ଆମେ ସାଇମହାରାଜଙ୍କ ପାଖକୁ ଗଲୁ । ଆଜି କଥାବାର୍ତ୍ତା ଖୁବ୍ ଗୁରୁତ୍ୱପୂର୍ଣ୍ଣ ଥିଲା । ଦୁଇଟି ବିଶିଷ୍ଟ ଘଟଣା ଘଟିଲା । ସାଇମହାରାଜ କହିଲେ ଯେ ସେ ଗୋଟିଏ କୋଣରେ ବସୁଥିଲେ ଏବଂ ତାଙ୍କ ଶରୀରର ନିମ୍ନଅଂଶକୁ ଗୋଟିଏ ପାରା ଶରୀର ସହିତ ବଦଳାଇବାକୁ ଚାହିଁଲେ । ସେପରି ପରିବର୍ତ୍ତନ ଘଟିଥିଲା । କିନ୍ତୁ ଗୋଟିଏ ବର୍ଷ ପର୍ଯ୍ୟନ୍ତ ତାହା ଜାଣି ନଥିଲେ ଏବଂ ତାଙ୍କୁ ଲକ୍ଷେ ଟଙ୍କା ହରାଇବାକୁ ପଡ଼ିଥିଲା । ତାପରେ ସେ ଗୋଟିଏ ଖୁଣ୍ଟ ପାଖରେ ବସିବାକୁ ଲାଗିଲେ । ଗୋଟିଏ ବଡ଼ ସାପ ପାଖରେ ଥିଲା ଏବଂ ରାଗିଗଲା । ସାପଟି ଡିଆଁ ଡେଇଁ କଲା ଏବଂ ଉପରୁ ପଡ଼ିଲା । ତାପରେ ବାବା ହଠାତ୍ ପ୍ରସଙ୍ଗ ବଦଳାଇ କହିଲେ ଯେ ସେ ଗୋଟିଏ ଜାଗାକୁ ଯାଇଥିଲେ ।

ସେଠାରେ ପାଟିଲ୍ ତାଙ୍କୁ ଛାଡ଼ିଲା ନାହିଁ ଏବଂ ଗଛସବୁ ଲଗାଇ ତାଙ୍କ ମଧ୍ୟରେ ଏକ ପାଦ ଚଳା ରାସ୍ତା କରିଦେବା ପାଇଁ ଜୋର୍ କଲା । ବାବା କହିଲେ ଯେ ସେ ଦୁଇଟିଯାକ କାର୍ଯ୍ୟ ସାରିଲେ, ସେହି ସମୟରେ କିଛି ଲୋକ ଆସିଗଲେ । ଲୋକଟି ଆଡ଼କୁ ଚାହିଁ ସେ କହିଲେ – ''ମୋ ଛଡ଼ା ତୁମକୁ ଦେଖାଚାହାଁ କରିବାକୁ କେହି ନାହିଁ ।'' ସେ ପୁଣି କହିଲେ ଯେ ସ୍ତ୍ରୀ ଲୋକଟି ତାଙ୍କର ଆତ୍ମୀୟ ଥିଲା ଏବଂ ଏ ଲୋକଟିକୁ ଲୁଟିନେଇଥିବା ରୋହିଲା ସହିତ ତା'ର ବିବାହ ହୋଇଥିଲା । ତାପରେ ବାବା କହିଲେ ଯେ ପୃଥିବୀ ବଡ଼ ବିଷମ । ଲୋକମାନେ ଆଉ ପୂର୍ବପରି ନାହାନ୍ତି । ଆଗରୁ ସେମାନେ ସତ୍ ଓ ବିଶ୍ୱାସୀ ଥିଲେ । ବର୍ତ୍ତମାନ ସେମାନେ ଅବିଶ୍ୱାସୀ ଏବଂ ସେମାନଙ୍କ ମୁଣ୍ଡରେ ବହୁ ଖରାପ ଚିନ୍ତା ପଶୁଛି । ତାପରେ ସେ ତାହାର ବାପ ଓ ବୁଢ଼ାବାପ କଥା କହିଲେ ଏବଂ ସେମାନେ କିପରି ପରସ୍ପରକୁ ରୂପ ବଦଳାଇ ପାରୁଥିଲେ ସେ କଥା କହିଲେ । ବର୍ତ୍ତମାନ ଘଟଣାର କଥା ଲେଖୁଛି । ଶ୍ରୀ ଦୀକ୍ଷିତ୍ କିଛି ଫଳମୂଳ ଆଣିଥିଲେ । ସାଇମହାରାଜ କିଛି ନେଲେ ଏବଂ କିଛି ଫଳମୂଳ ଅନ୍ୟମାନଙ୍କ ମଧ୍ୟରେ ବାଣ୍ଟିଦେଲେ । ଏହି ତାଲୁକର ମାମଲତଦାର୍ ବାଲାସାହେବ ସେଠାରେ ଉପସ୍ଥିତ ଥିଲେ । ସେ କହିଲେ ଯେ ସାଇ ମହାରାଜ କେବଳ ଗୋଟିଏ ପ୍ରକାରର ଫଳ ବିତରଣ କରୁଛନ୍ତି । ମୋର ପୁଅ ତାର ସାଙ୍ଗ ପଟ୍ଟବର୍ଦ୍ଧନକୁ କହିଲା ଯେ, ବାବା ଲୋକର ଭକ୍ତି ଦେଖି ତା'ଠାରୁ ସେଇ ଅନୁପାତରେ ଫଳ ଗ୍ରହଣ କରନ୍ତି ଅଥବା ଫେରାଇ ଦିଅନ୍ତି । ମୋ ପୁଅ (ବାବା) ମୋତେ ଏ କଥା କହିଥିଲା ଏବଂ ସେ କଥା ପଟ୍ଟବର୍ଦ୍ଧନକୁ ମଧ୍ୟ କହିଲା । ଏ କଥାଟି ନିରବତା ଭଙ୍ଗ କଲା । ମୁଁ ଦେଖିଲି ସାଇମହାରାଜ ମୋ ଆଡ଼େ ଚାହିଁଛନ୍ତି । ତାଙ୍କର ଗୋଟିଏ ଆଖିରେ ଅପୂର୍ବ ଦୀପ୍ତି ଏବଂ ରାଗର ଝଲକ । ମୁଁ କ'ଣ କହିଲି ବୋଲି ସେ ପଚାରିଲେ । ମୁଁ କହିଲି ଯେ ମୁଁ କିଛି କହିନାହିଁ ଏବଂ ପିଲାମାନେ ସେମାନଙ୍କ ମଧ୍ୟରେ କଥାବାର୍ତ୍ତା କରୁଥିଲେ । ସେ ମୋର ପୁଅ ଓ ପଟ୍ଟବର୍ଦ୍ଧନ ଆଡ଼େ ଚାହିଁଲେ । ତାଙ୍କର ମନୋଭାବ ହଠାତ୍ ବଦଳିଗଲା । ଶେଷ ଆଡ଼କୁ ବାଲାସାହେବ ମିଲକର୍ ମନ୍ତବ୍ୟ ଦେଲେ ଯେ ଆମେ ସବୁ ଖାଦ୍ୟ ଗ୍ରହଣରେ ବ୍ୟସ୍ତଥିବା ବେଳେ ସାଇମହାରାଜ ହରିଭାଇ ଦୀକ୍ଷିତ୍‌ଙ୍କ ସହିତ କଥାବାର୍ତ୍ତା କରିଚାଲିଥିଲେ । ଅହମ୍ମଦନଗରର ମାଜିଷ୍ଟ୍ରେଟ ଓ ଇନାମଦାର ମିଲ୍‌କାର୍‌ଙ୍କ ବାପା ସେଠାକୁ ଆସିଥିଲେ । ପୁରୁଖା ଲୋକଙ୍କଠାରେ ଦେଖାଯାଉଥିବା ସୁଗୁଣରେ ପରିପୂର୍ଣ୍ଣ ସେ ଜଣେ ସମ୍ମାନିତ ଭଦ୍ରବ୍ୟକ୍ତି । ମୋତେ ତାଙ୍କ କଥାବାର୍ତ୍ତା ଖୁବ୍ ଭଲ ଲାଗିଲା । ସଂଧ୍ୟାବେଳେ ପ୍ରତିଦିନ ପରି ଆମେ ସାଇମହାରାଜଙ୍କ ଦର୍ଶନ

ପାଇଲୁ ଏବଂ ରାତିରେ ଆମେ ସେ ବିଷୟରେ କଥାବାର୍ତ୍ତା କଲୁ । ପ୍ରତିଦିନ ପରି ଶ୍ରୀ ନୁଲକର୍‌ଙ୍କ ପୁତ୍ର ବିଶ୍ୱନାଥ ଭଜନ କରିଥିଲେ ।

୧୨-୧୨-୧୯୧୦

ସକାଳ ପ୍ରାର୍ଥନା ପରେ ପ୍ରତିଦିନ ପରି ଆମେ ସାଇମହାରାଜାଙ୍କୁ ବାହାରି ଯିବାର ଦେଖିଲୁ । ସବୁଦିନ ପରି ଆମ ଭିତରେ କଥାବାର୍ତ୍ତା ଆରମ୍ଭ କଲୁ । ଶ୍ରୀ ଦୀକ୍ଷିତ୍‌ଙ୍କର ପୂରାପୂରି ରୂପାନ୍ତର ଘଟିଲା ପରି ମନେ ହେଉଥିଲା । ସେ ପ୍ରାର୍ଥନାରେ ବହୁତ ସମୟ କଟାଉଥିଲେ । ତାଙ୍କର ଧୀର ସ୍ୱଭାବରେ ମଧୁରତା ସମ୍ଭବ ହୋଇ ପାରିଥିଲା । ପରେ ପରେ ପୁଲ୍‌ଗାଁରୁ ରାଓ ବାହାଦୂର ରାଜାରାମପନ୍ତ ଦୀକ୍ଷିତ୍ ଆସିଥିଲେ । ସେ କହିଲେ ଯେ ସେ ନାଗପୁର ଛାଡ଼ିଲା ବେଳେ ଶିରିଡ଼ି ଯିବାପାଇଁ ତାଙ୍କର କୌଣସି ଯୋଜନା ନଥିଲା । କିନ୍ତୁ ପଲ୍‌ଗାଁରେ ହଠାତ୍ ସେ ଶିରିଡ଼ି ଯିବାପାଇଁ ମନସ୍ଥ କରି ବସିଲେ ଏବଂ ମୁହୂର୍ତ୍ତକ ମଧ୍ୟରେ ତାଙ୍କର ଶିରିଡ଼ି ଯିବାର ଯୋଜନା ତିଆରି ହୋଇଗଲା । ମୁଁ ତାଙ୍କୁ ଦେଖି ଖୁବ୍ ଖୁସି ହେଲି । ପରେ ଆମେ ସମସ୍ତେ ସାଇ ମହାରାଜାଙ୍କୁ ଦେଖିବାକୁ ଗଲୁ । ମୋର ଟିକେ ଡେରି ହୋଇଗଲା ଏବଂ ସାଇମହାରାଜଙ୍କ ମୁହଁରୁ ଗୋଟିଏ ଚମତ୍କାର ଗଳ୍ପ ଶୁଣିବାର ସୁଯୋଗରୁ ମୁଁ ଅଳ୍ପକେ ବଂଚିତ ହୋଇଗଲି । ସେ ଗଳ୍ପ କହି ବହୁ ଶିକ୍ଷା ଦିଅନ୍ତି । ଗପଟି ଘୋଡ଼ା ପୋଷିଥିବା ଗୋଟିଏ ଲୋକ ବିଷୟରେ । ଘୋଡ଼ାଟି ଯାହା ଇଚ୍ଛା ତାହା କରିବ, ମାତ୍ର ଅନ୍ୟ ଘୋଡ଼ା ସହିତ ଏକାଠି ହୋଇ ଗାଡ଼ି ଟାଣିବ ନାହିଁ । ଲୋକଟି ଘୋଡ଼ାଟିକୁ ବହୁ ଜାଗାକୁ ନେଲା ଏବଂ ବହୁ ପ୍ରକାର ତାଲିମ ଦେବାକୁ ଉଦ୍ୟମ କଲା । ମାତ୍ର ଫଳ କିଛି ହେଲା ନାହିଁ । ତା'ପରେ ଜଣେ ବିଦ୍ୱାନ୍ ଆସି କହିଲେ ଯେ ଘୋଡ଼ାଟି ପ୍ରଥମେ କେଉଁଠାରୁ ଆସିଥିଲା ସେଠାକୁ ନେଇଯିବା ଉଚିତ୍ । ତାପରେ ତାହାହିଁ କରାଗଲା । ଦେଖାଗଲା ଘୋଡ଼ାଟିର ପରିବର୍ତ୍ତନ ଘଟିଛି ଏବଂ ସେଇଟି ଖୁବ୍ ଉପଯୋଗୀ ହୋଇ ପାରିଛି । ମୁଁ ଏହି ଗଳ୍ପ ଅଂଶବିଶେଷ ଶୁଣିଥିଲି । ତାହାପରେ ମୁଁ କେବେ ଯାଉଛି ବୋଲି ବାବା ପଚାରିଲେ । ମୁଁ କହିଲି ଯେ ବାବା ସ୍ୱଇଚ୍ଛାରେ ଆମକୁ ଯିବାପାଇଁ ଅନୁମତି ଦେବାପରେ ମୁଁ ଯିବି । ସେ କହିଲେ – ''ଆଜି ଭୋଜନ ପରେ ତୁମେ ଯାଅ ।'' ପରେ ମାଧବରାଓ ଦେଶ୍‌ପାଣ୍ଡେଙ୍କ ହାତରେ ମୋ ପାଇଁ ପ୍ରସାଦ ସ୍ୱରୂପ ଦହି ପଠାଇଥିଲେ । ଭୋଜନବେଳେ ମୁଁ ପ୍ରସାଦ ପାଇଲି ଏବଂ ତାପରେ ସାଇମହାରାଜଙ୍କ ପାଖକୁ ଗଲି । ମୁଁ ପହଞ୍ଚିଲା ମାତ୍ରେ ସେ ଆମର ଯିବା ପାଇଁ ପୁନଶ୍ଚ ଅନୁମତି ଦେଲେ । ତଥାପି ମୋର ପୁଅ ନିଶ୍ଚିତ ହୋଇପାରି ନଥିଲା ।

ତେଣୁ ସେ ବାବାଙ୍କୁ ପୁଣି ଅନୁମତି ମାଗିଲା । ବାପା ସ୍ୱଷ୍ଟ ଭାବରେ ଅନୁମତି ଦେଲେ । ସାଇମହାରାଜ ଅନ୍ୟମାନଙ୍କୁ ଦକ୍ଷିଣା ମାଗିଲେ । କିନ୍ତ ମୋତେ କିମ୍ବା ମୋର ପୁଅକୁ କିଛି ସେ ବିଷୟରେ କହିଲେ ନାହିଁ । ମୋ ହାତରେ ପଇସା ପତ୍ର କମ୍ ଥିଲାଂ । ବାବା ଏ କଥା ଜାଣିଲା ପରି ମନେହେଲା । ଶ୍ରୀ ନୁଲକର୍, ଶ୍ରୀ ଦୀକ୍ଷିତ୍, ଶ୍ରୀ ବାପୁ ସାହେବ ଜୋଗ୍, ବାବା ସାହେବ ସହସ୍ରବୁଦ୍ଧ, ମାଧବରାଓ ଦେଶପାଣ୍ଡେ, ବାଲ୍‌ସାହେବ ଭଟ, ବାସୁଦେବ ରାଓ ଓ ଅନ୍ୟମାନଙ୍କୁ ବିଦାୟ ଜଣାଇ ଆମେ ଶିରିଡ଼ି ଛାଡ଼ିଲୁ । ଆମ ସହିତ ପଟ୍ଟବର୍ଦ୍ଧନ ପ୍ରଧାନ, ବାବା ମହାଜନୀ ଶ୍ରୀ ତାରଖଣ୍ଡ ଏବଂ ଆସି ପହଞ୍ଚିଯିବା ଶ୍ରୀ ଭିଡ଼େ ମଧ ଥିଲେ । ପ୍ରାୟ ସଂଧ୍ୟା ଘ୬-୧୦ ବେଳେ ଆମେ ସବୁ କୋପର ଗାଁରେ ଟ୍ରେନ୍ ଧରିଲୁ ଏବଂ ମନ୍‌ମଡ୍ ପର୍ଯ୍ୟନ୍ତ ଗଲୁ । ଶ୍ରୀ ଭିଡ଼େ ଯେଓହାଠାରେ ଓହ୍ଲାଇଗଲେ । ମୁଁ ଓ ମୋର ପୁଅ ପଞ୍ଜାବ ମେଲ୍ ଧରି ଶୀଘ୍ର ମନ୍‌ମଡ୍ ଛାଡ଼ିଲୁ ।



# ଲୀଳା ଏକ, ଉଦ୍ଦେଶ୍ୟ ଅନେକ

ଦିବ୍ୟ ଲୀଳାର ପରିପ୍ରକାଶ ଆମର ମନ ଓ ହୃଦୟକୁ ସ୍ପର୍ଶକରି ଆମ ପାଇଁ ଚମତ୍କାରିତାର ବଳୟ ସୃଷ୍ଟି କରେ । ଏପରି ପରିପ୍ରକାଶ ଆମର ପ୍ରାଣକୁ ଆଲୋଡ଼ିତ କରେ । କିନ୍ତୁ ଏହି ଲୀଳାର ବାହ୍ୟିକ ରୂପକୁ ଭେଦକରି ତାହାର ପ୍ରକୃତ ତାତ୍ପର୍ଯ୍ୟ ବୁଝିବା ମାନବୀୟ ଉଦ୍ୟମରେ ସଫଳ ହୁଏ ନାହିଁ । ଦିବ୍ୟ ଲୀଳାର ହୁଏତ ଗୋଟିଏ ବାହ୍ୟିକ ରୂପ ଥାଇପାରେ; ମାତ୍ର ଦିବ୍ୟ ପରିକଳ୍ପନାରେ ଏପରି ଲୀଳା ଅନେକଙ୍କ ପାଇଁ ଅଭିପ୍ରେତ ହୋଇଥାଏ । ଭିନ୍ନ ଭିନ୍ନ ବ୍ୟକ୍ତିଙ୍କ ପାଇଁ ତାହା ପୃଥକ୍ ପୃଥକ୍ ଉଦ୍ଦେଶ୍ୟ ବହନ କରିଥାଏ ।

ଲୀଳାମୟ ପୁରୁଷ ଶିରିଡ଼ିର ସାଇବାବାଙ୍କ ଜୀବନର ବହୁ ଲୀଳା ଖେଳା ପ୍ରକଟିତ ହୋଇଥିଲା । ଗୋଟିଏ ଗୋଟିଏ ଲୀଳା ମାଧ୍ୟମରେ ବହୁ ଦିବ୍ୟ ଉଦ୍ଦେଶ୍ୟର ସାଧନ ବହୁଲୋକଙ୍କର ସଂସ୍କାର ଏବଂ ଏକାଧିକ ତତ୍ତ୍ୱର ପ୍ରଖ୍ୟାପନ ସମ୍ଭବ ହେଉଥିଲା । ପ୍ରତିଟି ଲୀଳାର ସୂତା ମଧ୍ୟରେ ଅନେକଗୁଡ଼ିଏ ପୁଷ୍ପ ସଂଯୋଜିତ ହୋଇଥିଲା । ଗୋଟିଏ ଗୋଟିଏ ଲୀଳାର ପ୍ରବାହ ମଧ୍ୟରେ ଅନେକଗୁଡ଼ିଏ ସ୍ରୋତ ଥିଲା । ଏକକ ଲୀଳା ମଧ୍ୟରେ ଏକାଧିକ ବିଧି ନିର୍ଦ୍ଦେଶ ପ୍ରକଟିତ ହୋଇଥିଲା । ଶ୍ରୀ ସାଇ ସତ୍‌ଚରିତରେ ବର୍ଣ୍ଣିତ ଗୋଟିଏ ଘଟଣା ମଧ୍ୟରେ ଏହାର ଏକ ପ୍ରାଞ୍ଜଳ ଦୃଷ୍ଟାନ୍ତ ଦିଆଯାଇପାରେ ।

୧୯୧୦ ମସିହାରେ ଦୀପାବଳୀ ପୂଜା ଅବସର ସମୟରେ ବାବା ଧୂନି ପାଖରେ ବସିଥିଲେ । ସମୟ ସମୟରେ ଧୂନି ମଧ୍ୟକୁ ଖଣ୍ଡିଏ ଖଣ୍ଡିଏ କାଠ ଠେଲି ଦେଉଥିଲେ । ଧୂନି ଖୁବ୍ ଜୋର୍‌ରେ ଜଳୁଥିଲା । କିଛି ସମୟ ପରେ ବାବା ହଠାତ୍ ନିଜର ହାତକୁ ଧୂନି ମଧ୍ୟକୁ ପୂରାଇଦେଲେ । ବାବାଙ୍କର ହାତ ପୋଡ଼ିଗଲା, ପାଖରେ ଉପସ୍ଥିତ ଥିବା ସେବକ ମାଧବ ଏବଂ ମାଧବରାଓ ଦେଶପାଣ୍ଡେ (ଶ୍ୟାମ) ଶିହରୀ ଉଠିଲେ । ସେମାନେ ପାଖକୁ ଦୌଡ଼ିଆସିଲେ । ଶ୍ୟାମ ବାବାଙ୍କ ଅଣ୍ଟାକୁ ଧରି ପଛକୁ ଭିଡ଼ି ଆଣିଲା ଏବଂ କାକୁସ୍ଥ ସ୍ୱରରେ କହିଲା ''ଦେବ, ଆପଣ ଏମିତି କାହିଁକି କଲେ ?''

ବାବା ପ୍ରକୃତିସ୍ଥ ହୋଇ କହିଲେ, ''ବହୁ ଦୂରରେ ଗୋଟିଏ କମାରର ସ୍ତ୍ରୀ ନିଆଁଶାଳ ପାଖରେ ବସି କାମ କରୁଥିଲା । ଦୂରରୁ ତାହାର ସ୍ୱାମୀ ତାକୁଂ ଡାକିଲା ।

ନିଜର କୋଳରେ ତା'ର ସନ୍ତାନଟି ଅଛି ବୋଲି ସେ ଭୁଲିଯାଇ ଦୌଡ଼ିବାକୁ ଆରମ୍ଭ କଲା । ଫଳରେ ଶିଶୁଟି ନିଆଁଶାଳରେ ପଡ଼ିଯାଇଥିଲେ । ହଠାତ୍ ମୋର ହାତ ପୂରାଇ ଶିଶୁଟିକୁ ମୁଁ କାଢ଼ି ଆଣିଲି ? ମୋର ହାତ ପୋଡ଼ିଯାଉଛି ବୋଲି ଆଦୌ ବ୍ୟସ୍ତ ହୁଅ ନାହିଁ । ମୋର ଆନନ୍ଦ ଯେ ଶିଶୁଟି ନିଶ୍ଚିତ ମୃତ୍ୟୁମୁଖରୁ ବଞ୍ଚିଯାଇଛି ।

ଘଟଣାଟି ସ୍ପଷ୍ଟଭାବରେ ବାବାଙ୍କର ସର୍ବବ୍ୟାପକତ୍ୱର ସୂଚନା ଦିଏ । କମାରଶାଳ ଓ କମାର ପରିବାର ବାବାଙ୍କଠାରୁ ବହୁ ଦୂରରେ ଥିଲେ, ତଥାପି ଏହି ଭୌଗଳିକ ଦୂରତ୍ୱ କୌଣସି ପ୍ରତିବଂଧକ ସୃଷ୍ଟିକରି ନଥିଲା । ସର୍ବଦ୍ରଷ୍ଟା ଶିରିଡ଼ି ସାଇବାବା ଯୋଜନ ଯୋଜନ ଦୂରରେ ଘଟୁଥିବା ଏହି ଘଟଣାଟି ଜାଣିପାରି ନିଜେ ହସ୍ତକ୍ଷେପ କରିଥିଲେ । ସେଠାରେ ଥିବା ସେବକ ମାଧବ ଓ ଶ୍ୟାମ ମନରେ ଆଉ ସନ୍ଦେହ ରହି ନଥିବ ଯେ ବାବା ସର୍ବବ୍ୟାପୀ କି ନୁହେଁ ।

ଲୀଳାମୟ ଭଗବାନଙ୍କ ନିକଟରେ ମାନବୀୟ ଦୂରତ୍ୱର ଅର୍ଥ କିଛି ନାହିଁ । ସେ ସର୍ବତ୍ର ବିଦ୍ୟମାନ । ଜଗତରେ ଘଟୁଥିବା ଯାବତୀୟ କ୍ରିୟାକଳାପର ସେ ସର୍ବଦ୍ରଷ୍ଟା । ମଣିଷ ହୃଦୟରେ ତାଙ୍କର ସର୍ବବ୍ୟାପକତ୍ୱକୁ ଅଧିକ ଦୃଢ଼ ଓ ଅଧିକ ପ୍ରତିଷ୍ଠିତ କରିବା ପାଇଁ ତାଙ୍କର ଦିବ୍ୟ ଲୀଳାର ବେଳେ ବେଳେ ପ୍ରକଟନ ହୁଏ । ମାଧବ ଓ ଶ୍ୟାମ ସମ୍ମୁଖରେ ତାହାହିଁ ହେଲା ।

ସେ ଉଦ୍ଦେଶ୍ୟରୁ ଅଧିକତର ପ୍ରଣିଧାନର ବିଷୟ ହେଉଛି ଆଶ୍ରିତ ପ୍ରତି ଭଗବାନଙ୍କର ଆଶ୍ରୟ । ଆଶ୍ରିତ କମାର ପରିବାରର ଶିଶୁଟିକୁ ରକ୍ଷାକରିବା ପାଇଁ ସେ କେବଳ ସମୟୋଚିତ ଯୋଜନା କରି ନ ଥିଲେ, ସେମାନଙ୍କ କଷ୍ଟକୁ ନିଜ ଶରୀରକୁ ଟେକି ନେଇଥିଲେ । ହାତର କଷ୍ଟ, ଶରୀରର ଯନ୍ତ୍ରଣା ଏବଂ କ୍ଷତର ଚିହ୍ନ ମାଧ୍ୟମରେ ବାବାଙ୍କ ଅକଳନ ପ୍ରେମ ପ୍ରକାଶ ପାଇଥିଲା । ଭଗବାନଙ୍କର ଆଶ୍ରିତ ଯେତେ ଦୂରରେ ଥାଉ ନା କାହିଁକି ବାବାଙ୍କର ପ୍ରେମର ବନ୍ଧନୀ ମଧ୍ୟରେ ସେ ଯେ ନିରାପଦ, ଏ କଥା ସଦା ପ୍ରତିବିମ୍ବିତ ହୋଇ ଉଠିଥିଲା । ମୋଟ ଉପରେ ବାବାଙ୍କ ଲୀଳା ଭଗବତ କରୁଣାର ଏକ ଜାଜ୍ୱଲ୍ୟମୟ ପରିପ୍ରକାଶ ଥିଲା ।

ଗଭୀର ଭାବରେ ଅନୁଶୀଳନ କଲେ ପ୍ରତୀୟମାନ ହେବ ଯେ ବାବା ସର୍ବଶକ୍ତିମାନ ହୋଇଥିବାରୁ ସେ ନିଜର ହାତ ନ ପୋଡ଼ି ମଧ୍ୟ କମାର ଶିଶୁକୁ ରକ୍ଷା କରିପାରିଥାନ୍ତେ । ସାଇ ସତ୍‌ଚରିତରେ ବର୍ଣ୍ଣିତ ଅଛି ଯେ ବାବା ଖୁବ୍ କମ୍ ଖାଦ୍ୟ ନିଜେ ଖାଉଥିଲେ । ଭିକ୍ଷାରୁ ସଂଗୃହୀତ ଖାଦ୍ୟପଦାର୍ଥରୁ ନିଜେ ଅଳ୍ପ ବ୍ୟବହାର କରି ସେ ଅନ୍ୟମାନଙ୍କୁ ବାଣ୍ଟି ଦେଉଥିଲେ । ଅନ୍ୟମାନଙ୍କୁ ଭଲରୂପେ ଖୁଆଇବା ପାଇଁ

ସେ ନିଜେ ବ୍ୟବସ୍ଥା କଲେ । ମସ୍‌ଜିଦ୍‌ର ଉନ୍ମୁକ୍ତ ଅଗଣାରେ ନିଆଁଜାଳି ହାଣ୍ଡି ବସାଉଥିଲେ । ସେ ଦୁଇଟି ହାଣ୍ଡି ବସାଉଥିଲେ, ଗୋଟିଏ ଛୋଟହାଣ୍ଡି ଓ ଗୋଟିଏ ବଡ଼ ହାଣ୍ଡି । ଛୋଟ ହାଣ୍ଡିଟିରେ ପଚାଶ ଜଣଙ୍କ ପାଇଁ ରୋଷାଇ ହେବା ସ୍ଥଳେ ବଡ଼ ହାଣ୍ଡିଟି ଶହେଜଣଙ୍କ ପାଇଁ ବ୍ୟବହୃତ ହେଉଥିଲା । ବାବା ବେଳେ ବେଳେ ମିଠାଭାତ ଏବଂ ବେଳେ ବେଳେ ପଲାଉ ରାନ୍ଧୁଥିଲେ । ସେ ନିଜେ ମସଲା ବାଟୁଥିଲେ ଏବଂ ଅନ୍ୟ ସମସ୍ତ ଆୟୋଜନ କରୁଥିଲେ ।

ଖାଦ୍ୟ ଠିକ୍ ଭାବେ ପାକ ହୋଇଛି କି ନାହିଁ, ତାହା ଜାଣିବା ପାଇଁ ବାବା ନିଜର କାଫ୍‌ନୀକୁ ଉପରକୁ ଗୁଡ଼ାଇଦେଇ ନିର୍ଭୟରେ ନିଜ ହାତକୁ ସେଇ ଫୁଟୁଥିବା ପାତ୍ର ଭିତରେ ପୂରାଇ ଦେଉଥିଲେ ଏବଂ ଭାତ ଚିପୁଥିଲେ । ହାଣ୍ଡିରେ ଥିବା ପାକ ହେଉଥିବା ଖାଦ୍ୟପଦାର୍ଥ ଅତି ଉତ୍ତପ୍ତ ଅବସ୍ଥାରେ ଥିଲେ ମଧ ବାବାଙ୍କ ହାତରେ କୌଣସି ପୋଡ଼ାଜଳାର ଚିହ୍ନ ନ ଥିଲା ଏବଂ ମୁଖରେ କୌଣସି ଅସ୍ୱାଭାବିକ ଭାବଭଙ୍ଗୀ ନଥିଲା । ନିଜର ହାତ ହଲାଇ ସେ ଖାଦ୍ୟପଦାର୍ଥ ସବୁ ହାଣ୍ଡିରେ ଏପଟ ସେପଟ କରୁଥିଲେ ଏବଂ ତଳ ଉପର କରୁଥିଲେ ।

ଏ ବିଷୟଟିର ଅବତାରଣା କରିବାର ତାତ୍ପର୍ଯ୍ୟ ହେଉଛି ଯେ ବାବା ଶରୀରଧାରୀ ହେଲେ ମଧ ଶରୀରର ଦୁଃଖ କଷ୍ଟ, ଶରୀରର ଭୋଗ ଯାତନାଠାରୁ ସେ ବହୁ ଊର୍ଦ୍ଧ୍ୱରେ । ଏ ଦୃଷ୍ଟିରୁ ସେ ତାଙ୍କର ଦିବ୍ୟଶକ୍ତିର ପ୍ରୟୋଗ କରି ନିଜକୁ ଅକ୍ଷତ ଅବସ୍ଥାରେ ରଖି କମାର ଶିଶୁଟିକୁ ରକ୍ଷା କରିପାରିଥାଆନ୍ତେ । କିନ୍ତୁ ସେ ଦିବ୍ୟଲୀଳାର ଉଦ୍ଦେଶ୍ୟ କେବଳ ସର୍ବବ୍ୟାପକତ୍ୱ ଓ ପ୍ରେମମୟତ୍ୱ ସୂଚାଇବା ପାଇଁ ଅଭିପ୍ରେତ ନଥିଲା । ତାହା ଯେ କେତେ ଭକ୍ତଙ୍କୁ ସେବାର ସୁଯୋଗ ଦେବାପାଇଁ ଉଦ୍ଦିଷ୍ଟ ଥିଲା, ତାହା ପରବର୍ତ୍ତୀ ଘଟଣାରୁ ପ୍ରମାଣିତ ହେଲା ।

ବାବାଙ୍କର ହାତଟି ପୋଡ଼ିଯାଇଛି ବୋଲି ଶୁଣିବାପରେ ଶ୍ରୀ ନାନାସାହେବ ଚନ୍ଦ୍ରକର୍ ବମ୍ବେର ଜଣେ ଡାକ୍ତର ଶ୍ରୀ ପରମାନନ୍ଦଙ୍କୁ ଶିରିଡ଼ି ନେଇଆସିଲେ । ଡାକ୍ତର ପରମାନନ୍ଦ ତାଙ୍କର ଡାକ୍ତରୀ ଯନ୍ତ୍ରପାତି ସହିତ କେତେକ ଔଷଧପତ୍ର ଧରି ଶିରିଡ଼ିରେ ପହଞ୍ଚିଲେ । ଚିକିତ୍ସା ଆରମ୍ଭ କରିବା ପାଇଁ ବାବାଙ୍କୁ ଅନୁରୋଧ କରାଗଲା । ମାତ୍ର ବାବା ସେସବୁର କିଛି ଉପଯୋଗ କରି ନଥିଲେ । ତଥାପି ଲକ୍ଷ୍ୟ କରିବାର କଥା ଯେ ଏପରି ଘଟଣା ଫଳରେ ଶ୍ରୀ ପରମାନନ୍ଦ ଶିରିଡ଼ି ସାଇ ବାବାଙ୍କୁ ଦର୍ଶନ କରିବାର ସୁଯୋଗ ପାଇଲେ ଏବଂ ଗଭୀର ଆନନ୍ଦାନୁଭୂତିର ସ୍ୱାଦୁ ପାଇଲେ । ଦିବ୍ୟ ଉଦ୍ଦେଶ୍ୟ ମଧ୍ୟରୁ ଏହା ଥିଲା ଅନ୍ୟତମ ।

ଡାକ୍ତର ପରମାନନ୍ଦଙ୍କୁ ଫେରାଇ ଦେବା ପରେ ବାବାଙ୍କର ସେବା କରିବାର ସୁଯୋଗ ପାଇଲେ କୁଷ୍ଠରୋଗଗ୍ରସ୍ତ ଭାଗୋଜୀ ସିନ୍ଦେ । ପ୍ରାରବ୍ଧ ଚାପରେ ସିନ୍ଦେ ଦୀର୍ଘଦିନ ଧରି କୁଷ୍ଠ ରୋଗର ଯନ୍ତ୍ରଣାରେ କବଳିତ ଥିଲେ । କିନ୍ତୁ ଦୟାମୟ ବାବାଙ୍କ କରୁଣାରୁ ସିନ୍ଦେ ପ୍ରତିଦିନ ବାବାଙ୍କ ଆହତ ହାତଟିର ବ୍ୟାଣ୍ଡେଜ କାଢ଼ି ଧୁଆଧୋଇ କରି, ପୁଣି ନୂଆ ବ୍ୟାଣ୍ଡେଜ ଲଗାଇ ଦେଉଥିଲେ । ଏ ସେବା କେବଳ ଦିନ ଦିନ ବା ସପ୍ତାହ ସପ୍ତାହ ମଧ୍ୟରେ ସୀମିତ ନ ଥିଲା । ଭାଗୋଜୀ ସିନ୍ଦେ ବର୍ଷ ବର୍ଷ ଧରି ବାବାଙ୍କ ସେବା କରିବାର ସୌଭାଗ୍ୟ ଲାଭ କରିଥିଲେ ।

୧୯୧୦ ମସିହାରୁ ଆରମ୍ଭ କରି ୧୯୧୮ ପର୍ଯ୍ୟନ୍ତ ଦୀର୍ଘ ଆଠବର୍ଷ ଧରି ସେ ଏ ସୌଭାଗ୍ୟର ଅଧିକାରୀ ଥିଲେ । ହୁଏତ ଅତୀତର ବିରାଟ ପାପର କ୍ଷାଳନ ପାଇଁ ଏ ଥିଲା ବାବାଙ୍କର ପରିକଳ୍ପିତ ଯୋଜନା । ସେବକକୁ ସେବାର ପରିବେଶ ଦେଇ ତା'ର ପାପ କ୍ଷାଳନ କରି ତାକୁ ଅମୃତପଥରେ ନେଇଯିବା ପାଇଁ ବାବାଙ୍କର ହାତ ପୋଡ଼ି ଏକ ଦିବ୍ୟଛଳନାର ରୂପ ନେଇଥିଲା ।

ବାବାଙ୍କ ହାତପୋଡ଼ିଯିବା ଏକ ଘଟଣା ନ ଥିଲା । ଏହା ଥିଲା ଏକ ଦିବ୍ୟ ଲୀଳା । ଏହି ଲୀଳାର ବର୍ଣ୍ଣାଳୀ ଭିତରେ ବାବାଙ୍କ ସର୍ବବ୍ୟାପକତ୍ୱ, ତାଙ୍କର ଅପର୍ଯ୍ୟାପ୍ତ ପ୍ରେମ, ଆର୍ତ୍ତ ବ୍ୟକ୍ତିର ଆର୍ତ୍ତିହରଣ, ଅନନ୍ଦାନୁଭୂତିର ବିତରଣ ଏବଂ ସର୍ବୋପରି ପବିତ୍ରୀକରଣ ଭଳି ଉଦ୍ଦେଶ୍ୟ ସହ ସଂଯୋଜିତ ହୋଇ ରହିଥିଲା । ମନୁଷ୍ୟ ନିଜର ଇନ୍ଦ୍ରିୟମାନଙ୍କର ପରିସୀମତ୍ୱ ଓ ଜ୍ଞାନର ସୀମାବଦ୍ଧତ୍ୱ ଫଳରେ ସବୁ ଉଦ୍ଦେଶ୍ୟଗୁଡ଼ିକ ବୁଝିବାକୁ ସମର୍ଥ ହୋଇ ନଥାଏ । ମାତ୍ର ଭଗବାନଙ୍କ ଉପରେ ଏକାନ୍ତ ଭାବରେ ନିର୍ଭର କରୁଥିବା ବ୍ୟକ୍ତିକୁ ଦିବ୍ୟଉଦ୍ଦେଶ୍ୟର ଉପଲବ୍ଧି ଦେବାପାଇଁ ମଙ୍ଗଳମୟ ଭଗବାନ ସଦାସର୍ବଦା ଯୋଜନା କରନ୍ତି । ଶିରିଡ଼ିର ସାଇବାବାଙ୍କ ପ୍ରତିଟି ଲୀଳା ମଧ୍ୟରେ ଏହା ପ୍ରତିଧ୍ୱନିତ ।



# ତତ୍ତ୍ୱାଧାର ଶ୍ରୀ ଶିରିଡ଼ି ସାଇ

ଭଗବାନ ସକଳ ଜ୍ଞାନର ଆଧାର । ସେ ଏବଂ ତତ୍ତ୍ୱ ଏକ ଓ ଅଭିନ୍ନ । ମାନବ ଜାତିର କଲ୍ୟାଣ ପାଇଁ ସେ ଧରାପୃଷ୍ଠରେ ଅବତରଣ କଲେ ମଧ୍ୟ ଜ୍ଞାନର ଉତ୍ସ ହୋଇ ସେ ଜିଜ୍ଞାସୁମାନଙ୍କର ଆଧାତ୍ମିକ ବିକାଶ କରାଇଥାଆନ୍ତି । ଶିରିଡ଼ି ଅବତାର ସମୟରେ ସାଇବାବା ସରଳ ଜୀବନ ଯାପନ କରୁଥିଲେ । ଆଶ୍ରିତମାନଙ୍କର ପାପଭାରର କ୍ଷାଳନ ପାଇଁ ସେ ଦ୍ୱାର ଦ୍ୱାର ବୁଲି ଭିକ୍ଷା ସଂଗ୍ରହ କରୁଥିଲେ । ତାଙ୍କର ପୋଷାକ ପରିଚ୍ଛଦ ଥିଲା ଅତି ସାଧାରଣ । ତାଙ୍କର ଖାଦ୍ୟ ଥିଲା ନିତାନ୍ତ ସାମାନ୍ୟ । ଏ ସବୁର ଅନ୍ତରାଳରେ ସେ ଜିଜ୍ଞାସୁମାନଙ୍କ ପାଇଁ ଯେପରି ଜ୍ଞାନର ଆଧାର ଥିଲେ ଆଶ୍ରିତମାନଙ୍କ ପାଇଁ ସେପରି ଭକ୍ତବତ୍ସଳ ଥିଲେ ।

ଭଗବାନ ମାୟା ସୃଷ୍ଟି କରି ଲୀଳା ରଚନା କରନ୍ତି । ସେହିପରି ସାଇବାବାଙ୍କ ଦୀନହୀନ ଗ୍ରାମ୍ୟ ପରିବେଶ ଦେଖି ତାଙ୍କୁ 'ସାଧାରଣ' ପର୍ଯ୍ୟାୟଭୁକ୍ତ କରିବାର ଉଦାହରଣ ମଧ୍ୟ କମ୍ ନଥିଲା । ଏପରିକି ଗୋଟିଏ ସମୟରେ ନାନାସାହେବ ଚନ୍ଦୋରକର୍ ମଧ୍ୟ ଏ ପ୍ରକାର ଭ୍ରମର ଶରବ୍ୟ ହୋଇଥିଲେ । ନାନାସାହେବ ବାବାଙ୍କର ଅନ୍ତରଙ୍ଗ ଥିଲେ । ତଥାପି ସେ ମାୟା ଓ ଅହମିକାର ଜାଲରେ ଛନ୍ଦିହୋଇ ଭୁଲ କରି ବସିଲେ ।

ନାନାସାହେବ ବେଦାନ୍ତର ଜଣେ ଅନୁରକ୍ତ ଛାତ୍ର ଥିଲେ । ଗୀତା, ଭାଗବତ, ଉପନିଷଦ ଓ ଅନ୍ୟାନ୍ୟ ଶାସ୍ତ୍ର ବିଷୟରେ ତାଙ୍କର ଗଭୀର ଜ୍ଞାନ ଥିଲା । ସେ ବାବାଙ୍କୁ ଭକ୍ତି କରୁଥିଲେ ମଧ୍ୟ ବାବା ଯେ ସଂସ୍କୃତ ଭାଷାରେ ଅନଭିଜ୍ଞ, ଏହା ତାଙ୍କର ଧାରଣା ଥିଲା । ଥରେ ସେ ଶ୍ରୀମଦ୍ ଭଗବତ ଗୀତାର ଏକ ଶ୍ଳୋକ ମନେ ମନେ ଆବୃତ୍ତି କରୁଥିଲେ । ଶ୍ଳୋକଟି ଥିଲା :

''ତଦ୍‌ବିଦ୍ଧି ପ୍ରଣିପାତେନ ପରିପ୍ରଶ୍ନେନ ସେବୟା ।
ଉପଦେକ୍ଷନ୍ତି ତେ ଜ୍ଞାନଂ ଜ୍ଞାନିନଃ ତତ୍ତ୍ୱଦର୍ଶିନଃ ॥''

କହିବା ବାହୁଲ୍ୟ ଯେ ଶ୍ଳୋକଟି ଆବୃତ୍ତି କରିବା ସମୟରେ ନାନା ସାହେବଙ୍କର ମନରେ ଅହମିକା ଭରି ରହିଥିଲା । ସଦ୍‌ଗୁରୁ ଶ୍ରୀ ଶିରିଡ଼ି ସାଇ ତାଙ୍କ ଅନୁଗତର ହୃଦୟରୁ ଅମହିକାର ବିଲୋପ କରିବା ପାଇଁ ସ୍ଥିର କରି ନାନାସାହେବ କ'ଣ ଆବୃତ୍ତି

କରୁଛନ୍ତି ବୋଲି ପଚାରିଲେ । ନାନା ସାହେବ ବାବାଙ୍କ ଗୋଚରାର୍ଥେ ଶ୍ଳୋକଟି ଉଚ୍ଚସ୍ୱରରେ ଆବୃତ୍ତି କଲାପରେ ବାବା ତା'ର ଅର୍ଥ ପଚାରିଲେ ।

ସଂସ୍କୃତ ଭାଷା ଓ ବେଦାନ୍ତରେ ଗଭୀର ଜ୍ଞାନ ଅର୍ଜ୍ଜନ କରିଛନ୍ତି ବୋଲି ଅମହିକା ପୋଷଣ କରୁଥିବା ନାନା ସାହେବ ଶ୍ଳୋକଟିର ଆକ୍ଷରିକ ଅର୍ଥ କହିବସିଲେ । ସେ କହିଲେ – ''ଶ୍ଳୋକଟିର ଅର୍ଥ ହେଉଛି ଯେ ସାଷ୍ଟାଙ୍ଗ ପ୍ରଣିପତା କରି ଜିଜ୍ଞାସା ଭାବ ନେଇ ଓ ସେବାକରି ଗୁରୁଙ୍କଠାରୁ ଜ୍ଞାନ ପାଇହେବ । ଏପରି କଲେ ତତ୍ତ୍ୱଦର୍ଶୀ ଜ୍ଞାନୀ ଗୁରୁ ଶିଷ୍ୟକୁ ଉପଦେଶ ଦେବେ ।'' ନାନାସାହେବ ଆଶା କରୁଥିଲେ ଶ୍ଳୋକର ଅର୍ଥ ଶୁଣି ବାବା ତାଙ୍କୁ ନିଜର ପ୍ରଶଂସା ଜଣାଇବେ, ମାତ୍ର ଚନ୍ଦ୍ରକରଙ୍କୁ ବିସ୍ମିତ କରିଦେଇ ବାବା ଶ୍ଳୋକଟିର ପ୍ରକୃତ ଅର୍ଥ ପଚାରି ବସିଲେ ।

ବାବାଙ୍କର ପ୍ରଥମ ପ୍ରଶ୍ନଟି ଥିଲା 'ପ୍ରଣିପାତ'କୁ କେନ୍ଦ୍ରକରି । ଗୁରୁଙ୍କୁ କେବଳ ସାଷ୍ଟାଙ୍ଗ ପ୍ରଣାମ କରିଦେଲେ ଯଥେଷ୍ଟ ହେବ କି ନାହିଁ ବୋଲି ବାବା ପଚାରିଲେ । ନାନାସାହେବଙ୍କ ଦୃଷ୍ଟିରେ କେବଳ ସାଷ୍ଟାଙ୍ଗ ନମସ୍କାର କରିବା କଥା ଶ୍ଳୋକଟିରେ ପ୍ରକାଶ ପାଉଥିଲା । ମାତ୍ର ବାବା ତା'ର ତାତ୍ପର୍ଯ୍ୟ ବୁଝାଇ କହିଲେ ଯେ 'ପ୍ରଣିପାତ'ର ପ୍ରକୃତ ତାତ୍ପର୍ଯ୍ୟ ହେଉଛି 'ଆତ୍ମନିବେଦନ' । ଶିଷ୍ୟ ସର୍ବତୋଭାବେ ଗୁରୁଙ୍କ ପଦରେ ଶରଣାପନ୍ନ ନ ହେବା ପର୍ଯ୍ୟନ୍ତ ଗୁରୁକରୁଣା ଲାଭ କରିପାରେ ନାହିଁ । ନିଜର ନିଜତ୍ୱ ଓ ଅହମିକାକୁ ତ୍ୟାଗ କରି ଶିଷ୍ୟ ଗୁରୁଙ୍କ ପଦରେ ଶରଣାଗତ ହେବାପରେ ସେ ଗୁରୁଙ୍କଠାରୁ ପ୍ରକୃତ ଜ୍ଞାନଲାଭ ପାଇଁ ଉପଯୁକ୍ତ ହୁଏ । ଏହା ନାନାସାହେବ ମନରୁ ଏକ ବିରାଟ ଭ୍ରମ ଦୂର କଲା ।

ବାବାଙ୍କର ଦ୍ୱିତୀୟ ପ୍ରଶ୍ନଟି 'ପରିପ୍ରଶ୍ନ' ଉପରେ କେନ୍ଦ୍ରିତ ଥିଲା । ଏହାର ଉତ୍ତରରେ ନାନାସାହେବ ଜଣାଇଥିଲେ ଯେ ଶିଷ୍ୟ ପ୍ରଶ୍ନ ପଚାରି ଗୁରୁଙ୍କଠାରୁ ଉତ୍ତର ପାଇବେ । ମାତ୍ର ନାନାସାହେବଙ୍କୁ ପୁଣି ବିସ୍ମୟରେ ପକାଇ ବାବା କହିଲେ ଯେ କେବଳ 'ପ୍ରଶ୍ନ' ପରିବର୍ତ୍ତେ 'ପରିପ୍ରଶ୍ନ' ଶବ୍ଦର ପ୍ରୟୋଗ ଏକ ବିଶିଷ୍ଟ ଅର୍ଥର ସୂଚକ । ତା' ନ ହୋଇଥିଲେ ଜ୍ଞାନୀଶିରୋମଣି ବ୍ୟାସଦେବ 'ପ୍ରଶ୍ନ' ଶବ୍ଦ ପୂର୍ବରୁ ଉପସର୍ଗ 'ପରି' ଯୋଗକରି ନଥାଆନ୍ତେ । ନାନାସାହେବଙ୍କୁ ନିରୁତ୍ତର ଦେଖି ବାବା ଜଣାଇଲେ ଯେ ଶିଷ୍ୟଙ୍କ ଜିଜ୍ଞାସା ସଦ୍‌ଉଦ୍ଦେଶ୍ୟପୂର୍ଣ୍ଣ ହେବା ପ୍ରୟୋଜନ, ନିଜର ବଡ଼ିମା ଦେଖାଇବାକୁ, ଗୁରୁଙ୍କ ଜ୍ଞାନ ପରୀକ୍ଷା କରିବା ଏବଂ କେବଳ ପଚାରିବା ଉଦ୍ଦେଶ୍ୟରେ ପଚାରିବା ଭଳି ଅଭ୍ୟାସ ପ୍ରକୃତ ଜିଜ୍ଞାସାର ପରିଚାୟକ ନୁହେଁ । ସୁତରାଂ 'ପରିପ୍ରଶ୍ନେନ' ଶବ୍ଦର ମୂଳ ଅର୍ଥ ହେଉଛି ଜ୍ଞାନଲାଭର ମହତ୍ ଲକ୍ଷ୍ୟନେଇ ଗୁରୁଙ୍କୁ ପ୍ରଶ୍ନ ପଚାରିବା ଉପଯୁକ୍ତ ଶିକ୍ଷାର୍ଥୀର ଲକ୍ଷଣ ।

ନିଜକୁ ପଣ୍ଡିତ ଓ ବାବାଙ୍କୁ ସଂସ୍କୃତଭାଷା ଅନଭିଜ୍ଞ ରୂପେ ବିଚାର କରିବା ନାନାସାହେବଙ୍କ ଅମହିକାକୁ ଚୂର୍ଣ୍ଣବିଚୂର୍ଣ୍ଣ କରିବାକୁ ପରମକାରୁଣିକ ବାବା ପୁଣି ପ୍ରଶ୍ନ ଉତ୍ଥାପନ କରିଛନ୍ତି ସେବା ବିଷୟରେ । ନାନାସାହେବ କହିଥିଲେ ଯେ ସେବା କହିଲେ ସାଧାରଣ ଭାବେ ଯାହା ବୁଝାଯାଏ, ସେ କେବଳ ତାହାହିଁ ବୁଝନ୍ତି, ତା'ର ଊର୍ଦ୍ଧ୍ୱକୁ ଯାଇ ବିଶେଷ କିଛି ବୁଝିବାର ଅଛି ବୋଲି ସେ ଭାବନ୍ତି ନାହିଁ । ମାତ୍ର ବାବା କହିଲେ "ଇଚ୍ଛା ହେଲେ ସେବା କରିବି ନଚେତ୍ ନାହିଁ" – ଏହା ଭାବି ସେବା କଲେ ତାହା ପ୍ରକୃତ ସେବା ହେବ ନାହିଁ । ବ୍ୟକ୍ତି ଉପଲବ୍ଧି କରିବା ଉଚିତ ଯେ ସେ ତା'ର ଶରୀରର ମାଲିକ ନୁହେଁ । ତା'ର ଶରୀର ମଧ୍ୟ ଗୁରୁଙ୍କର, ଏହା ଉପଲବ୍ଧି କରି ଗୁରୁଙ୍କର ସେବା ନିମିତ୍ତ ନିଜ ଶରୀରକୁ ପ୍ରସ୍ତୁତ ରଖିଲେ ତାହା ସେବା ପଦବାଚ୍ୟ ହେବ ।

ପ୍ରଥମ ପଦରେ ବ୍ୟବହୃତ ଶବ୍ଦମାନଙ୍କ ପ୍ରକୃତ ତାତ୍ପର୍ଯ୍ୟ ସୂଚାଇ ସାରିଲାପରେ ବାବା ଗୂଢ଼ ପ୍ରଶ୍ନଟିଏ ପଚାରିଲେ । ଦ୍ୱିତୀୟ ପଦରେ ବ୍ୟବହୃତ ହୋଇଥିବା 'ଜ୍ଞାନ' ପରିବର୍ତ୍ତେ 'ଅଜ୍ଞାନ' ଦ୍ୱାରା ଅଧିକ ଅର୍ଥ ପ୍ରକଟିତ ହେବା ସମ୍ଭବ କି ବୋଲି ପଚାରିଲେ । ଏହା ନାନାସାହେବଙ୍କ ବୁଦ୍ଧିମତ୍ତା ଉପରେ ଏକ କଠୋର ଆଘାତ ସୃଷ୍ଟି କଲା । ଜ୍ଞାନ ପରିବର୍ତ୍ତେ ଅଜ୍ଞାନ ସହିତ ଗୁରୁ କିପରି ସଂପର୍କିତ ବୋଲି ନାନାସାହେବ ଦ୍ୱନ୍ଦ୍ୱରେ ପଡ଼ିଲେ, ମାତ୍ର ନାନାସାହେବଙ୍କୁ ଆଘାତ ଦେବା ବାବାଙ୍କର ଉଦ୍ଦେଶ୍ୟ ନଥିଲା । ତାଙ୍କର ଅହମିକାଗ୍ରସ୍ତ ମନରୁ କଳୁଷ ଦୂରକରି ବିମଳତା ସୃଷ୍ଟି କରିବା ଲକ୍ଷ୍ୟରେ ବାବା ଏପରି ପ୍ରଶ୍ନସବୁ ପଚାରୁଥିଲେ ।

ବାବା ଶ୍ଳୋକଟିର ମର୍ମାର୍ଥ ବୁଝାଇବାକୁ ଯାଇ କହିଲେ ଯେ ଜ୍ଞାନଶବ୍ଦଟି ଅପେକ୍ଷା ଅଜ୍ଞାନ ଶବ୍ଦଟି ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ । ସେ ପୁଣି କହିଲେ ଯେ ଗୁରୁ ମୁଖ୍ୟତଃ ଅଜ୍ଞାନ ବିଷୟରେ ହିଁ ଶିକ୍ଷା ଦିଅନ୍ତି । ଜ୍ଞାନର ଉପଲବ୍ଧି ବା ଜ୍ଞାନର ଉପଦେଶକୁ ଅଜ୍ଞାନ ଆବୃତ୍ତ କରି ରଖିଥାଏ । ଅନ୍ଧାର ତିରୋହିତ ନ ହେଲା ପର୍ଯ୍ୟନ୍ତ ଆଲୋକର ସନ୍ଧାନ ନ ମିଳିଲା ପରି ଅଜ୍ଞାନ ଦୂରୀଭୂତ ନ ହେଲେ ଜ୍ଞାନର ବିକାଶ ଘଟେ ନାହିଁ । ସୁତରାଂ ସଦ୍‌ଗୁରୁ ପ୍ରଥମେ ଶିକ୍ଷା ଦିଅନ୍ତି ଅଜ୍ଞାନ ସମ୍ପର୍କରେ ।

ବାବା ପୁଣି କହିଲେ ଯେ ମନୁଷ୍ୟ ମନରେ ଦ୍ୱୈତଭାବ ତାକୁ ଅଜ୍ଞାନ ମଧ୍ୟରେ ଅନ୍ଧକାର ମଧ୍ୟରେ ରଖିଥାଏ । ପ୍ରତି ମନୁଷ୍ୟ ଦିବ୍ୟାତ୍ମା ସ୍ୱରୂପ ହେଲେ ମଧ୍ୟ ଏପରି ଚେତନା ସହଜରେ ଆସେ ନାହିଁ । ସେ ହେଉଛି ଜୀବାତ୍ମା ଏବଂ ଈଶ୍ୱର ହେଉଛି ପରମାତ୍ମା – ଏହି ଦ୍ୱୈତଭାବ ଥିବା ପର୍ଯ୍ୟନ୍ତ ଜ୍ଞାନର ପରିପୁଷ୍ଟି ଘଟେ ନାହିଁ । ଏହି ଦ୍ୱୈତଭାବ ଅଜ୍ଞାନର ପ୍ରତୀକ । ସୁତରାଂ ଏହି ଦ୍ୱୈତଭାବକୁ ନାଶକରି ସଦ୍‌ଗୁରୁ ଶିଷ୍ୟର ମନପ୍ରାଣରେ ଅଦ୍ୱୈତ ଭାବର ବୀଜବପନ କରି ତାକୁ ପୁଷ୍ପିତ ଫଳିତ କରନ୍ତି । ଶିଷ୍ୟ

ଗୁରୁଙ୍କ ସହିତ ଏକାତ୍ମ ଅନୁଭବ କରେ ଏବଂ ତାଙ୍କ ମାଧ୍ୟମରେ ଈଶ୍ୱରଙ୍କ ସହିତ ଏକତ୍ୱ ଉପଲବ୍ଧି କରେ । ଏ ଦୃଷ୍ଟିରୁ ଜ୍ଞାନର ଉପଦେଶ କହିଲେ ଅଜ୍ଞାନ ଧ୍ୱଂସକାରୀ ଉଦ୍ୟମ ବ୍ୟତୀତ ଅନ୍ୟ କିଛି ବୁଝାଯାଏ ନାହିଁ । 'ଅଜ୍ଞାନ' ଶବ୍ଦର ତାତ୍ପର୍ଯ୍ୟ ପ୍ରାଞ୍ଜଳଭାବରେ ନାନା ସାହେବ ଚନ୍ଦ୍ରକର୍ ବୁଝିପାରିଲେ । ତାଙ୍କର ଅହଂକେନ୍ଦ୍ରୀ ମନରେ ନିରହଙ୍କାର ଭାବ ଫୁଟି ଉଠିଲା ଏବଂ ବାବାଙ୍କ ପ୍ରତି ଭକ୍ତିଭାବ ଅଧିକ ଗଭୀର ହେଲା ।

ପରିଶେଷରେ ବାବା ବୁଝାଇଦେଲେ ଯେ ଶ୍ରୀମଦ୍ ଭଗବଦ୍ ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ସଦ୍‌ଗୁରୁ ଅନ୍ୱେଷଣ କରିବା ଏବଂ ସେଥିପାଇଁ ନିଜର ମାନସିକ ପ୍ରସ୍ତୁତି ପ୍ରତି ଧ୍ୟାନଶୀଳ ହେବା ଉପଦେଶ ଦେଇ ଏକ ବିଶିଷ୍ଟ ତତ୍ତ୍ୱର ସୂଚନା ଦେଇଛନ୍ତି । ଶ୍ରୀକୃଷ୍ଣ ସ୍ୱୟଂ ଜ୍ଞାନର ଆକର ହେଲେ ମଧ୍ୟ ସେ ଅର୍ଜୁନଙ୍କୁ ଜ୍ଞାନୀ ଓ ସଦ୍‌ଗୁରୁ ପାଖରେ ଆତ୍ମନିବେଦନ କରିବା ପାଇଁ ପରାମର୍ଶ ଦେଇଛନ୍ତି – ସେ କଥା ମଧ୍ୟ ବାବା ତାଙ୍କ ବ୍ୟାଖ୍ୟାନରେ ଦର୍ଶାଇଥିଲେ ।

ବାବାଙ୍କ ବିଶ୍ଳେଷଣ ଅନୁଯାୟୀ ଜ୍ଞାନୀ ଓ ଭଲ ଭକ୍ତ ଉଭୟେ ବାସୁଦେବ ସ୍ୱରୂପ । ଶିକ୍ଷାର୍ଥୀ ପକ୍ଷରେ ଗୁରୁ ବାସୁଦେବ ସ୍ୱରୂପ । ସୁତରାଂ ଭଗବାନ ଓ ଗୁରୁଙ୍କ ମଧ୍ୟରେ ଅଭେଦତ୍ୱ ଚିନ୍ତାକରି ଶିକ୍ଷାର୍ଥୀ ଗୁରୁର ଦ୍ୱାରସ୍ଥ ହେବା ବିଧେୟ । ଗୁରୁ ମଧ୍ୟ ଶିଷ୍ୟଙ୍କୁ ବାସୁଦେବ ଭାବରେ ଗ୍ରହଣ କରନ୍ତି । ଏହି ଅଭେଦତ୍ୱ ଅଜ୍ଞାନ ନଷ୍ଟକରି ଜ୍ଞାନର ଯୋଗସୂତ୍ର ସ୍ଥାପନ ଓ ଦୃଢ଼ୀଭୂତ କରେ ।

ମୋଟ ଉପରେ ଗୀତାର ଗୋଟିଏ ମାତ୍ର ଶ୍ଳୋକକୁ ଭିତ୍ତିକରି ଶ୍ରୀ ଶିରିଡ଼ି ସାଇବାବା ନାନାସାହେବ ଚନ୍ଦ୍ରକର୍‌ଙ୍କ ମନରେ ବସା ବାନ୍ଧିଥିବା ଅନେକଗୁଡ଼ିଏ ସଂଶୟ ଦୂର କରିଥିଲେ । ଭକ୍ତପ୍ରାଣ ବାବା ଚନ୍ଦ୍ରକରଙ୍କ ଆଧ୍ୟାତ୍ମିକ ସାଧନାକୁ ଆଗେଇ ନେଇଥିଲେ । ଗୁରୁ ଶିଷ୍ୟର ସଂପର୍କର ତାତ୍ପର୍ଯ୍ୟପୂର୍ଣ୍ଣ ଦିଗଟି ସୂଚାଇଦେଇ ଆତ୍ମନିବେଦନର ଗୁରୁତ୍ୱ ଦର୍ଶାଇଲେ । ଜ୍ଞାନଲାଭ ପାଇଁ ଅଜ୍ଞାନର ଦୂରୀକରଣ, ଅଦ୍ୱୈତ ଭାବର ବିକାଶ ଲାଗ ଦ୍ୱୈତଭାବର ବିଲୟ ଏବଂ ଏକତ୍ୱଭାବର ପ୍ରତିଷ୍ଠା ପାଇଁ ଗୁରୁ ଶିଷ୍ୟ ମଧ୍ୟରେ ରହିଥିବା ଭେଦରେ ଅବସାନ କିପରି ପ୍ରକୃତ ଜ୍ଞାନର ସୂଚକ – ତାହାର ଏକ ପ୍ରାଞ୍ଜଳ ବ୍ୟାଖ୍ୟାନ ଦେଲେ । ବାବା ନିଜେ ନିର୍ଗୁଣର ପ୍ରତୀକ ହେଲେ ମଧ୍ୟ ଅନୁଗତର ମଙ୍ଗଳ ପାଇଁ ସେ ସାକାର ରୂପ ନେଇ ଭକ୍ତର ସବୁ ଅନ୍ତର୍ଦ୍ୱନ୍ଦ୍ୱ ଦୂର କରିଥାନ୍ତି । ନାନା ସାହେବଙ୍କ ଏହି ଘଟଣା ବ୍ୟତୀତ ବାବାଙ୍କର ଏପରି ଲୀଳା ଅନ୍ୟତ୍ର ମଧ୍ୟ ପ୍ରଚିତ ହୋଇଛି ।



# ବିଶ୍ୱଗୁରୁ ଶ୍ରୀ ଶିରିଡ଼ି ସାଇବାବା

ସାଧାରଣ ଭାବରେ ଶିକ୍ଷକ ଶିକ୍ଷା ଦିଅନ୍ତି । ଜଣେ ଉତ୍ତମ ଶିକ୍ଷକ ଭଲରୂପେ ବୁଝାଇ ପାରନ୍ତି । ଆଦର୍ଶ ଶିକ୍ଷକ ଛାତ୍ରଛାତ୍ରୀମାନଙ୍କୁ ପ୍ରେରଣା ଦିଅନ୍ତି । ମାତ୍ର ବିଶ୍ୱଗୁରୁ ମନ ଓ ହୃଦୟର ରୂପାନ୍ତର ଆଣନ୍ତି ।

ଶ୍ରୀ ଶିରିଡ଼ି ସାଇ ବାବା ନିଜର ଅବତାର ଗ୍ରହଣ ସମୟରେ ବିଶ୍ୱଗୁରୁ ରୂପେ ମାନବ ହୃଦୟର ସଂସ୍କାର ପାଇଁ ସଂକଳ୍ପ ନେଇଥିଲେ । ତାଙ୍କର ଶିକ୍ଷା, ତାଙ୍କର ଶିକ୍ଷା ପ୍ରଣାଳୀ ଓ ସର୍ବୋପରି ତାଙ୍କର ଆଶ୍ରିତମାନଙ୍କ ପାଇଁ ତାଙ୍କର ଅବାରିତ କରୁଣା ଦୀପ୍ତିମନ୍ତ ଭାବରେ ପ୍ରକଟିତ ହୋଇଥିଲା । ସାଂସାରିକ ଜୀବନର ମହାଭାରତ ଯୁଦ୍ଧରେ ପାପତାପକ୍ଲିଷ୍ଟ ବିଷାଦଗ୍ରସ୍ତ ପାର୍ଥିବ ମନୁଷ୍ୟକୁ ପାର୍ଥସଖା ସାଇକୃଷ୍ଣ ରୂପରେ ସେ ଦିଗ୍‌ଦର୍ଶନ ଦେଇ ଯାଇଛନ୍ତି । ସେଇ ସାଇ ଚେତନାକୁ ଜୀବନର ଅଙ୍ଗୀଭୂତ କରିପାରିଲେ ମାନବ ସମାଜର ଯେ ଆଧ୍ୟାତ୍ମିକ ରୂପାନ୍ତର ସମ୍ଭବ ହେବ – ଏଥିରେ ସନ୍ଦେହ ନାହିଁ ।

ଶିଷ୍ୟର ଦୁର୍ବଳତା, ଅକ୍ଷମତା ଓ ପରିସୀମତ୍ୱ ଗୁରୁଙ୍କ ନିକଟରେ ଅବିଦିତ ନ ଥାଏ । ଆଧ୍ୟାତ୍ମିକ ଜ୍ଞାନକୁ ଗ୍ରହଣ କରିବା ପାଇଁ ଅନ୍ୟ ଯୁଗମାନଙ୍କରେ ମନୁଷ୍ୟର ବିସ୍ତୃତ ସାମର୍ଥ୍ୟ ଥିଲା । କିନ୍ତୁ ଏ ଯୁଗରେ ସେ ସାମର୍ଥ୍ୟ ସଂକୁଚିତ ହୋଇଛି । ସୁତରାଂ ମନୁଷ୍ୟ ଗ୍ରହଣ କରିପାରିଲା ଭଳି ସରଳ ଓ ଭାବପୂର୍ଣ୍ଣ ଭାଷାରେ ଏବଂ ଗଳ୍ପ ଓ ଉଦାହରଣ ମାଧ୍ୟମରେ ବାବା ଜଟିଳ ତତ୍ତ୍ୱସବୁକୁ ବୁଝାଇଛନ୍ତି । ବାବାଙ୍କ ଶିକ୍ଷା ପ୍ରଣାଳୀରେ ଜଟିଳ ବୈଦିକ ଜ୍ଞାନ ସରଳ ଓ ପ୍ରବହମାନ ଧାରାର ରୂପ ନେଇ ଲୋକଙ୍କ ରକ୍ତରେ ମିଶିଗଲା ପରି ମନେ ହୋଇଛି । ଏ ଯୁଗର ଅନ୍ୟତମ ବିଶ୍ୱଗୁରୁ ଶ୍ରୀ ରାମକୃଷ୍ଣ ପରମହଂସଙ୍କ ପରି ଯୁଗୋପଯୋଗୀ ଭାଷାରେ ସେ ବୈଦିକ ସତ୍ୟକୁ ଅନ୍ୟ ହୃଦୟରେ ରୋପଣ କରିଛନ୍ତି ।

ବାବାଙ୍କର ଅନୁଗତ ବ୍ୟକ୍ତିମାନଙ୍କୁ ସାଧନା ପଥରେ ଅଗ୍ରସର କରାଇବା ପାଇଁ ତାଙ୍କର ପନ୍ଥା ଥିଲା ଅନନ୍ୟ । ତାଙ୍କର ପରମ ଅନୁଗତ ମାଧବରାଓ ଦେଶପାଣ୍ଡେ (ଶ୍ୟାମ)ଙ୍କୁ ସ୍ୱାଧ୍ୟାୟରେ ନିୟୋଜିତ କରିବା ପାଇଁ ସେ ଏକ ପରିକଳ୍ପନା କଲେ ।

ମସ୍‌ଜିଦ୍‌କୁ ଆସିଥିବା ରାମଦାସୀ ନାମଙ୍କ ଜଣେ ଭକ୍ତ ପ୍ରତ୍ୟହ 'ବିଷ୍ଣୁ ସହସ୍ରନାମ' ପୁସ୍ତକ ପାଠ କରୁଥିଲେ । ବିଷ୍ଣୁ ସହସ୍ରନାମର ଆଧ୍ୟାତ୍ମିକ ଗୁରୁତ୍ୱ ଖୁବ୍ ବେଶୀ । କିଛି ଜିନିଷ କିଣିବାର ନିର୍ଦ୍ଦେଶ ଦେଇ ବାବା ରାମଦାସୀଙ୍କୁ ବଜାରକୁ ପଠାଇଦେଲେ । ବାବା ଶ୍ୟାମଙ୍କୁ କହିଲେ ଯେ ଅତୀତରେ ଥରେ ତାଙ୍କ ଛାତିରେ ଘୋର ଯନ୍ତ୍ରଣା ହୋଇଥିଲା, କିନ୍ତୁ ସେ ଛାତି ଉପରେ 'ବିଷ୍ଣୁ ସହସ୍ରନାମ' ପୁସ୍ତକଟି ରଖିଦେବା ପରେ ଯନ୍ତ୍ରଣାର ଉପଶମ ଘଟିଲା । କହିବା ବାହୁଲ୍ୟ ଯେ ବାବାଙ୍କର ଏପରି ଗଳ୍ପଟିର ପ୍ରକୃତ ଉଦ୍ଦେଶ୍ୟ ଥିଲା 'ବିଷ୍ଣୁ ସହସ୍ରନାମ'ର ମହତ୍ତ୍ୱ ସୂଚାଇବା ।

ଶ୍ୟାମ ବାବାଙ୍କଠାରୁ ପୁସ୍ତକଟି ଗ୍ରହଣ କରି ନିୟମିତ ଅଧ୍ୟୟନ କଲେ । ପରବର୍ତ୍ତୀ ସମୟରେ ଶ୍ୟାମ ଏହାର ପଠନ ଓ ଚିନ୍ତନରେ ଏତେ ନିମଜ୍ଜିତ ହୋଇ ପଡ଼ିଲେ ଯେ ତାଙ୍କର ଆଧ୍ୟାତ୍ମିକ ଅର୍ନ୍ତଦୃଷ୍ଟି ଗଭୀରରୁ ଗଭୀରତର ହେବାକୁ ଲାଗିଲା । ଏପରିକି ଶ୍ୟାମଙ୍କ ଭଳି ଜଣେ ଗ୍ରାମ୍ୟ ଅଶିକ୍ଷିତ ବ୍ୟକ୍ତି ନାଗପୁରର ପ୍ରଖ୍ୟାତ କୋଟିପତି ଶ୍ରୀ ବୁଟି ସାହେବଙ୍କ ଉଚ୍ଚଶିକ୍ଷିତ ଜାମାତାଙ୍କୁ ବିଷ୍ଣୁ ସହସ୍ରନାମର ତାତ୍ପର୍ଯ୍ୟ ବୁଝାଇବାରେ ସଫଳ ହୋଇଥିଲେ । ଗୁରୁଙ୍କ କରୁଣା ବ୍ୟତୀତ ଏହା ଅନ୍ୟଥା ସମ୍ଭବ ନୁହେଁ । ବିଶ୍ୱଗୁରୁଙ୍କ କରୁଣାର ସ୍ପର୍ଶରେ ସାଧାରଣ ମନୁଷ୍ୟ ଦିବ୍ୟତ୍ୱ ଓ ଅସାଧାରଣତ୍ୱର ସନ୍ଧାନ ପାଏ ।

ସେହିପରି ଆଉ ଗୋଟିଏ ଘଟଣା ହେଉଛି ଲକ୍ଷ୍ମୀବାଈଙ୍କୁ କେନ୍ଦ୍ରକରି । ଥରେ ବାବା ଆଶ୍ରିତା ଲକ୍ଷ୍ମୀବାଈ ଆଗରେ ପ୍ରକାଶ କଲେ ଯେ ସେ ଖୁବ୍ କ୍ଷୁଧାର୍ତ୍ତ । ଲକ୍ଷ୍ମୀବାଈ ଖୁବ୍ ଶୀଘ୍ର ଯାଇ ସଯତ୍ନରେ ରୁଟି ଆଣିଲେ । ଲକ୍ଷ୍ମୀବାଈ ରୁଟି ଆଣିବା ପରେ ବାବା ନିର୍ଦ୍ଦେଶ ଦେଲେ ରୁଟିକୁ ଖଣ୍ଡ ଖଣ୍ଡ କରି ନିକଟରେ ଥିବା ଗୋଟିଏ କୁକୁରକୁ ଦେଇଦେବାପାଇଁ । ବାବାଙ୍କର ଏପରି ବ୍ୟବହାର ଭକ୍ତଙ୍କୁ ବିସ୍ମୟରେ ପକାଇଲା । ସେ ବାବାଙ୍କୁ କାରଣ ଜିଜ୍ଞାସା କଲେ । ବାବା ଉତ୍ତର ଦେଲେ ଯେ କୁକୁର ଖାଇବା ଯାହା ସେ ଖାଇବା ତାହା ।

ଅନ୍ୟ ଗୋଟିଏ ଥର ବାବାଙ୍କର ଜଣେ ଆଶ୍ରିତା ଶ୍ରୀମତୀ ତାର୍‌ଖଣ୍ଡ ବାବାଙ୍କୁ ପ୍ରଣତି ଜଣାଇବା ପରେ ବାହା କହିଲେ ଯେ ଶ୍ରୀମତୀ ତାରଖଣ୍ଡ ଆଜି ତାଙ୍କୁ ଭଲରୂପେ ଖୁଆଇଛନ୍ତି ଏବଂ ପ୍ରତିଦିନ ସେ ଏପରି କଲେ ଭଲ ହେବ । ଏପରି ମନ୍ତବ୍ୟରେ ଶ୍ରୀମତୀ ତାରଖଣ୍ଡ ବିସ୍ମୟ ପ୍ରକାଶ କଲେ । ପୂର୍ବରୁ ସେ ଦିନ ବାବାଙ୍କ ସହିତ ତାଙ୍କର ସାକ୍ଷାତ ହୋଇ ନଥିଲା । ସୁତରାଂ ବାବାଙ୍କୁ ଖୁଆଇବା କଥା ଶୁଣି ସେ ବିସ୍ମିତ ହେଲେ । ମାତ୍ର ବାବା ଉତ୍ତର ଦେଲେ ସେ ଯେ ଯତ୍ନର ସହିତ

କୁକୁରଟିକୁ ରୁଟି ଖାଇବାକୁ ଦେଇଛନ୍ତି, ଏହାର ମାଧ୍ୟମରେ ବାବାଙ୍କୁ ଖାଦ୍ୟ ଓ ପରିତୃପ୍ତି ମିଳିଛି ।

ଭଗବଦ୍ ସତ୍ତା ସର୍ବତ୍ର ପରିବ୍ୟାପ୍ତ । ସବୁ ଜୀବ ମଧ୍ୟରେ ବ୍ରହ୍ମ ବିଦ୍ୟମାନ । ଉପନିଷଦର ଏହି ବୈଦିକ ସତ୍ୟକୁ ବାବା କିପରି ଭାବରେ ଲକ୍ଷ୍ମୀବାଈ ଓ ଶ୍ରୀମତୀ ତାର୍‌ଖଣ୍ଡଙ୍କୁ ଦର୍ଶାଇଥିଲେ, ତାହା ଲକ୍ଷ୍ୟ କରିବାର କଥା । ଭଗବାନ୍‌ଙ୍କର ସର୍ବବ୍ୟାପକତ୍ୱକୁ ପ୍ରକାଶ କରିବା ପାଇଁ ବହୁ ଶାସ୍ତ୍ର ଲେଖା ଯାଇଛି । ଜ୍ଞାନୀମାନେ ବହୁ ଟୀକା ଟିପ୍ପଣୀ ପ୍ରସ୍ତୁତ କରିଛନ୍ତି । ପ୍ରବଚକମାନେ ଦୀର୍ଘସମୟ ଧରି ବକ୍ତବ୍ୟ ପ୍ରଦାନ କରିଛନ୍ତି । ଅଥଚ ବିଶ୍ୱଗୁରୁ ଶ୍ରୀ ଶିରିଡ଼ି ସାଇବାବା ଦୈନନ୍ଦିନ ଜୀବନ ଉପରେ ପ୍ରତିଷ୍ଠିତ ଏକ ସାଧାରଣ ଉଦାହରଣ ମାଧ୍ୟମରେ ବ୍ରହ୍ମଙ୍କର ପରିବ୍ୟାପ୍ତିକୁ ବୁଝାଇ ଦେଲେ ।

ଏହି ସତ୍ୟର ସୁନ୍ଦର ରୂପାୟନ ହୋଇଛି ଈଶୋପନିଷଦର ପ୍ରଥମ ଶ୍ଳୋକରେ । ସାଇଲୀଳର ମୁଖ୍ୟ ପ୍ରବକ୍ତା ଦାସଗୁଣ୍ ମହାରାଜ ଏହି ଉପନିଷଦକୁ କିପରି ଠିକ୍ ଭାବରେ ଅନୁବାଦ କରିବେ, ସେ ସଂପର୍କରେ ସନ୍ଦେହରେ ପଡ଼ିଥିବା ବେଳେ ବାବା ତାଙ୍କର ମଧ୍ୟ ସହାୟତା କରିଥିଲେ । ଦାସଗୁଣ୍ ମହାରାଜ ଅନୁବାଦ କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ବମ୍ବେରେ କାକାସାହେବ ଦୀକ୍ଷିତଙ୍କ ଘରର ଚାକରାଣୀ ଉପନିଷଦର ତାତ୍ପର୍ଯ୍ୟ ବୁଝାଇ ଦେବ ବୋଲି ବାବା ଇଙ୍ଗିତ ଦେଲେ । ଚାକରାଣୀ କିପରି ଉପନିଷଦର ତାତ୍ପର୍ଯ୍ୟ ବୁଝାଇବ, ଏହା ସମସ୍ତଙ୍କୁ ସନ୍ଦେହରେ ପକାଇଲା । ମାତ୍ର ଦାସଗୁଣ ଜାଣିଥିଲେ ଯେ ଦିବ୍ୟଦ୍ରଷ୍ଟା ବାବା ତାଙ୍କୁ ଦିଗ୍‌ଦର୍ଶନ ଦେଉଛନ୍ତି ।

ବାସ୍ତବରେ ତାହାହିଁ ଘଟିଲା । ଦାସଗୁଣ୍ ମହାଶୟ ଶ୍ରୀ କାକାସାହେବ ଦୀକ୍ଷିତଙ୍କ ଘରେ ବିଶ୍ରାମ କରୁଥିବା ବେଳେ ଚାକରାଣୀ ଝିଅଟି ବାସନ ମାଜୁ ମାଜୁ ଖୁସିରେ ଗୀତ ଗାଉଥିଲା । ତା'ର ଗୀତରେ ଆନନ୍ଦ ଓ ପରିତୃପ୍ତି ଭରିଥିଲା । ଦାସଗୁଣଙ୍କ ଅନୁରୋଧ କ୍ରମେ କାକା ସାହେବ ଦୀକ୍ଷିତ ଝିଅଟିକୁ ଗୋଟିଏ ନୂଆ ଲୁଗା ଦେବା ପରେ ଝିଅଟି ନୂଆ ଲୁଗା ପିନ୍ଧି ଆନନ୍ଦରେ ଗୀତ ଗାଇଲା । ପୁଣି ପରଦିନ ନୂଆ ଲୁଗାଟି ଘରେ ରଖିଦେଇ ତା'ର ନିତ୍ୟ ପରିଚିତ ପୁରୁଣା ଲୁଗା ପିନ୍ଧି କାମ କରୁ କରୁ ଗୀତ ଗାଉଥିଲା । ସବୁ ଅବସ୍ଥାରେ ସବୁ ବସ୍ତୁ ମଧ୍ୟରେ ଭଗବାନଙ୍କ ସତ୍ତା ଅନୁଭବ କରି ଆତ୍ମସନ୍ତୋଷ ଲାଭ କରିବା ଯେ ଉପନିଷଦର ମୁଖ୍ୟ ସନ୍ଦେଶ – ଏକଥା ଦାସଗୁଣ୍ ଉପଲବ୍ଧି କଲେ ।

ଏହି ତାତ୍ତ୍ୱିକ ଚିନ୍ତାଧାରା ହିଁ ଈଶୋପନିଷଦର ସାରମର୍ମ । ଶାସ୍ତ୍ର ଅଧ୍ୟୟନ କରି ପଣ୍ଡିତମାନଙ୍କ ସହିତ ବିଚାର ଆଲୋଚନା କରି ଏବଂ ତୀର୍ଥ ପର୍ଯ୍ୟଟନ କରି ଦାସଗୁଣ୍ ଏହି ଅନୁଭବର ଅଧିକାରୀ ହୋଇପାରି ନଥାନ୍ତେ । କିନ୍ତୁ ଈଶୋପନିଷଦ ପରି ମହତ୍ତ୍ୱପୂର୍ଣ୍ଣ ତତ୍ତ୍ୱ ସମ୍ବଳିତ ପୁସ୍ତକର ଅନୁବାଦ ପାଇଁ ଦାସଗୁଣ୍ ଏକାନ୍ତ ଭାବରେ ବାବାଙ୍କ ଉପରେ ନିର୍ଭର କରୁଥିଲେ । ତେଣୁ ପରମ ଦୟାଳୁ ସାଇବାବା ଗୁରୁ ରୂପେ ତାଙ୍କୁ ପ୍ରକୃତ ଉପଲବ୍ଧି ଆଣି ଦେଇଥିଲେ ।

କେବଳ ଜ୍ଞାନ ନୁହେଁ, ବିଶ୍ୱଗୁରୁ ବାବା ଅନୁରୂପ ପଦ୍ଧତିରେ ଆଶ୍ରିତ ହୃଦୟରେ ଭକ୍ତିରସର ସଞ୍ଚାର କରୁଥିଲେ । ରାଧାବାଈ ଦେଶମୁଖ୍ ନାମକ ଜଣେ ମହିଳା ଥରେ ବାବାଙ୍କଠାରୁ ମନ୍ତ୍ର ଗ୍ରହଣ କରି ତାଙ୍କର ଶିଷ୍ୟତ୍ୱ ସ୍ୱୀକାର କରିବାକୁ ଆସିଥିଲେ । ମାତ୍ର ତାଙ୍କ ଇଚ୍ଛା ପୂରଣ ହୋଇ ନଥିଲା । ସେ ଅତିଶୟ ବ୍ୟତିବ୍ୟସ୍ତ ହେବା ପରେ ବାବା ତାଙ୍କୁ ଜଣାଇଥିଲେ ଯେ ବାବାଙ୍କର ଗୁରୁ ବାବାଙ୍କୁ କିଛି ମନ୍ତ୍ର ଦେଇ ନଥିଲେ । ଗୁରୁ କେବଳ ତାଙ୍କଠାରୁ ଶ୍ରଦ୍ଧା ଓ ଧୈର୍ଯ୍ୟ ଆଶା କରୁଥିଲେ । ଭଗବାନଙ୍କ ପ୍ରତି ଗଭୀର ଭାବରେ ଶ୍ରଦ୍ଧା ପ୍ରକାଶ କରିବା ଏବଂ ଜୀବନର ସବୁ ଦୁର୍ଦ୍ଦିନ ସୁଦିନ ମଧ୍ୟରେ ଧୈର୍ଯ୍ୟ ରକ୍ଷା କରିବା ମନୁଷ୍ୟର କର୍ତ୍ତବ୍ୟ । ଏହାହିଁ ଜୀବନର ମୂଳମନ୍ତ୍ର ହେବା ଉଚିତ୍ ।

ଭକ୍ତ ଓ ଭଗବାନ୍‌ଙ୍କ ସଂପର୍କକୁ ଅଧିକ ପ୍ରାଞ୍ଜଳ ଓ ମର୍ମସ୍ପର୍ଶୀ ଭାବେ ପ୍ରକାଶ କରିବାକୁ ଯାଇ ପୁଣି କହିଲେ ଯେ ନଦୀର ଗୋଟିଏ ପାର୍ଶ୍ୱରେ ମା' କଇଁଛ ଥାଇପାରେ ଓ ଅନ୍ୟ ପାର୍ଶ୍ୱରେ ଶିଶୁମାନେ ଥାଇପାରନ୍ତି । କିନ୍ତୁ ଶିଶୁମାନଙ୍କର ଦୃଷ୍ଟି ମା' ଉପରେ ନିବଦ୍ଧ ରହିଥିଲେ ଶିଶୁମାନଙ୍କର ସମସ୍ତ ଚାହିଦା ପରିପୂରିତ ହୋଇଥାଏ । ମା' ମଧ୍ୟ ନିଜର ଦୃଷ୍ଟିରେ ସନ୍ତାନମାନଙ୍କର ସୁରକ୍ଷାର ଦାୟିତ୍ୱ ନେଇଥାଏ । ଆଶ୍ରିତ ଓ ଭଗବାନ୍‌ଙ୍କ ସଂପର୍କ ଏପରି ସୁଦୃଢ଼ । ବାବାଙ୍କର ଏପରି ଉକ୍ତି ମହିଳାଙ୍କୁ ଭକ୍ତି ପଥରେ ଆଗେଇ ନେଇଥିଲା । କର୍ଣ୍ଣମନ୍ତ୍ର ପାଇବାର ମୋହ ଛାଡ଼ି ସେ ଶ୍ରଦ୍ଧା ଓ ସବୁରୀ (ଧୈର୍ଯ୍ୟ)କୁ ଜୀବନର ସମ୍ବଳରୂପେ ବାଛି ନେଇଥିଲେ ।

ନବଧା ଭକ୍ତି ସଂପର୍କରେ ଅବହିତ କରିବା ପାଇଁ ବାବା ଅନନ୍ତ ରାଓ ନାମକ ଜଣେ ବ୍ୟକ୍ତିକୁ ଗୋଟିଏ ଗଳ୍ପ କହିଥିଲେ । ବାବା କହିଲେ ଯେ ଶିରିଡ଼ିକୁ ଆସିଥିବା ଜଣେ ବ୍ୟବସାୟୀ ଥରେ ତାଙ୍କ ଗାଡ଼ି ଟାଣୁଥିବା ଘୋଡ଼ାର ନ'ଟି ଲଣ୍ଡି ନିଜ ଲୁଗାକାନିକୁ ତୋଳି ନେଇଥିଲେ । ଏହା କଲାପରେ ବ୍ୟବସାୟୀ ଜଣଙ୍କର ଅନ୍ତର୍ଦୃଷ୍ଟି ପ୍ରାପ୍ତି ହୋଇଥିଲା । ପ୍ରଥମେ ଅନନ୍ତ ରାଓ ଏହାର ମର୍ମ ବୁଝି ପାରି ନଥିଲେ । ମାତ୍ର

ବାବାଙ୍କର ଜଣେ ଭକ୍ତ ସହିତ ପରାମର୍ଶ କଲାପରେ ସେ ଜାଣିଲେ ଯେ ଘୋଡ଼ାର ନ'ଟି ଲଣ୍ଡି ନବଧା ଭକ୍ତିର ସୂଚକ । ଭଗବାନଙ୍କୁ ଉପଲବ୍ଧି କରିବା ପାଇଁ ଶ୍ରବଣ, କୀର୍ତ୍ତନ, ସ୍ମରଣ, ପଦସେବନ, ଅର୍ଚ୍ଚନ, ନମସ୍କାର, ଦାସ୍ୟ, ସଖ୍ୟ ଓ ଆତ୍ମନିବେଦନ ହେଉଛି ନ'ଟି ଭକ୍ତିର ମାର୍ଗ । ଅନନ୍ତ ରାଓ ଅନୁଭବ କଲେ ଯେ ଭଗବତ୍ ପ୍ରାପ୍ତି ପାଇଁ ବାବା ତାଙ୍କୁ ମାର୍ଗ ଦର୍ଶାଉଛନ୍ତି । ତାଙ୍କ ଜୀବନର ରୂପାନ୍ତର ଘଟିଲା ।

ସେହିପରି ସଂସାରର କ୍ରିୟାକର୍ମ ମଧ୍ୟରେ ଆତଯାତ ହେଉଥିବା ମନୁଷ୍ୟ ପ୍ରତି ସେ କରୁଣାପୂର୍ଣ୍ଣ ନିର୍ଦ୍ଦେଶ ଦେଇଛନ୍ତି । ସକଳ ସ୍ଥାନରେ ସକଳ କର୍ମ ମଧ୍ୟରେ ଭଗବାନଙ୍କ ପାଦପଦ୍ମରେ ଲକ୍ଷ୍ୟ ରଖୁଥିବା ବ୍ୟକ୍ତିର ସୁରକ୍ଷା ପାଇଁ ସେ ସଦାତତ୍ପର ବୋଲି ବାରମ୍ବାର ଉଦ୍‌ଘୋଷଣ କରିଥିଲେ । ତାଙ୍କୁ ଆଶ୍ରୟ କରୁଥିବା ବ୍ୟକ୍ତିର ସମସ୍ତ ଭାର ସେ ବହନ କରନ୍ତି ବୋଲି ଆଶ୍ୱାସନାର ବାଣୀ ଶୁଣାଇଥିଲେ ।

ବିଶ୍ୱଗୁରୁ ରୂପେ ଶ୍ରୀ ଶିରିଡ଼ି ସାଇବାବା ଜ୍ଞାନ, ଶକ୍ତି ଓ କର୍ମର ସମନ୍ୱୟ ବୁଝାଇଛନ୍ତି । ସମଗ୍ର ଜଗତରେ ପରିବ୍ୟାପ୍ତ ସଚ୍ଚିଦାନନ୍ଦ ଯେ ଆମ ହୃଦୟରେ ଅଧିଷ୍ଠିତ, ଏ ଚେତନାକୁ ସେ ଗଭୀର କରିଛନ୍ତି । ଉପଦେଶ, ଉଦାହରଣ, ଘଟଣା-ରଚନା ଓ ଜୀବନ-ଯାପନର ଧାରା ମଧ୍ୟରେ ସେ ମନୁଷ୍ୟ ଜାତିକୁ ଆଧ୍ୟାତ୍ମିକ ବିବର୍ତ୍ତନର ପଥକୁ ନେଇଯାଉଛନ୍ତି । ବିଶ୍ୱଗୁରୁ ରୂପେ ତାଙ୍କର ଶିକ୍ଷାପ୍ରଣାଳୀର ଅନନ୍ୟତା ଆମ ଜୀବନକୁ ଗଭୀର ଭାବେ ସ୍ପର୍ଶ କରିଛି ।



# ସଦ୍‌ଗୁରୁଙ୍କ ଶିକ୍ଷା କୌଶଳ : ଜଟିଳ ତତ୍ତ୍ୱର ମନୋଜ୍ଞ ରୂପ

ସଦ୍‌ଗୁରୁ ସାଧାରଣ ଶିକ୍ଷକର ପର୍ଯ୍ୟାୟଭୁକ୍ତ ନୁହନ୍ତି । ସାଧାରଣତଃ ଶିକ୍ଷକମାନେ ଶିକ୍ଷା ଦିଅନ୍ତି । ଅର୍ଥସବୁ ବୁଝାନ୍ତି ଏବଂ ସ୍ଥଳବିଶେଷରେ ପ୍ରେରଣା ଦିଅନ୍ତି । କିନ୍ତୁ ସଦ୍‌ଗୁରୁ ଏ ସବୁର ଊର୍ଦ୍ଧ୍ୱକୁ ଯାଇ ଶିଷ୍ୟର ଅନ୍ତରାତ୍ମାକୁ ସ୍ପର୍ଶ କରନ୍ତି ଏବଂ ତାକୁ ଦିବ୍ୟତ୍ୱ ସହିତ ସମ୍ମିଳିତ୍ କରାନ୍ତି । କୌଣସି ଧରାବନ୍ଧା ପଦ୍ଧତିରେ ଶିକ୍ଷା ନ ଦେଇ ଗ୍ରହଣ କରୁଥିବା ବ୍ୟକ୍ତିଟି ପାଇଁ ସବୁଠାରୁ ଉପଯୋଗୀ ପ୍ରଣାଳୀରେ ତତ୍ତ୍ୱଶିକ୍ଷା ଦିଅନ୍ତି ।

ସଦ୍‌ଗୁରୁ ଶିରିଡ଼ି ସାଇଙ୍କ ଚମତ୍କାର ଶିକ୍ଷା ପ୍ରଣାଳୀର ବହୁ ଦୃଷ୍ଟାନ୍ତ ରହିଛି । ଏଠାରେ ଗୋଟିଏ ପ୍ରସଙ୍ଗର ଅବତାରଣା କରାଯାଇ ଏ ଅଭିନବ ଶିକ୍ଷା କୌଶଳରେ ସୂଚନା ଦିଆଯାଇପାରେ । ପ୍ରସଙ୍ଗଟି ଶିରିଡ଼ି ସାଇଙ୍କର ଅନୁଗତ ଓ ପରମ ଆଶ୍ରିତ ଦାସଗଣୁଙ୍କ ଈଶୋପନିଷଦକୁ ମରାଠୀ ଭାଷାରେ ଅନୁବାଦ କରିବାର ଘଟଣା ଉପରେ ଆଧାରିତ ।

ସଦ୍‌ଗୁରୁ କିପରି ଉପାୟରେ ଦାସଗୁଣଙ୍କ ଅଭୀଷ୍ଟ ପୂରଣ କଲେ, ତାହା ଭାବିବା ପୂର୍ବରୁ ଏହି ଉପନିଷଦ ସଂପର୍କରେ କିଛି ଜାଣିବା ଆବଶ୍ୟକ ।

ଉପନିଷଦ ଭାରତୀୟ ଜ୍ଞାନ ବୈଭବର ନିର୍ଯ୍ୟାସ ହେଲେ ଈଶୋପନିଷଦ ହେଉଛି ଏ ନିର୍ଯ୍ୟାସର କେନ୍ଦ୍ରବିନ୍ଦୁ । ବେଦର ସାରତତ୍ତ୍ୱ ବହନ କରୁଥିବା ମନ୍ତ୍ରଗୁଡ଼ିକ ଏଥିରେ ସନ୍ନିବିଷ୍ଟ ଥିବାରୁ ଏହାକୁ ମନ୍ତ୍ରୋପନିଷଦ ମଧ୍ୟ କୁହାଯାଏ । ପ୍ରଥମ ମନ୍ତ୍ରଟି ଈଶାବାସ୍ୟମ୍‌କୁ ନେଇ ଆରମ୍ଭ ହୋଇଥିବାରୁ ଏହି ଉପନିଷଦର ଅନ୍ୟ ନାମ 'ଈଶା ବାସ୍ୟ' ଉପନିଷଦ ।

ଈଶାବାସ୍ୟ ଉପନିଷଦର ତାତ୍ପର୍ଯ୍ୟ ଓ ଗୁରୁତ୍ୱ ପ୍ରଥମ ମନ୍ତ୍ରଟିରେ ହିଁ ପ୍ରତିଫଳିତ । ଏହାର ପ୍ରଥମ ଶ୍ଳୋକଟି ହେଉଛି :

ଓଁ ଈଶାବାସ୍ୟମିଦଂ ସର୍ବଂଯତ୍‌କିଞ୍ଚ ଜଗତ୍ୟାଂ ଜଗଦ୍ ।
ତେନ ତ୍ୟକ୍ତେନ ଭୁଞ୍ଜୀଥା ମା ଗୃଧ କସ୍ୟସ୍ୱିଦ୍ ଧନମ୍ ॥

ଏହାର ତାତ୍ପର୍ଯ୍ୟ ହେଉଛି ଜଗତର ସମସ୍ତ ଅନିତ୍ୟ ଛୋଟବଡ଼ ବସ୍ତୁ ମଧ୍ୟରେ ପରମବ୍ରହ୍ମ ପରିବ୍ୟାପ୍ତ । କେବଳ ସେହି ବ୍ରହ୍ମହିଁ ସତ୍ୟ ଓ ଶାଶ୍ୱତ । ଏହି ଭାବ ପୋଷଣ କରି ପ୍ରତ୍ୟେକ ବସ୍ତୁକୁ ବ୍ୟବହାର କରାଯିବା ବିଧେୟ । କେବଳ ଭଗବାନ ହିଁ ପ୍ରତ୍ୟେକ ବସ୍ତୁର ମାଲିକ ହୋଇଥିବାରୁ କୌଣସି ବସ୍ତୁ ପ୍ରତି ଲୋଭାବିଷ୍ଟ ହେବା ସମୀଚୀନ ହେବନାହିଁ ।

ଏଠାରେ ଲକ୍ଷ୍ୟ କରିବାର କଥା ଯେ ଏହି ଶ୍ଳୋକଟି ମାଧ୍ୟମରେ ବୈଦିକ ଜ୍ଞାନର ସାରବତ୍ତା ଦିଆଯାଇଛି । ଈଶ୍ୱରଙ୍କ ସର୍ବବ୍ୟାପକତ୍ୱ ଏବଂ ଶାଶ୍ୱତ ପରିପ୍ରକାଶ ସଂପର୍କରେ ସୂଚନା ଦିଆଯାଇଛି । ଅନେକଙ୍କ ମତରେ କେବଳ ଏହି ମୌଳିକ ଚିନ୍ତାଧାରାର ସଂପ୍ରସାରଣ ହିଁ ଅନ୍ୟତ୍ର କରାଯାଇଛି ।

ଏହିପରି ଏକ ମହତ୍ତ୍ୱପୂର୍ଣ୍ଣ ଉପନିଷଦର ମରାଠୀ ଅନୁବାଦ ପାଇଁ ଦାସଗଣୁ ବ୍ୟାକୁଳ ଥିଲେ । ଅନୁବାଦ ଆରମ୍ଭ କରିବା ପୂର୍ବରୁ ଓ ଉପନିଷଦର ସାରମର୍ମକୁ ଗଭୀର ଭାବେ ଉପଲବ୍ଧି କରିବା ପାଇଁ ସେ ଆଶାୟୀ ଥିଲେ । ମାତ୍ର ତାଙ୍କର ବନ୍ଧୁମାନେ ମତ ଦେଲେ ଯେ କେବଳ ଆତ୍ମ-ଉପଲବ୍ଧି ଲାଭ କରିଥିବା ବ୍ୟକ୍ତିମାନେ ହିଁ ଦାସଗଣୁଙ୍କୁ ସାହାଯ୍ୟ କରିପାରିବେ । ଏପରି ଲୋକମାନେ ଦୁର୍ଲଭ ହୋଇଥିବାରୁ ତତ୍ତ୍ୱ ଉପଲବ୍ଧି କରିବାର ସମ୍ଭାବନା ଖୁବ୍ କ୍ଷୀଣ ଥିଲା । ନିରାଶ ନହୋଇ ଦାସଗଣୁ ସଦ୍‌ଗୁରୁଙ୍କ ଆଶ୍ରୟ ନେଇ ଏହାର ସମାଧାନ ପାଇଁ ବ୍ୟାକୁଳ ହେଲେ ।

ସାଇବାବାଙ୍କ ସହିତ ପରାମର୍ଶ କରିବାର ମନୋଭାବ ନେଇ ଦାସଗଣୁ ମସ୍‌ଜିଦ୍‌କୁ ଆସିଲେ । ଅନ୍ୟ କେତେଜଣ ବ୍ୟକ୍ତି ମଧ୍ୟ ସେଠାରେ ଥିଲେ । ସେ ବିନୀତ ଭାବରେ ତାଙ୍କର ଅଭୀପ୍‌ସା ବାବାଙ୍କ ପାଖରେ ପ୍ରକାଶ କଲେ ।

ପାଖରେ ଥିବା ବ୍ୟକ୍ତିମାନେ ଆଶା କରୁଥିଲେ ଯେ ବାବା ଦାସଗଣୁଙ୍କୁ ଈଶାବାସ୍ୟ ଉପନିଷଦର ସାରମର୍ମ ସେଠାରେ ବୁଝାଇ ଦେବେ । ମାତ୍ର ସମସ୍ତଙ୍କୁ ଚକିତ କରିଦେଇ ବାବା କହିଲେ – "ତୁମର ଚିନ୍ତା କରିବାର କିଛି ନାହିଁ । ତୁମର ଘରକୁ ଫେରିବାର ବାଟରେ ଭିଲେପର୍ଲେଠାରେ କାକାସାହେବ ଦୀକ୍ଷିତଙ୍କ ଚାକରାଣୀ ତୁମକୁ ଭାବାର୍ଥ ବୁଝାଇଦେବ ।" ଜଣେ ସାଧାରଣ ଚାକରାଣୀ କିପରି ତତ୍ତ୍ୱପୂର୍ଣ୍ଣ ଈଶାବାସ୍ୟ ଉପନିଷଦର ସାରମର୍ମ ବୁଝାଇବ, ଏ କଥା କେହି ବିଶ୍ୱାସ କରିପାରିଲେ ନାହିଁ । ମାତ୍ର ଦାସଗଣୁଙ୍କର ଗଭୀର ବିଶ୍ୱାସ ଥିଲା ଯେ ବାବାଙ୍କର ପ୍ରତିଟି ଉକ୍ତି ଅର୍ଥପୂର୍ଣ୍ଣ ଓ ସତ୍ୟଗର୍ଭକ । ନିକଟ ଭବିଷ୍ୟତରେ ତାଙ୍କର ଅଭୀପ୍‌ସା ପରିପୂରିତ ହେବ ଜାଣି ସେ ଆନନ୍ଦିତ ହେଲେ ।

ବାବାଙ୍କର ଅନୁମତି ନେଇ ସେ ଘରକୁ ଫେରିବା ବାଟରେ ବମ୍ବେର ସହରତଳି ଅଞ୍ଚଳ ଭିଲେପର୍ଲେଠାରେ କାକାସାହେବ ଦୀକ୍ଷିତଙ୍କ ଘରେ ରହିଲେ । ପରଦିନ ସକାଳେ ସେ ଗଡ଼ପଡ଼ ହେଉଥିବା ସମୟରେ ବାହାରୁ ବହିଆସୁଥିବା ସୁଲଳିତ କଣ୍ଠରେ ଶୁଣିବାକୁ ପାଇଲେ । ମଧୁର କଣ୍ଠରେ ଗୀତର ଲହରି ଭାସିଆସିଥିଲା । ସେ ବାହାରକୁ ଆସି ଦେଖିଲେ ଯେ କାକାସାହେବ ଦୀକ୍ଷିତଙ୍କ ଘରର ଚାକର ନାମିୟାର ଛୋଟ ଭଉଣୀ ଖୁସିରେ ଗୀତ ଗାଉଛି । ଝିଅଟି ଗୀତ ଗାଇବା ସମୟରେ ବାସନ ମାଜୁଥିଲା । ତା'ର ପରିଧେୟ ଥିଲା ଖୁବ୍ ସାମାନ୍ୟ । ସେ ଖଣ୍ଡିଏ ଛିଣ୍ଡା ଲୁଗା ପିନ୍ଧିଥିଲା । ଅଥଚ ତା' ଆନନ୍ଦର ଅନ୍ତ ନଥିଲା । ସେ ଗାଉଥିବା ଗୀତଟିର କଥାବସ୍ତୁ ଶାଢ଼ିକୁ କେନ୍ଦ୍ରକରି । ଶାଢ଼ିର ସୁନ୍ଦର ଲାଲରଙ୍ଗ, ସେଥିରେ ହୋଇଥିବା ସୁନ୍ଦର କୁଟିକାମ ଏବଂ ଶାଢ଼ିର ସୌନ୍ଦର୍ଯ୍ୟ ବର୍ଣ୍ଣନା କରି ସେ ଗୀତ ଗାଉଥିଲା । ଦାସଗଣୁଙ୍କ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଦାରିଦ୍ର୍ୟ ସତ୍ତ୍ୱେ ଝିଅଟି କିପରି ଗୀତ ଗାଇ ପାରୁଛି, ତାହା ସେ ଚିନ୍ତା କରିପାରିଲେ ନାହିଁ ।

ଝିଅଟିର ଦାରିଦ୍ର୍ୟ ଦେଖି ସେ କାକାସାହେବଙ୍କୁ ଅନୁରୋଧ କଲେ ତା' ପାଇଁ ଗୋଟିଏ ଶାଢ଼ି କିଣିଦେବାକୁ । ତା' ପରଦିନ ତାକୁ ଗୋଟିଏ ନୂଆଶାଢ଼ି ଦିଆଗଲା । ଝିଅଟି ନୂଆଶାଢ଼ିଟି ପାଇ ଆନନ୍ଦରେ କୁରୁଳି ଉଠିଲା । ଆନନ୍ଦରେ ନାଚି ଗୀତ ଗାଇଲା ।

ତା' ପରଦିନ ପୁଣି ଝିଅଟିର ମଧୁର ଗୀତ ଶୁଣିବାକୁ ମିଳିଲା । ଦାସଗଣୁ ବାହାରକୁ ଆସି ଦେଖିଲେ ଯେ ଝିଅଟି ପୂର୍ବପରି ଚିରା ଶାଢ଼ିଟି ପିନ୍ଧିଛି । ବାସନ ମାଜୁ ମାଜୁ ଆନନ୍ଦଭରା ଗୀତଟିଏ ଗାଇ ଚାଲିଛି । ପଚାରି ବୁଝିଲି ଯେ ସେ ତା'ର ନୂଆ ଶାଢ଼ିଟି ଘରେ ସାଇତି ରଖିଦେଇ ଆସିଛି । ଝିଅଟିର ଦାରିଦ୍ର୍ୟ ଯୋଗୁ ଦାସଗଣୁଙ୍କ ମନରେ ଉଦ୍ରେକ ହୋଇଥିବା କରୁଣା ବିସ୍ମୟରେ ପରିଣତ ହେଲା । ତାଙ୍କର ଅନ୍ତର୍ଦୃଷ୍ଟି ଉଜ୍ଜ୍ୱଳ ହୋଇ ଉଠିଲା । ସେ ଅନୁଭବ କଲେ ଯେ ଝିଅଟି ପ୍ରକୃତରେ ତାଙ୍କୁ ପ୍ରକୃତରେ ତାଙ୍କୁ ଈଶାବାସ୍ୟ ଉପନିଷଦର ସାରମର୍ମ ବୁଝାଇ ଦେଇଛି । ବାବାଙ୍କର ଇଙ୍ଗିତ ଦାସଗୁଣ ବୁଝିପାରିଲେ ।

ଦାସଗୁଣ ଅନୁଭବ କଲେ ଯେ ଶାନ୍ତ ଓ ଆନନ୍ଦ ଭାବ ଏକ ମାନସିକ ଅବସ୍ଥା । ଏ ଅବସ୍ଥା ବାହ୍ୟିକ ବସ୍ତୁଦ୍ୱାରା ନିୟନ୍ତ୍ରିତ ନ ହୋଇ ଜୀବନସିଦ୍ଧ ବ୍ୟକ୍ତିମାନଙ୍କ ପାଇଁ ଆଭ୍ୟନ୍ତରୀଣ ଅବସ୍ଥା ଦ୍ୱାରା ପ୍ରଭାବିତ ହୁଏ । କାକା ଦୀକ୍ଷିତଙ୍କ ଚାକରାଣୀର ଆନନ୍ଦ

ଶାଢ଼ିଟି ଉପରେ ପର୍ଯ୍ୟବସିତ ନଥିଲା । ସେ ଚିରାଲୁଗା ପିନ୍ଧି ଯେପରି ଆନନ୍ଦ ଅନୁଭବ କରୁଥିଲା; ନୂଆ ଶାଢ଼ି ପାଇ ମଧ୍ୟ ସେଇ ଆନନ୍ଦ ପ୍ରକାଶ କରୁଥିଲା । ବାସନ ମାଜିଲା ବେଳର ଆନନ୍ଦ ଖେଳିବା ସମୟର ଆନନ୍ଦଠାରୁ କମ୍ ନଥିଲା । ଜଗତରେ ପରିଦୃଶ୍ୟମାନ କ୍ଷୁଦ୍ର ବୃହତ୍ ସମସ୍ତ ବସ୍ତୁ ମଧ୍ୟରେ ପରମାତ୍ମାଙ୍କ ସତ୍ତା ଉପଲବ୍ଧି କରି ମାନସିକ ସମତା ରକ୍ଷା କରିପାରିଲା ଭଳି ସାଧନା ଝିଅଟିର ଥିଲା ।

ଦାସଗଣୁ ଅନୁଭବ କଲେ ସଦ୍‌ଗୁରୁଙ୍କ ଅସୀମ କୃପା ବଳରେ ତାଙ୍କ ଚେତନା ଦୀପ୍ତିବନ୍ତ ହୋଇଛି । ବିଶେଷଜ୍ଞଙ୍କ ପରାମର୍ଶ ନେଇ ଶାସ୍ତ୍ର ପର୍ଯ୍ୟାଲୋଚନା କରି ଏବଂ ପଣ୍ଡିତମଣ୍ଡଳୀର ସହାୟତାରେ ଯାହା ସମ୍ଭବ ହୋଇ ନଥାନ୍ତା ସାଇବାବାଙ୍କ ନିର୍ଦ୍ଦେଶରେ ଈଶୋପନିଷଦର ମୂଳମନ୍ତ୍ର ତାଙ୍କ ପାଖରେ ପହଞ୍ଚିଛି । ସେ ଭକ୍ତି ସହକାରେ ବାବାଙ୍କୁ ପ୍ରଣତି ଜଣାଇଲେ ।

ଜଗତଗୁରୁ ଶିରିଡ଼ି ସାଇବାବା ଏହିପରି ଅନନ୍ୟସାଧାରଣ ଭଙ୍ଗୀରେ ଶିକ୍ଷା ଦେଉଥିଲେ । କେବଳ ଦାସଗଣୁଙ୍କ ପାଇଁ ନୁହେଁ, ଜୀବନ ଯନ୍ତ୍ରଣାରେ ବିଜଡ଼ିତ ପ୍ରତିଟି ମନୁଷ୍ୟର ଚୈତନ୍ୟର ଉଦୟ ପାଇଁ ଏ ଶିକ୍ଷା ଅଭିପ୍ରେତ । ବାବାଙ୍କ ଜୀବନୀ ପଢ଼ିବା ମାଧ୍ୟମରେ ଆମର କେବଳ ତତ୍ତ୍ୱଜ୍ଞାନ ଲାଭ ହୁଏ ନାହିଁ, ଆତ୍ମୋପଲବ୍ଧି ଗଭୀର ଓ ପ୍ରସାରିତ ହୁଏ ।



# କୃପାମୟ ଭଗବାନ

ଈଶ୍ୱର ଅନନ୍ତ । ଈଶ୍ୱରଙ୍କ କୃପା ମଧ୍ୟ ଅନନ୍ତ । ଭଗବତ କୃପା ମୁକ୍ତ ମଳୟ ପରି ଜୀବନର ନୌକାକୁ ସ୍ୱଚ୍ଛନ୍ଦ ଗତି ଦିଏ । ଏହି କୃପା ଜଳ ସଦୃଶ ସନ୍ତାପିତ ଉତ୍ତପ୍ତ ପ୍ରାଣକୁ ଶୀତଳତା ପ୍ରଦାନ କରେ । ଏହି କୃପା ସୂର୍ଯ୍ୟକିରଣ ସଦୃଶ ମନରୁ ସବୁ ସନ୍ଦେହ ପ୍ରଶ୍ନବାଚୀ ଦୂର କରି ଜ୍ଞାନର ଦୀପ୍ତି ଦିଏ । ଭଗବତ କୃପା ପଙ୍ଗୁ ବ୍ୟକ୍ତିକୁ ଦ୍ରୁତ ଗତିର ସାମର୍ଥ୍ୟ, ବାକ୍‌ହୀନ ବ୍ୟକ୍ତିକୁ ଅନର୍ଗଳ ବକ୍ତୃତାର ଦକ୍ଷତା ଏବଂ ନିରକ୍ଷର ବ୍ୟକ୍ତିକୁ ପଣ୍ଡିତର ମର୍ଯ୍ୟାଦା ପ୍ରଦାନ କରେ ।

ପ୍ରଭୁ ସାଇନାଥଙ୍କର ଏହି ଅସୀମ କୃପା ଅସଂଖ୍ୟ ବ୍ୟକ୍ତିଙ୍କ ଜୀବନରେ ପରିବର୍ତ୍ତନ ଆଣିଥିଲା । କୃପାମୟ ସାଇନାଥ ବହୁଲୋକଙ୍କର ଆର୍ତ୍ତି ଶୁଣି ସେମାନଙ୍କୁ ସ୍ୱାଭାବିକ ଜୀବନର ସୁଖ ଦେଇଥିଲେ । ଅନେକ ଅର୍ଥାର୍ଥୀ ଲୋକଙ୍କୁ କୃପାକରି ସେମାନଙ୍କ ବହୁ ଆକାଂକ୍ଷିତ ଚାକିରି ଓ ବ୍ୟବସାୟିକ ସଫଳତା ପାଇଁ କୃପା ପ୍ରଦାନ କରିଥିଲେ । ସାତ୍ତ୍ୱିକ ଓ ଆଧ୍ୟାତ୍ମିକ ପ୍ରଶ୍ନନେଇ ଆସୁଥିବା ବ୍ୟକ୍ତିମାନଙ୍କର ଜିଜ୍ଞାସା ଦୂରକରିବା ପାଇଁ କୃପାମୟ ପରିବେଶର ସୃଷ୍ଟି କରୁଥିଲେ । କହିବା ଅନାବଶ୍ୟକ ଯେ ମୁକ୍ତିକାମୀ ସନ୍ଥମାନେ ମଧ୍ୟ ବାବାଙ୍କ କୃପାପ୍ରାର୍ଥୀ ହୋଇ ତାଙ୍କର ସହାୟତା ପାଉଥିଲେ । ଶ୍ରୀ ସାଇ ସତ୍‌ଚରିତର ପ୍ରତି ପୃଷ୍ଠାରେ କୃପାମୟଙ୍କ ଲୀଳାଖେଳାର ସୁସ୍ପଷ୍ଟ ଚିତ୍ର ରହିଛି ।

ବିଭୁକୃପାର ଏପରି ବହୁଳ ଦୃଷ୍ଟାନ୍ତ ଥିବା ସତ୍ତ୍ୱେ ମନୁଷ୍ୟର ସଂକୁଚିତ ମନ ଭଗବତ କୃପାର ପ୍ରାପ୍ତି ସଂପର୍କରେ ସନ୍ଦେହୀ ହୋଇଉଠେ । ଭଗବାନଙ୍କ କୃପା ବାସ୍ତବ ନା କାଳ୍ପନିକ ? ମୋତେ କ'ଣ ସତରେ କୃପା ମିଳିବ ? କେବେ ମିଳିବ ? କିପରି ମିଳିବ ? ଏହିପରି ପ୍ରଶ୍ନର ଜାଲ ମଧ୍ୟରେ ମଣିଷର ମନପକ୍ଷୀ ଛଟ୍‌ପଟ୍ ହୁଏ ।

ଏପରି ପ୍ରଶ୍ନଜାଲକୁ କାଟି ଉଦ୍ଧାର ପାଇବାକୁ ହେଲେ ଭଗବଦ୍ କୃପାର ସ୍ୱରୂପ ସଂପର୍କରେ ମନନଶୀଳତାର ସହିତ ବିଚାର କରିବାକୁ ହେବ । ଗୋଟିଏ ଦୃଷ୍ଟାନ୍ତ ନିଆଯାଉ ମହାଭାରତ ଯୁଦ୍ଧର ଭରଡିଆ ପକ୍ଷୀର କଥା । ଦ୍ୱାପର ଯୁଗରେ

ଶ୍ରୀକୃଷ୍ଣ, ଦ୍ରୌପଦୀ, ବିଦୁର ଓ କୁବୁଜା ପରି ବହୁ ଲୋକଙ୍କୁ କୃପା ପ୍ରଦାନ କରିଛନ୍ତି, କିନ୍ତୁ ଭରତିଆ ପକ୍ଷୀ କଥାର ଏକ ସ୍ୱାତନ୍ତ୍ୟ ରହିଛି ।

ମହାଭାରତ ଯୁଦ୍ଧ ଶେଷରେ ଯୁଦ୍ଧକ୍ଷେତ୍ର ରଥୀମାନଙ୍କର ମୃତଦେହରେ ପୂରିଉଠିଥିଲା । ପାଣ୍ଡବମାନେ ଶବସଂସ୍କାର କରି କ୍ଷେତ୍ରଟିକୁ ସ୍ୱାଭାବିକ ଅବସ୍ଥା ଫେରାଇ ଆଣିବାକୁ ଯତ୍ନ କରୁଥିଲେ । ଏହି କାର୍ଯ୍ୟକ୍ରମ ସମୟରେ ଭୀମ ଗୋଟିଏ ବିରାଟ ମୃତହସ୍ତୀକୁ ଟେକିବା ସମୟରେ ଗୋଟିଏ ନବଜନ୍ମିତ କ୍ଷୁଦ୍ର ପକ୍ଷୀଶାବକ ଶବ୍ଦ କରି ଆକାଶକୁ ଉଡ଼ିଗଲା । ଭୀମ ଲକ୍ଷ୍ୟ କଲେ ଯେ ହାତୀଟିକୁ ଉଠାଇବା ସମୟରେ ହାତୀବେକରେ ଥିବା ଘଣ୍ଟାଟିଏ ଅଛି । ତାଙ୍କୁ ବୁଝିବାକୁ ବାକିରହିଲା ନାହିଁ ଯେ ହାତୀଟି ପଡ଼ିଥିବା ସମୟରେ ଭୂମିକୁ ସ୍ପର୍ଶ କରିଥିବା ଏହି ଘଣ୍ଟାଟି ପକ୍ଷୀଶାବକଟିକୁ ସୁରକ୍ଷା ପ୍ରଦାନ କରିଥିଲା । ହାତୀର ବେକରେ ଥିବା ଘଣ୍ଟା ମଧ୍ୟରେ ସୁରକ୍ଷିତ ରହି ପକ୍ଷୀଶାବକଟି ଯୁଦ୍ଧର ସମସ୍ତ ଭୟାବହତା ଏଡ଼େଇ ପାରିଥିଲା । ଜୀବନ୍ତ ଅବସ୍ଥାରେ ପକ୍ଷୀଶାବକଟି ଉଡ଼ିଯିବାର ଦେଖି ଭୀମ ବିସ୍ମୟ ପ୍ରକାଶ କରି ପାଖରେ ଥିବା ଶ୍ରୀକୃଷ୍ଣଙ୍କୁ କହିଲେ – ''ହେ ବାସୁଦେବ ! ଏ କି ଆଶ୍ଚର୍ଯ୍ୟ କଥା ! ମହାଭାରତ ଯୁଦ୍ଧରେ ବିରାଟ ବିରାଟ ରଥୀମାନେ ଟଳିପଡ଼ିଲେ । କିନ୍ତୁ ପକ୍ଷୀଛୁଆଟି ବଞ୍ଚିଗଲା କିପରି ? ଏହା କ'ଣ ସମ୍ଭବ ?''

ଶ୍ରୀକୃଷ୍ଣ ସ୍ମିତହସି ଉତ୍ତର ଦେଲେ – ''ତୁମେ ଭାବୁଛ ଏ ଘଟଣାଟି ନିତାନ୍ତ ଆକସ୍ମିକ, ନୁହେଁ ? କିନ୍ତୁ ଏ ଘଟଣା ଆକସ୍ମିକ ନୁହେଁ । ଭରତିଆ ପକ୍ଷୀର ଆକୁଳ ପ୍ରାର୍ଥନାରେ ମୁଁ ଆଲୋଡ଼ିତ ହୋଇଥିଲି । ମହାଭାରତ ଯୁଦ୍ଧ ଅନ୍ତିମ ପର୍ଯ୍ୟାୟରେ ଥିବା ସମୟରେ ମା' ଭରତିଆ ଉଡ଼ିଯାଉଥିଲା ଆକାଶରେ । ସେ ଆସନ୍ନପ୍ରସବା ଥିଲା । ଆକାଶରୁ ଯୁଦ୍ଧର ଘନଘଟା ଲକ୍ଷ୍ୟକରି ମା' ଭରତିଆ ଅସ୍ଥିର ହୋଇଉଠିଲା । ସେ ନିଶ୍ଚିତ ଭାବେ ଜାଣିଲା ଯେ ସେ ତଳକୁ ଓହ୍ଲାଇଲେ ତା'ର ପ୍ରାଣ ଯିବ । ଅଣ୍ଡାଟିକୁ ଖସାଇ ଦେଲେ ମଧ୍ୟ ଅଣ୍ଡାଟି କ୍ଷତବିକ୍ଷତ ହୋଇ ନଷ୍ଟ ହେବ । ତା'ର ଜନନୀ ହୃଦୟ ଦୁଃଖରେ କାନ୍ଦିଉଠିଲା । ସେ ଆର୍ତ୍ତସ୍ୱରରେ ମୋତେ ପ୍ରାର୍ଥନା କଲା । ଶିଶୁ ଶାବକଟିର ପ୍ରାଣ ରକ୍ଷା ପାଇଁ । ସେଥିପାଇଁ ମୋତେ ଏକ ଉପାୟ କରିବାକୁ ହେଲା । ମୁଁ ଚକ୍ରପେଶି ଗୋଟିଏ ଯୁଦ୍ଧହସ୍ତୀକୁ ତଳେ ଲୋଟାଇଲି । ମାତ୍ର ହାତୀଟିକୁ ଏପରି ସମୟରେ ଓ ଏପରି ଭାବରେ ଲୋଟାଇଲି ଯେ ଆକାଶ ମାର୍ଗରୁ ଖସି ଭରତିଆର ଅଣ୍ଡାଟି ଭୂମିକୁ ସ୍ପର୍ଶ କରିବାମାତ୍ରେ ହାତୀବେକରେ ଘଣ୍ଟା ବୃତ୍ତାୟିତ କରି ରଖିବ । ଅଣ୍ଡାର କୌଣସି କ୍ଷତି ହେବ ନାହିଁ । ଯଥାସମୟରେ ଶିଶୁଶାବକ

ଜନ୍ମ ନେବ । ହାତୀ ଉପରେ ଏବଂ ଯୁଦ୍ଧଭୂମିର ସମସ୍ତ ବିଭୀଷିକା ସତ୍ତ୍ୱେ ଶାବକ ନିରାପଦ ରହିବ । ଉଡ଼ିଯାଇଥିବା ଭରତିଆ ପକ୍ଷୀଶାବକ ଏହି ଯୋଜନାର ଫଳ ।''

ଭୀମ ବିସ୍ମୟ-ଚକିତ ହୋଇ କହିଲେ ''ବାସୁଦେବ ! ଭରତିଆ ପକ୍ଷୀର ଶରଣାଗତି ଯୋଗୁ ତା'ର ଶିଶୁଶାବକକୁ ରକ୍ଷାକଲ । ଆମ୍ଭେମାନେ ଯଦି ପଞ୍ଚପାଣ୍ଡବଙ୍କ ବାଳୁତ ପୁତ୍ରମାନଙ୍କୁ ତୁମ ପାଖରେ ସମର୍ପି ଦେଇପାରିଥାନ୍ତୁ, ତେବେ ସେମାନେ ମଧ୍ୟ ରକ୍ଷା ପାଇଥାନ୍ତେ ।''

ଶ୍ରୀକୃଷ୍ଣ ଭୀମକୁ ସାନ୍ତ୍ୱନା ଦେଇ କହିଲେ – ସମର୍ପଣଭାବ ମଧ୍ୟ ଆକସ୍ମିକ ନୁହେଁ । ଏହା ସାଧନାର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । ଭରତିଆ ପକ୍ଷୀ ସହିତ ମୋର ସଂପର୍କ କେବଳ ଏ ଜନ୍ମର ନୁହେଁ । ତ୍ରେତୟା ଯୁଗର ଘଟଣା ମୁଁ ଭୁଲିଯାଇ ନାହିଁ । ତୁମେ ଜାଣିଥିବ ଯେ ସୀତା ଅପହରଣ ପରେ ରାମଙ୍କୁ ଯଥୋଚିତ ସମ୍ବାଦ ଦେବାପାଇଁ ଜଟାୟୁ ଜୀବନ ସଂଗ୍ରାମ କରିଥିଲା । କ୍ଷତବିକ୍ଷତ ମୃତସମ ହୋଇ ପଡ଼ିରହିଥିଲା କେବଳ ଖବର ଦେବା ପାଇଁ । ଜୀବନର ଏପରି ମୁମୂର୍ଷୁ ସମୟରେ ପକ୍ଷୀଟିଏ ନିଜର କ୍ଷୁଦ୍ର ଚଞ୍ଚୁରେ ଟୋପା ଟୋପା ଜଳଆଣି ଜଟାୟୁକୁ ଦେଉଥିଲା । ଉଦ୍ଦେଶ୍ୟ ଥିଲା ରାମଚନ୍ଦ୍ର ଆସିବା ପର୍ଯ୍ୟନ୍ତ'ଜଟାୟୁକୁ ବଞ୍ଚାଇ ରଖିବା । ଦିବ୍ୟକାର୍ଯ୍ୟ ପାଇଁ ଜଟାୟୁ ହୃଦୟରେ ଯେଉଁ ବ୍ୟାକୁଳତା ଥିଲା, କ୍ଷୁଦ୍ର ପକ୍ଷୀଟିର ମଧ୍ୟ ଅନୁରୂପ ଆକୁଳତା ରହିଥିଲା ପ୍ରଭୁ କାର୍ଯ୍ୟ ସାଧନା ପାଇଁ । ଦ୍ୱାପର ଯୁଗର ଭରତିଆ ପକ୍ଷୀ ହେଉଛି ତ୍ରେତୟାର ସେହି ସହାୟକ ପକ୍ଷୀ ।''

ଭରତିଆ ପକ୍ଷୀର ଏହି କୃପାପ୍ରାପ୍ତି ସ୍ପଷ୍ଟ ସୂଚନା ଦିଏ ଯେ ଭଗବଦ୍ କୃପାଲାଭ ପାଇଁ କିଛି କରିବାକୁ ହେବ । କଥିତ ଭାଷାରେ ମନୁଷ୍ୟ ଦେଇଥିଲେ ପାଏ ପରି କିଛି କରିଥିଲେ ଦିବ୍ୟକୃପା ଲାଭ ହୁଏ । ପକ୍ଷୀଟି ଅତୀତ ଯୁଗରେ ଯେଉଁ ଦିବ୍ୟକାର୍ଯ୍ୟରେ ଅଂଶ ନେଇଥିଲା ତାହାର ଫଳ ସ୍ୱରୂପ ଦ୍ୱାପର ଯୁଗରେ ବିଭୁକୃପା ଲାଭ କଲା ।

ଅତୀତର ପୁଣ୍ୟକର୍ମ ବିଭୁକୃପା ନିଶ୍ଚିତ ଆଣିଥାଏ । ଦ୍ୱିତୀୟ ପ୍ରଶ୍ନଟି ହେଉଛି ମନୁଷ୍ୟର ପ୍ରାରବ୍ଧକୁ ନେଇ । ମନୁଷ୍ୟର ପ୍ରାରବ୍ଧ ଜନ୍ମିତ କର୍ମଫଳ ଭୋଗ ଯଦି ସୁନିଶ୍ଚିତ, ତେବେ ପୂର୍ବର ପାପକର୍ମ ମଧ୍ୟ ଯନ୍ତ୍ରଣାଦାୟକ କର୍ମଫଳ ସୃଷ୍ଟି କରିବ ? ଏ କ୍ଷେତ୍ରରେ ଭଗବାନଙ୍କ କୃପା ପ୍ରାରବ୍ଧ ଖଣ୍ଡନରେ ସହାୟକ ହେବ କି ?

ଈଶ୍ୱରାଭିମୁଖୀ ଜୀବନ ଯାପନ କରୁଥିବା ବ୍ୟକ୍ତିମାନଙ୍କ କ୍ଷେତ୍ରରେ ଲଲାଟ ଲିଖନ ନିୟମର ବ୍ୟତିକ୍ରମ ଦେଖାଯାଏ । ହୁଏତ ପ୍ରାରବ୍ଧ ବା ପୂର୍ବଜନ୍ମର କର୍ମଫଳ

ଯୋଗୁଁ ବିଷମ ପରିଣତି ଦେଇ ଗତି କରନ୍ତି । କିନ୍ତୁ ଈଶ୍ୱରଙ୍କ କୃପା ନିଶ୍ଚେତକର କାମ କରେ, ମର୍ଫିନ୍ ଇଞ୍ଜେକସନ୍‌ର କାମ କରେ । ଶରୀର ମଧ୍ୟରେ ଯନ୍ତ୍ରଣା ବା ରୋଗ ଥିଲେ ମଧ୍ୟ କୃପାଶ୍ରୟୀ ବ୍ୟକ୍ତି ତାହାର ଅନୁଭୂତି ପାଇ ନଥାଏ । ବିଭୁକୃପା ଫଳରେ କର୍ମଫଳର ଏହି ଦାହିକା ଶକ୍ତି ନିଷ୍କ୍ରିୟ ହୋଇଯାଏ ।

ବିଭୁକୃପାର ଅନ୍ୟତମ ସ୍ୱରୂପ ହେଉଛି ଏହା ସର୍ବଦିଗପ୍ରସାରୀ । ଦୀପର ଆଲୋକ ଯେପରି ଚତୁର୍ଦ୍ଦିଗକୁ ବିଚ୍ଛୁରିତ ହୁଏ, ସେହିପରି ଭଗବାନଙ୍କ କୃପା ସବୁଦିଗକୁ ପ୍ରସାରିତ ହୁଏ । ସୂର୍ଯ୍ୟାଲୋକ ପରି ଏହା ବାଦଭେଦ ନ ମାନି ଚାରିଆଡ଼େ ବିଛାଇ ହୋଇଯାଏ । ଭଗବାନଙ୍କ କୃପା ସର୍ବଦିଗ ପ୍ରସାରୀ ହୋଇଥିଲେ ମଧ୍ୟ କିଛିଲୋକ ବିଭୁକୃପା ପାଇ ନ ଥାନ୍ତି କାହିଁକି ? ସାମାନ୍ୟ ଚିନ୍ତା କଲେ ଦେଖାଯିବ ଯେ ସୂର୍ଯ୍ୟାଲୋକ ଚାରିଦିଗକୁ ପ୍ରସାରିତ ହେଉଥିଲେ ମଧ୍ୟ ଆବଦ୍ଧ କୋଠରୀରେ ରହୁଥିବା ବ୍ୟକ୍ତି ଆଲୋକର ସ୍ପର୍ଶ ପାଇ ନ ଥାଏ । କବାଟ ଝରକା ନ ଖୋଲିବା ପର୍ଯ୍ୟନ୍ତ କୋଠରୀ ଆଲୋକିତ ହୋଇ ନଥାଏ । ଠିକ୍ ସେହିପରି ଷଡ଼ରିପୁ ଓ ଅହମିକାର ଦୁର୍ଭେଦ୍ୟ ପ୍ରାଚୀରପୂର୍ଣ୍ଣ ଆବଦ୍ଧ ଦୁର୍ଗରେ ବସବାସ କରୁଥିବା ପର୍ଯ୍ୟନ୍ତ ବ୍ୟକ୍ତି ବିଭୁକୃପା ପାଇ ନଥାଏ । ସୂର୍ଯ୍ୟାଲୋକ ପାଇବା ପାଇଁ କବାଟ ଝରକା ଖୋଲିବାକୁ ହୁଏ । ବିଭୁକୃପା ପାଇବା ପାଇଁ ମନର କବାଟ ଝରକା ମଧ୍ୟ ଖୋଲିବାକୁ ହୁଏ । ଭଗବାନଙ୍କ କୃପାଲାଭ କରିବା ପାଇଁ ଗ୍ରହଣଶୀଳତା ପ୍ରଥମେ ଆବଶ୍ୟକ ।

ଥରେ ଶିରିଡ଼ି ସାଇବାବାଙ୍କର ଜଣେ ଅନୁଗତ ତାଙ୍କର ଜଣେ ବନ୍ଧୁଙ୍କୁ ଶିରିଡ଼ି ଆଣିବାକୁ ଇଚ୍ଛା କଲେ । ଏହି ବନ୍ଧୁଜଣକଙ୍କର କୌଣସି ଆଧ୍ୟାତ୍ମିକ ଅଭିଳାଷ ନଥିଲା । ତେଣୁ ସେ ଆସିବାକୁ ଅନିଚ୍ଛୁକ ଥିଲେ । ବାରମ୍ବାର ଅନୁରୋଧ ପରେ ଦୁଇଜଣ ଶିରିଡ଼ି ଆସିଲେ । ସାଇବାବାଙ୍କ ଅନୁଗତ ଓ ତାଙ୍କର ବନ୍ଧୁ ଦ୍ୱାରକାମୟୀ ମସ୍‌ଜିଦ୍‌ରେ ପହଞ୍ଚିବା ସମୟରେ ସେମାନେ ଦେଖିଲେ ଯେ ବାବା କପ୍‌ଗୁଡ଼ିକ ସବୁ ଓଲଟାଇ ରଖିଛନ୍ତି । କିଛି ସମୟ ପରେ ଦୁଇବନ୍ଧୁ ନିଜ ସ୍ଥାନକୁ ଫେରିଗଲେ । ବାବାଙ୍କ ଅନୁଗତ ପରବର୍ତ୍ତୀ ଏକ ସମୟରେ ବାବାକୁ ଅନୁନୟ ଭାଷାରେ ଅଭିଯୋଗ ଜଣାଇ କହିଲେ ଯେ ସେ ତାଙ୍କର ବନ୍ଧୁଙ୍କୁ ଶିରିଡ଼ି ଆଣିଥିଲେ, ମାତ୍ର ବାବା କିଛି ଉପଦେଶ ଦେଲେ ନାହିଁ ।

ଏହାର ପ୍ରତ୍ୟୁତ୍ତର ଦେଇ ବାବା ଜଣାଇଲେ ଯେ ଭକ୍ତ ବନ୍ଧୁଙ୍କର ମନ ଏକ ଆବଦ୍ଧ କୋଠରୀ । ଓଲଟା କପ୍ ସଜାଡ଼ିବା ମାଧ୍ୟମରେ ବାବା ତାହା ଇଙ୍ଗିତ କରିଛନ୍ତି । କପ୍‌ଟି ଓଲଟା ନ ରହି ଠିକ୍ ରଖିଲେ ସେଥିରେ କ୍ଷୀର କିମ୍ବା ଚା ରହିବ ।

ଓଲଟା କପ୍ ଉପରେ ଜଳୀୟ ପଦାର୍ଥ ଢାଳିଲେ ତାହା ବାହାରକୁ ଢାଳିଯିବ, କପ୍‌ରେ କିଛି ରହିବ ନାହିଁ । ସୁତରାଂ ବାବା ସ୍ପଷ୍ଟ କରିଦେଲେ ଯେ କୃପାଗ୍ରହଣ ପାଇଁ ଏକ ଗ୍ରହଣଶୀଳତାର ଆବଶ୍ୟକତା ରହିଛି ।

ମନେହୁଏ ଭଗବଦ୍‌କୃପା ଜଳପରି ପ୍ରବାହଧର୍ମୀ । ଦୁଇହାତ ପାପୁଲିକୁ ସିଧା (flat) କରି ରଖିଲେ କୃପା ବହିଯିବ । ମାତ୍ର ଆମେ ଯଦି ଶୁଦ୍ଧପୂତ ଚିତ୍ତରେ ଦୁଇ ପାପୁଲିକୁ ପତରଠୋଲା ଆକୃତିରେ ସଜାଇରଖିବୁ ତେବେ ଭଗବଦ୍ କୃପା ସେଥିରେ ରହିବ ଏବଂ ଆମ ଜୀବନକୁ ମହନୀୟ କରିବ ।

ଭଗବାନଙ୍କ ଅସୀମ କୃପା ଫଳରେ ବ୍ୟକ୍ତି ଜୀବନରେ ଅହେତୁକ କୃପାର ନିଦର୍ଶନ ମଧ୍ୟ ମିଳେ । ସାଧୁର ପରିତ୍ରାଣ ପାଇଁ, ସାଧକର ମନୋବାଞ୍ଛା ପୂରଣ ପାଇଁ ଏବଂ ଭକ୍ତର ଆକର୍ଷଣରେ ଆକର୍ଷିତ ହୋଇ ଭଗବାନ ଓହ୍ଲାଇ ଆସନ୍ତି । ଭଗବାନଙ୍କ ଅବତାରତ୍ୱ ଦିବ୍ୟଲକ୍ଷ୍ୟ ସାଧନ ପାଇଁ ଅଭିପ୍ରେତ । ତଥାପି ଭଗବାନ ମୁଖ୍ୟତଃ ଭକ୍ତ, ସାଧୁ ଓ ସାଧକମାନଙ୍କ ପାଇଁ ଆସିଥିଲେ ମଧ୍ୟ ପରିପାର୍ଶ୍ୱସ୍ଥ ଅନ୍ୟମାନେ ଭଗବଦ୍ କୃପାଲାଭ କରିଥାନ୍ତି ।

ଭଗବାନଙ୍କ କୃପା ସମୟ ସମୟରେ ଅହେତୁକ ଭାବରେ ଆସିଥିଲେ ମଧ୍ୟ କୃପାପ୍ରାପ୍ତି ପାଇଁ ସାଧନା ଆବଶ୍ୟକ । ସାଧନାର ମାର୍ଗ କ'ଣ ହେବା ବିଧେୟ, ତାହା ଏଠାରେ ଆଲୋଚନା କରାଯାଉ ନାହିଁ । ନବଧା ଭକ୍ତିରୁ କେଉଁ ମାର୍ଗଟି କାହାପାଇଁ ଅନୁକୂଳ ତାହାର ଅବତାରଣା କରାଯାଉ ନାହିଁ । କିନ୍ତୁ ଭଗବଦ୍ କୃପାଲାଭ ପାଇଁ ସାଧନାର ଦୁଇଟି ବୈଶିଷ୍ଟ୍ୟ ବିଷୟରେ ସମ୍ୟକ୍ ସୂଚନା ଦିଆଯାଇପାରେ । ପ୍ରଥମଟି ହେଉଛି ସାଧନାର ମାର୍ଗ ଯାହା ହେଉନା କାହିଁକି, ତାହା ମୁଖ୍ୟତଃ ଗଭୀର ହେବା ଆବଶ୍ୟକ । ଜନଗହଳିପୂର୍ଣ୍ଣ ରାସ୍ତାରେ ଗାଡ଼ି ଚଳାଉଥିବା ଚାଳକର ମନ ଯେପରି ସବୁଥିରୁ ନିବୃତ୍ତ ରହି ରାସ୍ତା ଓ ଗାଡ଼ିର ନିୟନ୍ତ୍ରଣ ଉପରେ କେନ୍ଦ୍ରୀଭୂତ ରହେ, ସେହିପରି ସାଧନାରତ ବ୍ୟକ୍ତିର ମନପ୍ରାଣ ସର୍ବତୋଭାବେ ଏକାଗ୍ରତା ଓ ଗଭୀରତା ପୂର୍ଣ୍ଣ ହେବା ଆବଶ୍ୟକ । ଦ୍ୱିତୀୟତଃ ସାଧନା ଗଭୀର ହେବା ସଂଗେ ସଂଗେ ନିରବଚ୍ଛିନ୍ନ ହେବା ବିଧେୟ ।

ଗଭୀର ଓ ନିରବଚ୍ଛିନ୍ନ ଭାବରେ ସାଧନା ବା ଈଶ୍ୱରାଭିମୁଖୀ ଜୀବନ ଭଗବଦ୍ କୃପା ଲାଭ କରିଥାଏ । ସାଧନାର ସ୍ଥଳ ଓ ମାର୍ଗ ଅପେକ୍ଷାକୃତ ଗୌଣ ଭୂମିକା ନିଏ । ଥରେ ଜଣେ ବ୍ୟକ୍ତି ସାଇବାବାଙ୍କୁ ମୁକ୍ତି କିପରି ମିଳିବ ବୋଲି ପଚାରିଲେ ।

ଏହାର ଉତ୍ତରରେ ବାବା କହିଥିଲେ ସେଠାକୁ ଯିବାପାଇଁ ଅନେକ ଗୁଡ଼ିଏ ରାସ୍ତା ଅଛି; ଗୋଟିଏ ରାସ୍ତା ଶିରିଡ଼ିରୁ ମଧ୍ୟ ରହିଛି । ଏ ଉକ୍ତିର ତାତ୍ପର୍ଯ୍ୟ ସହଜରେ ଅନୁମେୟ । ସାଧନାର ଏକାଧିକ ପଥ । ଭଗବତ୍ କୃପା ମଧ୍ୟ ଏକାଧିକ ଉପାୟରେ ଲାଭ କରାଯାଇପାରେ । କିନ୍ତୁ ସେଥିପାଇଁ ସାଧନା ଓ ମାନବିକ ଉଦ୍ୟମର ଆବଶ୍ୟକତା ରହିଛି ।

ଭଗବତ୍ କୃପା କେତେବେଳେ ଓ କେଉଁଠାରେ ମିଳିବ, ସେ ପ୍ରଶ୍ନ ନିରର୍ଥକ । ଯାତ୍ରା ଆରମ୍ଭ କଲେ ଲକ୍ଷ୍ୟସ୍ଥଳର ପ୍ରଶ୍ନ ଉଠିବ । ଯାତ୍ରା ଆରମ୍ଭ ନ କରିବା ପର୍ଯ୍ୟନ୍ତ ବିଭୁକୃପା ପରି ଲକ୍ଷ୍ୟବିନ୍ଦୁର ପ୍ରଶ୍ନ ଯଥାର୍ଥ ନୁହେଁ । କିନ୍ତୁ ଗୁରୁତ୍ୱପୂର୍ଣ୍ଣ ହେଉଛି ଏହି ଯାତ୍ରା ଆରମ୍ଭ ପାଇଁ ମାନସିକ ବ୍ୟାକୁଳତା । ତାହା ଏହି ମୁହୂର୍ତ୍ତରୁ ଆରମ୍ଭ ହେବା ଉଚିତ୍ । ଅତୀତ ସ୍ୱପ୍ନପରି ଅଳୀକ । ଭବିଷ୍ୟତ ମରୀଚିକା ପରି ଅନିଶ୍ଚିତ । ସୁତରାଂ ବର୍ତ୍ତମାନର ଭିତ୍ତିଭୂମି ଉପରେ ମନୁଷ୍ୟକୁ ଭଗବତ୍ କୃପାଲାଭ ପାଇଁ ଭଗବତ୍ ଚିନ୍ତା ସଦୃଶ ଯାନରେ ଯାତ୍ରାରମ୍ଭ କରିବାକୁ ହେବ ।

ଏ ଯାତ୍ରାରମ୍ଭର ସ୍ଥାନ ଭୌଗୋଳିକ ନୁହେଁ, ଏହା ମାନସିକ ଓ ଆତ୍ମିକ । ଏ ଯାତ୍ରା ବର୍ହିଜଗତରୁ ଅନ୍ତର୍ଜଗତକୁ ଯାତ୍ରା । ଏ ଯାତ୍ରା ଅନ୍ଧକାରରୁ ଆଲୋକକୁ ଯାତ୍ରା । ଏ ଯାତ୍ରା ମୃତ୍ୟୁପଥରୁ ମୁକ୍ତି ପଥକୁ ଯାତ୍ରା । ଏ ଯାତ୍ରା ଜଡ଼ତାରୁ ଚେତନଶୀଳତାକୁ ଯାତ୍ରା । ଏ ଯାତ୍ରା ଦେହାନୁଭୂତିରୁ ଆତ୍ମାନୁଭୂତିକୁ ଯାତ୍ରା । ଏ ଯାତ୍ରାରେ ଭଗବତ୍ କୃପା ଅବଶ୍ୟମ୍ଭାବୀ ।



# ସାଇ ମାର୍ଗ : ସ୍ୱାସ୍ଥ୍ୟ, ସଂପଦ ଓ ସାଧକର ରାଜପଥ

ଅଖଣ୍ଡ ସ୍ୱାସ୍ଥ୍ୟ, ଅମାପ ଧନ ଓ ଅଟଳ ସାଧନାକୁ ଜୀବନର ଅଙ୍ଗୀଭୂତ କରିବା ପାଇଁ ଅନେକ ହୁଏତ ଆଶା କରନ୍ତି । କିନ୍ତୁ ଏହାକୁ ସଫଳ ରୂପରେଖ ଦେବାରେ ଖୁବ୍ କମ୍ ଲୋକଙ୍କର ଉଦ୍ୟମ ସାର୍ଥକ ହୁଏ । ଜନ୍ମସମୟରୁ ଆରମ୍ଭ କରି ଶେଷ ଅବସ୍ଥା ପର୍ଯ୍ୟନ୍ତ ଅବିଚ୍ଛିନ୍ନ ଭାବରେ ଶରୀରକୁ ନିରୋଗ ରଖିବା କଷ୍ଟକର ହୋଇଥାଏ । ତା' ସହିତ ପରିବାରର ଅନ୍ୟମାନଙ୍କର ଅସୁସ୍ଥତା ମଧ୍ୟ ମାନସିକ ଶାନ୍ତି ଭଙ୍ଗ କରେ । ସେହିପରି ମାନସିକ ଜଟିଳତା ସୃଷ୍ଟି କରୁ ନଥିବା ପ୍ରକୃତ ଧନସମ୍ପତ୍ତି ଲାଭ କରିବାର ସୌଭାଗ୍ୟ ଖୁବ୍ କମ୍ । ଅନେକ ସମୟରେ ଜାଗତିକ ଧନ ସମ୍ପଦର ଗାଡ଼ିରେ ଦୁଃଖ ବସିରହିଥାଏ । ସୁତରାଂ ମାନସିକ ଆନନ୍ଦ ଦେଉଥିବା ପ୍ରାଚୁର୍ଯ୍ୟର ସନ୍ଧାନ କଷ୍ଟକର ହୋଇଥାଏ ।

ସାଧନାର ପଥ ଅଧିକ କଷ୍ଟକର । ଯଥେଷ୍ଟ ଉଦ୍ୟମ କରି ଜଣେ ହୁଏତ ସାଧନାର ପଥ ବାଛିନେଇ ପାରେ, କିନ୍ତୁ ଅଧିକ ଗୁରୁତ୍ୱପୂର୍ଣ୍ଣ ହେଉଛି ସାଧନାର ଗଭୀରତା ଓ ତା'ର ନିରବଚ୍ଛିନ୍ନତା । ସାଧନା ଅଗଭୀର ନ ହୋଇ ଗଭୀର ହେବା ଆବଶ୍ୟକ, ପୁଣି ସାଧନାର ଧାରା ଅବ୍ୟାହତ ରହିବା ବାଞ୍ଛନୀୟ ।

ସ୍ୱାସ୍ଥ୍ୟ, ସମ୍ପଦ ଓ ସାଧନାର ପଥ ଆଧୁନିକ ଯୁଗରେ ଅଧିକ ସମସ୍ୟା ସଂକୁଳ ହୋଇଉଠିଛି । ଆଧୁନିକତାର ଉଗ୍ର ଜ୍ୱର ବହୁ ଲୋକଙ୍କୁ ଆକ୍ରାନ୍ତ କରୁଛି । ଏହାର ପ୍ରଭାବରେ ଆମର ଚାହିଦା ଦିନକୁ ଦିନ ଅନିୟମିତ ଭାବେ ବଢ଼ିଚାଲିଛି । ଶାରୀରିକ ରୋଗଯନ୍ତ୍ରଣା ସୀମାହୀନ ହୋଇପଡ଼ିଛି । ମାନସିକ ଅସ୍ଥିରତାର ମାତ୍ରା ଆକାଶଛୁଆଁ ଢଙ୍ଗରେ ବଢ଼ି ଚାଲିଛି । ଶାନ୍ତିର ସୁଖସ୍ୱପ୍ନ ବଦଳରେ କାଳରାତ୍ରିର ଦୁଃସ୍ୱପ୍ନ ମନକୁ ଆଚ୍ଛନ୍ନ କରି ରଖିଛି ।

ଏଥିରୁ ମୁକ୍ତି ପାଇବା ପାଇଁ ମନୁଷ୍ୟ ଅସହାୟ ଚେଷ୍ଟାରେ ମାତିଛି । ଦୁଃଖ ଭୁଲିବା ପାଇଁ ସେ ତାସ୍ ଖେଳୁଛି । ଆନନ୍ଦକୁ ଧରି ରଖିବାକୁ ଦୂରଦର୍ଶନ ପାଖରେ ନିଜକୁ ଅଠାଭଳି ଜଡ଼ାଇ ଧରିଛି, ମୁହୂର୍ତ୍ତର ଆନନ୍ଦପାଇଁ ଖାଦ୍ୟ ପାନୀୟର ବିଳାସିତା

ଭିତରେ ନିଜକୁ ବୁଡ଼ାଇବାକୁ ଚେଷ୍ଟା କରୁଛି । ମାତ୍ର ଏ ସବୁ ଉଦ୍ୟମ ସତ୍ତ୍ୱେ ମାନସିକ ଶାନ୍ତି ଦୂରକୁ ଦୂରକୁ ଚାଲିଯାଉଛି ।

ମାତ୍ର ଏ ସମସ୍ତ ନୈରାଶ୍ୟର ଅନ୍ଧକାର ମଧ୍ୟରେ ଆଶାର ଦୀପ୍ତିମନ୍ତ ରଶ୍ମି ପ୍ରକଟିତ । ପରମେଶ୍ୱର ମନୁଷ୍ୟକୁ ପୂରାପୂରି ପକାଇ ଦେଇ ନାହାନ୍ତି । ତା'ର ମନ ଓ ଶରୀରର ଧୂଳିଝାଡ଼ି ତାକୁ ଦିବ୍ୟତ୍ୱର ପଥରେ ନେଇଯିବା ପାଇଁ ସେ ସଂକଳ୍ପବଦ୍ଧ । ଏଥିପାଇଁ ସେ ବାରମ୍ବାର ଧରାପୃଷ୍ଠରେ ଅବତରଣ କରିଛନ୍ତି । ମାନବ ଶରୀର ଗ୍ରହଣ କରି ମନୁଷ୍ୟର ଆଧ୍ୟାତ୍ମିକ ଉତ୍‌ଥାନର ପଥ ଉନ୍ମୋଚିତ କରିଛନ୍ତି । ସେଇ ଦିବ୍ୟଶକ୍ତି ନେଇ ଶିରିଡ଼ିର ସାଇବାବା ଧରାଧାମରେ ପାଦ ଦେଇଥିଲେ ।

ସାଇବାବାଙ୍କ ଉପରେ ପୂର୍ଣ୍ଣ ଆସ୍ଥା ସ୍ଥାପନ କରିଥିବା ବ୍ୟକ୍ତିମାନେ ନିଜର ସୁଖ ଶାନ୍ତି ଓ ସାଧନାକୁ ଧରି ରଖିପାରିଥିଲେ । ସାଇବାବାଙ୍କ କରୁଣାଲାଭ କରିଥିବା ସବୁବ୍ୟକ୍ତି ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି ଯେ ସାଇ ପଦ୍ଧତି ଚମତ୍କାର ଭାବେ କାମ କରେ, ସାଇମାର୍ଗ ଅନୁସରଣରେ ସବୁ ବିଷାଦ ଦୂରୀଭୂତ ହୁଏ । ସାଇ ପଦ୍ଧତିରେ ସବୁ ଯନ୍ତ୍ରଣାର ଅବସନ ଘଟେ, ଜୀବନରେ ସାଇ ଅନୁଭୂତି ଆଣିବାକୁ ହେଲେ କେତୋଟି ବୈଶିଷ୍ଟ୍ୟ ପ୍ରତି ଦୃଷ୍ଟି ଦେବାକୁ ହେବ ।

ପ୍ରଥମତଃ ସାଇ ଚିକିତ୍ସା ପାଇଁ କୌଣସି ପ୍ରବେଶିକା ଅର୍ଥ ଦେବାକୁ ପଡ଼େ ନାହିଁ । ଏଥିପାଇଁ ପ୍ରାଥମିକ ଆବଶ୍ୟକତା ହେଉଛି ଆମର ବିଶ୍ୱାସ । ସାଇବାବାଙ୍କ କରୁଣା ପ୍ରତି ଆମର ବିଶ୍ୱାସ ଓ ଆସ୍ଥା ପ୍ରତିଷ୍ଠିତ ହେବା ମାତ୍ରେ ସାଇ ଚମତ୍କାରିତା କାର୍ଯ୍ୟ କରିବାକୁ ଆରମ୍ଭ କରେ । ଚିକିତ୍ସା ପାଇଁ କୌଣସି ଚିକିତ୍ସକଙ୍କ ପାଖକୁ ଗଲେ ପ୍ରଥମେ ତାଙ୍କ ସହିତ ଏକ ସମ୍ପର୍କ ସ୍ଥାପନ କରିବାକୁ ପଡ଼େ । ଡାକ୍ତର ଆମର ରୋଗ ଭଲ କରିପାରିବେ, ଏ ବିଶ୍ୱାସ ରଖିବାକୁ ହୁଏ । ଠିକ୍ ସେହିପରି ଶିରିଡ଼ିର ସାଇବାବାଙ୍କୁ ଆମେ ଆମ ଜୀବନର ନିୟନ୍ତ୍ରକ ରୂପେ ବିଶ୍ୱାସ କରିବା ଏବଂ ଗ୍ରହଣ କରିବା ପରେ ହିଁ ତାଙ୍କର ପ୍ରଭାବ ଆମେ ଅନୁଭବକ କରୁ ।

ଦ୍ୱିତୀୟତଃ ସାଇଚିକିତ୍ସାର ସୁଫଳ ପାଇବାକୁ ଗଲେ କୌଣସି ବାହ୍ୟିକ ମଧ୍ୟସ୍ଥତା କରୁଥିବା ବ୍ୟକ୍ତିର ପ୍ରୟୋଜନ ନାହିଁ । ବାବାଙ୍କ ସହିତ ସିଧାସଳଖ ସଂଯୋଗ ପ୍ରତିଷ୍ଠା କରିବାରେ କୌଣସି ବାଧା ନାହିଁ । ଏଇ ସଂଯୋଗକୁ ଶ୍ରୀ ସାଇ ସତ୍‌ଚରିତ ମାଧ୍ୟମରେ ପ୍ରତିଷ୍ଠା ଏବଂ ଦୃଢ଼ୀଭୂତ କରିହେବ । ଏହାକୁ ପାଠ କଲେ ମନ ଆବଶ୍ୟକ କରୁଥିବା ସମସ୍ତ ଔଷଧ ମିଳିପାରିବ । ଏହାର ଚିନ୍ତନରେ ସବୁପ୍ରକାର ଖାଦ୍ୟସାର ମିଳିବ, ଏହାର ଅନୁଶୀଳନରେ ମାନସିକ ଦୁର୍ବଳତା ଦୂରହେବ ଏବଂ ଏହାର

ଅନୁସରଣରେ ଜୀବନ ସୁନିୟନ୍ତ୍ରିତ ହୋଇ ଶାନ୍ତିପୂର୍ଣ୍ଣ ହୋଇପାରିବ । ବିଷାଦଗ୍ରସ୍ତ ମନୁଷ୍ୟ ସାଇ ସତ୍‌ଚରିତରେ ବାବାଙ୍କ ଲୀଳା ସବୁ ପାଠକଲେ ସବୁ ଯନ୍ତ୍ରଣା ତିରୋହିତ ହୁଏ ଏବଂ ମାନସିକ ବିଷାଦ ଉଭେଇଯାଏ । ବ୍ୟକ୍ତି ସମସ୍ତପ୍ରକାର ସୁଖର ଅଧିକାରୀ ହୁଏ । ଲୀଳା-ବର୍ଣ୍ଣିତ ପ୍ରତିଟି ଘଟଣା ମନ ଓ ଶରୀରର ପ୍ରତିଟି ସଂକ୍ରମିତ କୋଷକୁ ନଷ୍ଟ କରେ । ବାବାଙ୍କର ପ୍ରତିଟି କଥା ନୂତନ କୋଷ ସୃଷ୍ଟି କରେ ପ୍ରାଣବାହକୁ ସକ୍ରିୟ କରେ, ଆନନ୍ଦର ସ୍ରୋତକୁ ଗତିଶୀଳ କରେ ।

ତୃତୀୟତଃ, ସାଇ ପଦ୍ଧତି ଖୁବ୍ ସରଳ । ଲୋକମାନେ ହୁଏତ ଭାବିପାରନ୍ତି ଏ ପଥରେ ଗତିକରିବା ସଂପୂର୍ଣ୍ଣ ଅସମ୍ଭବ । ଲୋକମାନେ ହୁଏତ ବିଚାର କରି ପାରନ୍ତି ଯେ ବାବା ଜୀବନର ଯେଉଁ ମାର୍ଗ ପ୍ରଦର୍ଶନ କରିଛନ୍ତି ସେ ପଥର ପଥିକ ହେବାରେ ବାଧା ଅନେକ । କିନ୍ତୁ ବାବାଙ୍କର କୃପା ଅସୀମ । ସେ ଆମ ସମସ୍ତଙ୍କର ଦୁର୍ବଳତା ଜାଣନ୍ତି, କିନ୍ତୁ ସେହ୍ନମୟୀ ଜନନୀ ପରି ସେ ତାଙ୍କର ଯତ୍ନ ଓ ମମତା ଢାଳିଦିଅନ୍ତି । ତାଙ୍କୁ ପ୍ରାର୍ଥନା କଲେ ସେ ଆମ ହୃଦୟରେ ଶ୍ରଦ୍ଧା ଓ ଧୈର୍ଯ୍ୟର ଅଂକୁରଣ କରନ୍ତି । ଏହି ଶ୍ରଦ୍ଧା ଓ ଧୈର୍ଯ୍ୟ ଆମକୁ ଆଧ୍ୟାତ୍ମିକ ବିକାଶ ପଥରେ ଆଗେଇ ନିଏ ।

ଦୁର୍ଭାଗ୍ୟବଶତଃ ଆମର ତଥାକଥିତ ଶିକ୍ଷା ଆମ ଆଧ୍ୟାତ୍ମିକ ବିକାଶରେ ବାଧା ସୃଷ୍ଟି କରିଛି । ଶିକ୍ଷାପାଇଁ ଅଧିକରୁ ଅଧିକ ଅନୁଷ୍ଠାନ ଗଢ଼ିଉଠିବା ସତ୍ତ୍ୱେ ଆମର କାମନାବାସନା ଓ ଅସୁଖ ଅଶାନ୍ତି ବହୁଗୁଣିତ ହେବାରେ ଲାଗିଛି । ଏ ପରିପ୍ରେକ୍ଷୀରେ ବାବା ଆମକୁ ଜୀବନର ପ୍ରକୃତ ଶିକ୍ଷାରେ ଦୀକ୍ଷିତ କରିବାକୁ ଚାହାନ୍ତି । ଶ୍ରୀ ସାଇ ସତ୍‌ଚରିତରେ ବର୍ଣ୍ଣିତ ତାଙ୍କର ଶିକ୍ଷା କେବଳ ଜୀବନର ଆହ୍ୱାନ ଗୁଡ଼ିକ ସହିତ ସମୟେ ରକ୍ଷା କରିବାକୁ ତାଲିମ ଦେଇ ନଥାଏ । ଅଧିକନ୍ତୁ ଆମର ଆଧ୍ୟାତ୍ମିକ ବିକାଶକୁ ତ୍ୱରାନ୍ୱିତ କରିଥାଏ ।

ସାଇମାର୍ଗର ଅନ୍ୟତମ ବଳିଷ୍ଠ ଉପାଦାନ ହେଉଛି ବାବାଙ୍କ ବଜ୍ରନିର୍ଘୋଷ ପ୍ରତିଶ୍ରୁତି । ଶିରିଡ଼ିରେ ବାବା ବାରମ୍ବାର ଘୋଷଣା କରିଥିଲେ ଯେ ତାଙ୍କ ପାର୍ଥିବ ଶରୀର ଅବସାନ ପରେ ମଧ୍ୟ ସେ ନିଜର ଆଶ୍ରିତମାନଙ୍କର କାର୍ଯ୍ୟକଳାପ ଉପରେ ଦୃଷ୍ଟି ରଖିବେ ଏବଂ ସେମାନଙ୍କୁ ଉଚିତ ମାର୍ଗ ପ୍ରଦର୍ଶନ କରିବେ । ଏପରି ନିର୍ଭରଯୋଗ୍ୟ ଘୋଷଣା ଅନନ୍ୟ । ଏ କଥାକୁ ସ୍ମରଣ ରଖି ଆମେ ବାବାଙ୍କ ଆଡ଼କୁ ଚାହିଁଲେ ଆମର ଭୟ ଦୂର ହେବ ଏବଂ ଆମେ ନିଜକୁ ଶକ୍ତ ମନେ କରିବୁ ।

ସାଇ ପଦ୍ଧତିର ଆଉ ବିଶେଷତ୍ୱ ହେଉଛି ଯେ ଏହା କେବଳ ଆଶ୍ରାକାରୀ ବ୍ୟକ୍ତିଙ୍କୁ ସାହାଯ୍ୟ କରି ନଥାଏ । ଏହା ତାହାର ପାରିପାର୍ଶ୍ୱିକ ଅବସ୍ଥାକୁ ପବିତ୍ର କରିଥାଏ । ବାବାଙ୍କ କରୁଣାରେ ରୋଗୀ କେବଳ ରୋଗମୁକ୍ତ ହୋଇ ନଥାଏ । ଏ

ଘଟଣା ତା' ପରିବାର ପାଇଁ ଆନନ୍ଦର ବଳୟ ସୃଷ୍ଟି କରେ । ଶ୍ରୀ ସାଇ ସତ୍‌ଚରିତ ପାରାୟଣ କରୁଥିବା ବ୍ୟକ୍ତି କେବଳ ନିଜକୁ ପବିତ୍ର କରେ ନାହିଁ । ଏହାଦ୍ୱାରା ପରିବାର ଓ ପରିବେଷ୍ଟନୀ ପବିତ୍ର ହୁଏ । ସତ୍‌ଚରିତର ଶ୍ରବଣ, ମନନ ଓ ଅନୁସରଣର ପ୍ରଭାବ ଧୀରେ ଧୀରେ ବ୍ୟକ୍ତି ପାଖରୁ ପରିବାରକୁ, ପରିବାରରୁ ପାରିପାର୍ଶ୍ୱିକ ଅଞ୍ଚଳ ଏବଂ ପରେ ଏକ ବୃହତ୍ତର ପରିସରକୁ ପରିବ୍ୟାପ୍ତ ହୁଏ । ବ୍ୟକ୍ତି, ପରିବାର ଓ ଗୋଷ୍ଠୀ ସମ୍ମିଳିତ ଭାବରେ ଉପକାର ପାଆନ୍ତି ।

ଆଧୁନିକ ଯୁଗରେ ସମଗ୍ର ଗୋଷ୍ଠୀର ପରିବର୍ତ୍ତନ କଥା ଚିନ୍ତା କଲାବେଳେ ସାଇ ଚେତନାର ତାତ୍ପର୍ଯ୍ୟ ଅଧିକ ଉପଲବ୍ଧି ହୁଏ । ସମାଜର ସଂସ୍କାର କଥା ଚିନ୍ତା କଲାବେଳେ କେଉଁ ମାଧ୍ୟମଟି ଉପଯୋଗୀ ହେବ, ସେ ବିଷୟରେ କୌଣସି ସ୍ଥିର ସିଦ୍ଧାନ୍ତ ନେଇ ହେଉନାହିଁ । ମାତ୍ର ଅଳ୍ପ ସଂଖ୍ୟକ ବ୍ୟକ୍ତି ସାଇମାର୍ଗର ଅନୁଗାମୀ ହେଲେ ମଧ୍ୟ ସେମାନଙ୍କର ଆଭ୍ୟନ୍ତରୀଣ ପରିବର୍ତ୍ତନ ଧୀରେ ଧୀରେ ଅନ୍ୟମାନଙ୍କୁ ପରିବର୍ତ୍ତନ କରିବ । ସମସ୍ତ ଗୋଷ୍ଠୀଗତ ସ୍ୱାସ୍ଥ୍ୟର ସୁରକ୍ଷା ସାଇଚେତନା ଦ୍ୱାରା ତ୍ୱରାନ୍ୱିତ ହୋଇପାରିବ ।

ପରମେଶ୍ୱର ସାଇଙ୍କର ପ୍ରତ୍ୟକ୍ଷ ସ୍ପର୍ଶ ଲାଭ କରିବାର ଆଉ ଏକ ମାଧ୍ୟମ ହେଉଛି ''ଉଦି ବିଭୂତି'' । ବାବାଙ୍କ ପ୍ରଦତ୍ତ ଉଦି କିପରି ଭାବରେ ଶତ ଶତ ଲୋକଙ୍କ ଶାରୀରିକ ଦୁଃଖକଷ୍ଟର ଉପଶମ ଆଣିଛି ତାହା ସତ୍ ଚରିତ୍ରରେ ଛତ୍ରେ ଛତ୍ରେ ପ୍ରକଟିତ । ଏହା ମାନସିକ ବ୍ୟାଧିର ନିରାକରଣରେ ମଧ୍ୟ ସହାୟ ହୋଇଛି । ବାବାଙ୍କ ଉଦି ବିଭୂତି କେବଳ ସମସ୍ୟା ସାମାଧାନରେ ସହାୟକ ହୋଇ ନଥାଏ । ବାବାଙ୍କ ନାମ ସ୍ମରଣ କରି ପ୍ରତିଦିନ ଏହାକୁ ଗ୍ରହଣ କରୁଥିବା ବ୍ୟକ୍ତି ପାଇଁ ବାବା ନିର୍ଭର ଆଶ୍ରୟ ପ୍ରଦାନ କରନ୍ତି । ସେ କ୍ଷେତ୍ରରେ ସମସ୍ୟାର ଅୟଆରମ୍ଭ ମଧ୍ୟ ଘଟି ନ ଥାଏ ।

ପରିଶେଷରେ କୁହାଯାଇ ପାରେ ଯେ ଜୀବନକୁ ସଂସ୍କାରମୁଖୀ କରିବାକୁ ହେଲେ ଶ୍ରୀ ଶିରିଡ଼ିବାବା ପ୍ରଦର୍ଶିତ ମାର୍ଗ ହେଉଛି ଏକ ରାଜପଥ । ଜୀବନର ଅଖଣ୍ଡ ସ୍ୱାସ୍ଥ୍ୟ, ଅମାପ ସଂପଦ ଓ ଅଟଳ ସାଧନା ପାଇଁ ବାବାଙ୍କ ଉପଦେଶ ସଫଳତମ ମାଧ୍ୟମ, ସେଇ ରାଜମାର୍ଗର ପ୍ରବେଶ ଦ୍ୱାର ହେଉଛି ଶ୍ରୀ ସାଇ ସତ୍‌ଚରିତ । ଏହାକୁ ପାଠକରି ଅନ୍ତରର ଗଭୀରତମ ପ୍ରଦେଶରେ ସାଇତି ରଖିଲେ ଏବଂ ସେଇ ଅନୁସାରେ ଜୀବନକୁ ପରିଚାଳନା କଲେ ବ୍ୟକ୍ତିର ସଂସ୍କାର ନିଶ୍ଚିତ । ଅଧିକନ୍ତୁ ପରିବାର ମଧ୍ୟ ସୁଖୀ ହେବ । ପରିବେଷ୍ଟନୀ ଅଧିକରୁ ଅଧିକ ପବିତ୍ର ହେବ ।



# ମୁକ୍ତିର ସାଇମାର୍ଗ

## (ମୂଳ ରଚନା : ଡକ୍ଟର ଜି.ଆର. ବିଜୟ କୁମାର)

ମୋ ଜୀବନରେ ଗୋଟିଏ ଦୁଃଖଦ ଘଟଣା ଘଟିଥିଲା । ୧୯୬୮ ମସିହାରେ ମୋର ଜଣେ ସହକର୍ମୀ ବଂଧୁଙ୍କର ମାତ୍ର ୩୭ ବର୍ଷ ବୟସରେ ଅକାଳ ବିୟୋଗ ଘଟିଲା । ଅଳ୍ପ କିଛି ବର୍ଷର ଡାକ୍ତରୀ ଜୀବନ ମଧ୍ୟରେ ସେ ବିଶେଷ ସୁଖ୍ୟାତି ଅର୍ଜନ କରିଥିଲେ । ରୋଗିମାନଙ୍କ ପ୍ରତି ତାଙ୍କର ସେବା ମନୋଭାବ ଏବଂ ଅନୁକମ୍ପା ତାଙ୍କୁ ଯଥେଷ୍ଟ ଲୋକପ୍ରିୟ କରିଥିଲା । ଫଳସ୍ୱରୂପ ତାଙ୍କ ଜୀବନରେ ସୁଖ ସ୍ୱାଚ୍ଛନ୍ଦ୍ୟ ମଧ୍ୟ ଅମାପ ଥିଲା । ତାଙ୍କର ବିୟୋଗ ପରେ ତାଙ୍କର ସହକର୍ମୀମାନେ ଏକ ଶୋକସଭାର ଆୟୋଜନ କରିଥିଲେ । ଅଧକ୍ଷ ସମସ୍ତଙ୍କୁ ଯୋଗଦେବାପାଇଁ ଡାକିଥିଲେ । ସ୍ୱର୍ଗତ ଆତ୍ମାର ସଦ୍‌ଗତି ପାଇଁ ଏକ ମିନିଟ୍ ନିରବ ପ୍ରାର୍ଥନା କରିବା ସମୟରେ ସେମାନେ କ'ଣ ଚିନ୍ତା କରୁଥିଲେ ତାହା ମୁଁ କହିପାରିବି ନାହିଁ । କିନ୍ତୁ ମୋ ମନରେ ଏକ ନିର୍ଦ୍ଦିଷ୍ଟ ଧରଣର ଚିନ୍ତାର ସ୍ରୋତ ପ୍ରବାହିତ ହେଉଥିଲା ।

ମୁଁ ବିନୀତ ଭାବରେ ପ୍ରଭୁ ସାଇନାଥଙ୍କୁ ପ୍ରଶ୍ନ କରୁଥିଲି; ''ପ୍ରଭୁ ! ଏହି କ'ଣ ଜୀବନର ଶେଷ ପରିଣତି ? ଜୀବନରେ ପ୍ରତିଷ୍ଠା ଲାଭ ପାଇଁ ଆମେ ଅକ୍ଳାନ୍ତ ପରିଶ୍ରମ କରୁ । ଆମର ପରିପାର୍ଶ୍ୱସ୍ଥ ଲୋକମାନଙ୍କର ସ୍ନେହ, ଶ୍ରଦ୍ଧା ଓ ପ୍ରଶଂସା ପାଇବାକୁ ଅନବରତ ଉଦ୍ୟମ କରୁ । ସବୁ ଘଟଣାକୁ ଜରୁରୀ ମନେକରୁ । ବିଚ୍ୟୁତି ଦେଖିଲେ କ୍ରୋଧ ପ୍ରକାଶ କରୁ । ତା'ପରେ ଆକସ୍ମିକ ଭାବରେ ଏପରି ଏକ ସମୟ ଆସିଯାଏ ଯେ ବେଶ୍ ଦୀପ୍ତିମନ୍ତ ପୁରୁଷ ମଧ୍ୟ ଟଳିଯାଏ । ତା'ର କାର୍ଯ୍ୟକଳାପ କେତେ ପୃଷ୍ଠାର ଲେଖା ମଧ୍ୟରେ ସୀମିତ ହୋଇଯାଏ । ତା'ର କୃତିତ୍ୱ କେତେକ ଶୋକସଭାର ପାଞ୍ଚମିନିଟ୍ ବକ୍ତବ୍ୟ ମଧ୍ୟରେ ସୀମାବଦ୍ଧ ହୁଏ । ତା'ର ସମ୍ମାନ କେବଳ ଷାଠିଏ ସେକେଣ୍ଡର ନିରବ ପ୍ରାର୍ଥନାର ଗଣ୍ଡିଭିତରେ ବାନ୍ଧିହୋଇ ରହେ । ପ୍ରଭୁ ! ଜୀବନରେ ଏତେ ପରିଶ୍ରମର ମୂଲ୍ୟ କ'ଣ ଏତିକି ?''

ମୁଁ ଆହୁରି ମଧ୍ୟ ଅନୁଭବ କଲି ଯେ ସହକର୍ମୀଙ୍କ ମୃତ୍ୟୁପଫଳରେ ମୁଣ୍ଡଟେକି ଥିବା ପ୍ରଶ୍ନସବୁର ସମାଧାନ ଦିଗରେ ଆମ ସମସ୍ତଙ୍କର ସମଷ୍ଟିଗତ ଆପରଗତା

ରହିଛି । ବଂଧୁ ଜଣକ କୁଆଡ଼େ ଗଲେ ? ସେ କ'ଣ ଅନ୍ୟ କେଉଁ ଜଗତରେ ବଂଚିଛନ୍ତି ? ଆମେ କ'ଣ ଅନ୍ୟ କେଉଁ ଜଗତରେ ତାଙ୍କର ସାକ୍ଷାତ ପାଇବୁ ? ସେ ଜନ୍ମନେଲେ କାହିଁକି ? ପ୍ରେମମୟ ଭଗବାନ କ'ଣ ତାଙ୍କ କାର୍ଯ୍ୟକଳାପର ଠିକ୍ ଠିକ୍ ବିବରଣୀ ନେଇଛନ୍ତି ? ଆମର ପେଷାଗତ ଏକ ବୈଷୟିକ ଜୀବନର ଊର୍ଦ୍ଧ୍ୱରେ ଆଉ କ'ଣ ଏକ ଜୀବନ ରହିଛି ? ଶୋକସଭାରେ ସମସ୍ତଙ୍କର ନିରବତା ସୂଚାଇଦେଉଥିଲା ଯେ ଆମ ନିରୁତ୍ତର ।

ତା'ପରେ ହଠାତ୍ ସାଇବାବାଙ୍କ ସନ୍ଦେଶ ଚିନ୍ତା କରିବାରୁ ଭାବନାର ଏକ ତରଙ୍ଗ ମୋ ଉପର ଦେଇ ଚାଲିଗଲା ।

''ତୁମେ ଯେଉଁଠାରେ ଥାଅନା କାହିଁକି ମୋତେ ସଦାସର୍ବଦା ଚିନ୍ତା କର । ତମେ ମୋତେ ଯେଉଁ ସମୟରେ ଚାହିଁବ, ମୁଁ ତୁମର ପାଖେପାଖେ ରହିଛି । ମୋ ଉପରେ ବିଶ୍ୱାସ ରଖ । ମୋର ପାର୍ଥିବ ଶରୀର ଚାଲିଯାଇଥିଲେ ମଧ ସମାଧିରେ ଥିବା ମୋର ଅସ୍ଥି ତମକୁ ଆଶା ଓ ବିଶ୍ୱାସ ଦେବ । କେବଳ ମୁଁ ନୁହେଁ, ମୋର ସମାଧି ମଧ ତୁମ ସହିତ ବୁଲିବ, କଥାବାର୍ତ୍ତା କରିବ ଏବଂ ସଂଯୋଗ ରକ୍ଷା କରିବ । ପୂର୍ଣ୍ଣଭାବରେ ସେମାନଙ୍କର ହୃଦୟ ମୋ ପାଖରେ ଅର୍ପଣ କରୁଥିବା ଲୋକେ ଏହା ଅନୁଭବ କରିବେ ।''

ଆମେ ବିଶ୍ୱରେ କାହିଁକି ରହିଛୁ ଏବଂ କେଉଁଠାକୁ ଯାଉଛୁ, ତାହାର ଏକମାତ୍ର ସନ୍ତୋଷଜନକ ଉତ୍ତର ବାବାଙ୍କର ଏହି ବାଣୀରେ ରହିଥିଲା । ସାଇ ଆଶ୍ରିତର ଅନ୍ତିମ ହୃଦ୍‌ସ୍ପନ୍ଦନରେ ଏକ ନିରର୍ଥକ ଜୀବନର ରହସ୍ୟାବୃତ୍ତ ପରିସମାପ୍ତି ହୁଏ, ଏହା ଏକ ଶେଷହୀନ ଜୀବନର ମହତ୍ତ୍ୱପୂର୍ଣ୍ଣ ଆରମ୍ଭ ମାତ୍ର । ପ୍ରକୃତରେ ବାବା ଶ୍ୟାମକୁ କହିଥିଲେ ଯେ ବିଗତ ୭୨ ଜନ୍ମଧରି ସେମାନେ ଏକତ୍ର ରହିଛନ୍ତି ।

ପ୍ରତ୍ୟେକ ଗୃହକର୍ତ୍ତା ଉପର ବର୍ଣ୍ଣିତ ଜଟିଳ ପ୍ରଶ୍ନସବୁର ଉତ୍ତର ଜାଣିବା ନିତାନ୍ତ ଆବଶ୍ୟକ । ଗୃହକର୍ତ୍ତା ଜାଣିଲେ ସେ ପରିବାରର ଅନ୍ୟମାନଙ୍କ ସଦାଚାର ପଥରେ ଆଗେଇ ନେଇପାରିବେ । ସାଇବାବାଙ୍କ ନିର୍ଦ୍ଦେଶାନୁଯାୟୀ ଆଧାତ୍ମିକ ଦାୟିତ୍ୱ ଗୃହସ୍ୱାମୀ ଗ୍ରହଣ କଲେ ପରିବାରର ଅନ୍ୟମାନେ ତାଙ୍କୁ ଆଦର୍ଶ ରୂପେ ଗ୍ରହଣ କରି ଅନୁସରଣ କରିବେ । ସାଇବାବା କହୁଥିଲେ, ''ମୋତେ ଦୁଇପଇସା ଦକ୍ଷିଣା ଦିଅ- ଶ୍ରଦ୍ଧା ଓ ସବୁରୀ । ନିଷ୍ଠା ଓ ଧୈର୍ଯ୍ୟ ଅତୀବ ମହତ୍ତ୍ୱପୂର୍ଣ୍ଣ; ମୁଁ ବର୍ତ୍ତମାନ ମୁକ୍ତି ସଂପର୍କରେ ମୋର ଭାବନା ବ୍ୟକ୍ତ କରିବି ।

ମୋ ମନରେ ଗୋଟିଏ ଜଟିଳ ପ୍ରଶ୍ନ ଆସେ । ମୋତେ କେମିତି ବିଚିତ୍ର ଲାଗେ ଯେ ଭଗବାନ ସାଇବାବା ରୂପରେ ଧରାରେ ଅବତାର ଗ୍ରହଣ କରିଥିଲେ ଏବଂ ଦୀର୍ଘ ଅଶୀବର୍ଷ ତାଙ୍କର ଭକ୍ତଙ୍କ ଗହଣରେ ସଂସାରର ଯାତନା ଭିତରେ ଜୀବନ କାଟିଥିଲେ । ମୋ ମନରେ ଯୁକ୍ତି ଆସେ ଯେ ଭଗବାନ ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା । ସେ ମଧ୍ୟ ଏହାର ପାଳନକର୍ତ୍ତା, ସେ ନିୟମର ପ୍ରବର୍ତ୍ତନ କରନ୍ତି ଏବଂ ତା'ର ପରିଚାଳନା ଦେଖନ୍ତି । ମୋର ବେଳେ ବେଳେ ମନେହୁଏ ଏ ଦୃଷ୍ଟିରୁ ଭଗବାନ ଚାହିଁଥିଲେ ମୁକ୍ତିର ସୁଗମ ପଥ ତିଆରି କରିପାରିଥାଆନ୍ତେ ।

ସାଇବାବା ଶହଶହ ଲୋକଙ୍କର ମିନତି ଶୁଣୁଥିଲେ । ଥରେ ସେ ଜି.ଏସ୍. ଖପରଡ୍ଡେଙ୍କୁ କହିଥିଲେ ଯେ ସେ ପ୍ରତି ମୁହୂର୍ତ୍ତରେ ହଜାର ହଜାର ଲୋକଙ୍କର ଆର୍ତ୍ତି ପ୍ରତି ସଚେତନ । ଏହା ଫଳରେ ତାଙ୍କର ଶରୀର ଦୁର୍ବଳ ହୋଇପାରେ, କିଂତୁ ସେ ଭକ୍ତମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ଓ ଶାନ୍ତି ପ୍ରଥମେ ଦେଖିବେ, ଦୂର ଅତୀତରେ ସେ କ୍ରୁଶବିଦ୍ଧ ହୋଇଛନ୍ତି । ତଥାପି ଏଥିପାଇଁ ତାଙ୍କର ଖାତିରି ନାହିଁ । ଭକ୍ତଗଣଙ୍କୁ ଆଶ୍ୱାସନା ଓ ଆଶୀର୍ବାଦ ଦେବାପାଇଁ ସେ ସଦା ଜାଗ୍ରତ ।

ଭଗବାନ ଭକ୍ତପାଇଁ କାହିଁକି କଷ୍ଟସ୍ୱୀକାର କରନ୍ତି ସେ କଥା ପ୍ରଥମେ ମୁଁ ବୁଝିପାରୁ ନଥିଲି । ମୋର ମନେହେଉଥିଲା ଭଗବାନ କଷ୍ଟ ନ କରି ନିଜର ଶକ୍ତିବଳରେ ମନୁଷ୍ୟର ସମସ୍ୟାର ସମାଧାନ କରିପାରନ୍ତେ । ତେବେ ସେ ଏହା କରୁ ନାହାନ୍ତି କାହିଁକି ? ଏ ପ୍ରଶ୍ନର ଉତ୍ତର ଅନ୍ୱେଷଣ କଲାବେଳେ ପରମପୂଜ୍ୟ ନରସିଂହ ସ୍ୱାମୀଜୀଙ୍କ ଲେଖାରେ ଏହାର ଉତ୍ତର ମିଳିଲା ।

ନରସିଂହ ସ୍ୱାମୀ ଲେଖିଥିଲେ ଯେ ବାବାଙ୍କ ଜୀବନର ମୂଳ ତତ୍ତ୍ୱ ହେଉଛି "ତ୍ୟାଗ ଓ ପ୍ରେମପୂର୍ଣ୍ଣ ସେବାର ଜୀବନ, ଅନ୍ୟ ପ୍ରକାର ଆସକ୍ତି ମୃତ୍ୟୁ ସହିତ ସମାନ ।" ବାବାଙ୍କର ଏହି ଆଦର୍ଶ ପ୍ରତି ଆମର ଆନୁଗତ୍ୟ ରହିବା ଦରକାର । ତା'ହେଲେ ଆମର ବ୍ୟକ୍ତିଗତ ଓ ଗୋଷ୍ଠୀଗତ ଲକ୍ଷ୍ୟ ପୂରଣ ହେବ । ବାବା ନିଜେ କହୁଥିଲେ "ପାଇବା ପାଇଁ ତୁମେ ନିଜକୁ ଯୋଗ୍ୟ କରିପାରିଲେ ନିଶ୍ଚୟ ପାଇବ ।"

ଅତୀତର ମୋ ମନର ପ୍ରଶ୍ନ ବର୍ତ୍ତମାନ ବହୁଭାବରେ ସମାଧାନ ହେଇଛି । ମୁକ୍ତିଲାଭ ପାଇଁ ବାବାଙ୍କର ଯୋଜନା ସଂପର୍କରେ ଅଧିକ ସ୍ୱଷ୍ଟ ଧାରଣା ଆସିଛି । ମୋର ମନେହୁଏ ଏପରି ଧାରଣାଟି ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । ସାଇଦର୍ଶନର ଏହା ମୌଳିକ ଭାବନା । ମୁଁ ସେ ମୁକ୍ତିର ସାଇମାର୍ଗ ସଂପର୍କରେ ଜଣାଉଛି । ସାଇବାବା ନିଜେ

କାହିଁକି ନିଜର ପାର୍ଥିବ ଶରୀର ଛାଡ଼ିଲେ ସେ ବିଷୟରେ ମୋର ଚିନ୍ତା ବ୍ୟକ୍ତ କରୁଛି । ସାଇ ସଦ୍‌ଚରିତ ପାଠକଲେ ସାଇଙ୍କ ସ୍ୱଭାବ ଜାଣିହୁଏ । ସର୍ବମୟ ଭଗବାନ ଦୁଇଟି ବିଶିଷ୍ଟ ନୀତିଦ୍ୱାରା ନିଜକୁ ପ୍ରକାଶ କରନ୍ତି । ସେ ଦୁଇଟି ହେଲା ତାଙ୍କର ପ୍ରେମ ଓ ତାଙ୍କର ନ୍ୟାୟଭାବ । ଭଗବାନ କହୁଥିଲେ ସବୁକ୍ରିୟାରେ ଏ ଦୁଇଟିର ପ୍ରତିଫଳିତ । କୌଣସି କର୍ମ ଏ ଦୁଇ ନୀତିରୁ ବିଚ୍ୟୁତ ନୁହେଁ ।

ମନୁଷ୍ୟକୁ ସୃଷ୍ଟିକରିବା ସମୟରେ ଭଗବାନଙ୍କଠାରେ ପ୍ରେମ ଓ ନ୍ୟାୟଭାବ ସ୍ପଷ୍ଟ । ଅବଶ୍ୟ ସେ ଚାହିଁଥିଲେ ଆମକୁ ଏପରି ତିଆରି କରିପାରିଥାନ୍ତେ ଯେ ଆମେ ସଦାସର୍ବଦା ତାଙ୍କୁ ଭଲପାଇଥାନ୍ତୁ ଏବଂ ତାଙ୍କର ଆଦେଶ ମାନିଥାଆନ୍ତୁ । ସେ ଚାହିଁଥିଲେ ଆମକୁ ଯନ୍ତ୍ରବଦ୍ ବୈଦ୍ୟୁତିକ ମାନବ କିମ୍ବା କୁଣ୍ଢେଇ କରିପାରିଥାଆନ୍ତେ । ପଶୁପକ୍ଷୀଙ୍କର ସୃଷ୍ଟି ଏପରି ଭାବରେ ହେଲା । ସହଜାତ ପ୍ରବୃତ୍ତି ପ୍ରେରିତ ହୋଇ ପକ୍ଷୀ ବସା ନିର୍ମାଣ କରେ ଏବଂ ବାଘ ମୃଗର ଶିକାର କରି ଖାଏ । ସେମାନଙ୍କର ସ୍ୱାଧୀନତାର ପରିସର କମ୍ । ନିର୍ଦ୍ଧାରିତ ଭାବ୍‌ରେ ମୋର ପୋଷା କୁକୁର କେତେକ ଖେଳ ଦେଖାଇଯାଏ । ଘରର ଦ୍ୱାରର ଘଣ୍ଟି ବାଜିଲେ ସେ ନ ଭୁକି ରହିପାରେ ନାହିଁ । ଖାଦ୍ୟ ଦିଆଗଲେ ସେ ଏପରି ଭାବରେ ଖାଇବାକୁ ଆରମ୍ଭ କରେ ଯେ ତାକୁ ଦେଖିଲେ ବୋଧହୁଏ ମନେହୁଏ ସେ ଆଉ କେବେ ଖାଦ୍ୟ ପାଇବ ନାହିଁ । ପ୍ରବୃତ୍ତିର ବଂଧନ ମଧ୍ୟରେ ବାନ୍ଧିଦେଇ ପଶୁପକ୍ଷୀଙ୍କୁ କମ୍ ସ୍ୱାଧୀନତା ଭଗବାନ ଦେଇଛନ୍ତି କିନ୍ତୁ ପ୍ରଭୁ ସାଇନାଥ ମନୁଷ୍ୟର ବ୍ୟବହାରକୁ ପ୍ରବୃତ୍ତିର ବଂଧନ ମଧ୍ୟରେ ବାନ୍ଧି ନ ଦେଇ ଶିକ୍ଷା କରିବାର ଯଥେଷ୍ଟ ସ୍ୱାଧୀନତା ଦେଇଛନ୍ତି । ସେଇଥିପାଇଁ ନବଜାତ ଶିଶୁ ସବୁଠାରୁ ଅଧିକ ଅସହାୟ । ନିଜ ପାଇଁ ନନଜନ୍ମିତ ମାନବ ଶିଶୁଙ୍କୁ ଅନ୍ୟମାନଙ୍କ ଉପରେ ନିର୍ଭର କରିବାକୁ ହୁଏ । ଅନ୍ୟ ପ୍ରାଣୀର ଶିଶୁମାନେ ନିଜ କଥା କିଛି କିଛି ବୁଝିନିଅନ୍ତି । ତଥାପି ମାନବ ଶିଶୁ ଶିକ୍ଷା ଆରମ୍ଭ କରିବା ପରଠାରୁ ଧୀରେ ଧୀରେ ଅନ୍ୟ ପ୍ରାଣୀମାନଙ୍କର ତୁଳନାରେ ଅଧିକ ଆଗେଇଯାଏ । ଏ ହେଉଛି ମାନବୀୟ ଗୁଣ ।

ସୁତରାଂ ପ୍ରଭୁ ସାଇନାଥ ମନୁଷ୍ୟକୁ ସ୍ୱାଧୀନତା ଦେବା ମାଧ୍ୟମରେ ଆମର ଈଶ୍ୱର ପ୍ରୀତିକୁ ଅର୍ଥପୂର୍ଣ୍ଣ କରିଛନ୍ତି । ସେ ଆମଠାରୁ ପ୍ରୀତି ଆଶା କରନ୍ତି କିନ୍ତୁ ଦାବି କରନ୍ତି ନାହିଁ । ଅବଶ୍ୟ ସେ ଆମକୁ ସ୍ୱାଧୀନତା ଦେବା ମୁହୂର୍ତ୍ତରୁ ଆମର ପାପପାଇଁ ମଧ୍ୟ ସମ୍ଭାବନା ସୃଷ୍ଟି କଲେ । ସାଇବାବା ବାରମ୍ବାର କହିଛନ୍ତି ଯେ ଆମ୍ଭେମାନେ ପରସ୍ପର ମଧ୍ୟରେ କଳହ କଲେ ଏବଂ ପରସ୍ପରକୁ ଆଘାତ ଦେଲେ ବାବା ମର୍ମାହତ

ହେବେ । ଅନ୍ୟପକ୍ଷରେ ଆମେ ଅନ୍ୟର ଦୋଷତ୍ରୁଟି ସହ୍ୟକରି ସଂଯମ ଦେଖାଇଲେ ବାବା ଆନନ୍ଦିତ ହେବେ । ବାବାଙ୍କର ଦ୍ୱାରକାମୟୀ ମସ୍‌ଜିଦ୍‌ରେ ହିନ୍ଦୁ, ଖ୍ରୀଷ୍ଟିଆନ, ମୁସ୍‌ଲିମ୍ ଏବଂ ପାର୍ସିମାନେ ଏକତ୍ର ଠିଆହୋଇ ବାବାଙ୍କୁ ପ୍ରଣତି ଜଣାଉଥିଲେ । ପରସ୍ପରର କ୍ଷତି କରିବା ପରିବର୍ତ୍ତେ ସେମାନେ ପରସ୍ପରର ମନ୍ଦିର, ମସ୍‌ଜିଦ୍, ଗୀର୍ଜା ଓ ଅନ୍ୟାନ୍ୟ ଧର୍ମପୀଠ ନିର୍ମାଣ କରୁଥିଲେ । ଅନ୍ୟର ଉତ୍ସବରେ ଯୋଗଦାନ କରୁଥିଲେ । ହିନ୍ଦୁମାନେ ଜରାଜୀର୍ଣ୍ଣ ମସ୍‌ଜିଦ୍‌ର ମରାମତି କାର୍ଯ୍ୟ କରୁଥିଲେ । ଉପାସନୀ ବାବା ନାମରେ ବାବାଙ୍କର ଜଣେ ବ୍ରାହ୍ମଣ ଭକ୍ତ ନିଜ ମନ୍ଦିର ପାଖରେ ମସ୍‌ଜିଦ୍‌ର ପୁନର୍ନିର୍ମାଣରେ ସାହାଯ୍ୟ କରିଥିଲେ । ମୁସ୍‌ଲିମ୍ ଭକ୍ତମାନେ ଯେଉଁ ମସ୍‌ଜିଦ୍‌ରେ 'ଇଦ୍' ପର୍ବ ପାଳନ କରୁଥିଲେ ହିନ୍ଦୁମାନଙ୍କର ପୂଜାର ସମୟ ହେଲେ ସେହି ମସ୍‌ଜିଦ୍‌ରେ ମୁସଲ୍‌ମାନମାନେ ବାଜା ବଜାଇ ସେମାନଙ୍କ ହିନ୍ଦୁଭାଇମାନଙ୍କୁ ସାହାଯ୍ୟ କରୁଥିଲେ ।

ସବୁରୀ ବା ଧୈର୍ଯ୍ୟ ଉପରେ ବାବାଙ୍କର ଗୁରୁତ୍ୱ ଆରୋପ ସତ୍ତ୍ୱେ ଆମେ ବହୁ ସମୟରେ ଶାନ୍ତଭାବ ରକ୍ଷା କରିବାରେ ବିଫଳ ହେଉ । ପରସ୍ପର ସହିତ ବାଦବିସମ୍ବାଦରେ ଜଡ଼ିତ ହୋଇପଡୁ । ଆମ ଜୀବନରେ ବାବାଙ୍କର ଉପଦେଶ ଓ ଆମର ପ୍ରବୃତ୍ତି ପରସ୍ପରର ବିରୋଧାଚରଣ କରନ୍ତି । ତଥାପି ଭକ୍ତ ପାଇଁ ବାବାଙ୍କର କ୍ଷମତାଶୀଳତା ଅପରିସୀମ, ସେ ତାଙ୍କର ଅବୋଧ ଶିଶୁମାନଙ୍କୁ କ୍ଷମା କରନ୍ତି । ବାଇବେଲ୍‌ରେ କୁହାଯାଇଛି – ''ପିତା ସନ୍ତାନଙ୍କୁ କ୍ଷମାକଲାପରି ପ୍ରଭୁ ତାଙ୍କୁ ଭୟ କରୁଥିବା ସନ୍ତାନମାନଙ୍କୁ କ୍ଷମା କରନ୍ତି ।''

ମୁଁ ମୋର ବ୍ୟକ୍ତିଗତ ଜୀବନର ଘଟଣା ମନେପକାଇ ଏହା ସ୍ୱୀକାର କରୁଛି । ମୁଁ ନିଜେ ଜାଣେ ଯେ ମୋର ପିଲାମାନେ ଦୋଷ କଲେ ମୁଁ ସେମାନଙ୍କୁ କ୍ଷମାଦିଏ । କ୍ଷମାଦେବା ମୋର ସ୍ୱଭାବ ସୁଲଭ ଗୁଣ ।

ଆମ ଚିନ୍ତା ଓ ଚେତନାର ଖୁବ୍ ପାର୍ଶ୍ୱରେ ସାଇନାଥ ରହିଛନ୍ତି । ଆମ ଜୀବନର ପ୍ରତି ମୁହୂର୍ତ୍ତରେ ତାଙ୍କର ନିର୍ଘୋଷଣ ସତ ହୁଏ – ''ତୁମେ ଯେଉଁଠାରେ ଥାଅନା କାହିଁକି, ତୁମେ ସବୁବେଳେ ମନେରଖିବ ଯେ ତୁମେ ଯାହା କରୁଛ ବା କହୁଛ, ସେ ବିଷୟରେ ମୁଁ ସବୁ ଜାଣୁଛି ।''

ବାବାଙ୍କର ଆମ ପ୍ରତି ଗଭୀର ପ୍ରେମ ସତ୍ତ୍ୱେ ତାଙ୍କର ନ୍ୟାୟଭାବ ଚାହେଁ ଯେ ଆମେ ଆଜ୍ଞାଧୀନ ରହୁ । ଆଜ୍ଞାର ଅବମାନନା ହେଲେ ଆମର ଅନୁତାପ ଓ

ଶାସ୍ତି ଦରକାର, ଏଇଠି ରହିଛି ବିରୋଧାଭାସ । ପ୍ରେମର ସ୍ୱରୂପ ହିସାବରେ ସେ ସ୍ୱାଧୀନତା ଦିଅନ୍ତି, ପୁଣି ନ୍ୟାୟଭାବର ଆଧାର ରୂପେ ସେ ନିୟମାନୁବର୍ତ୍ତିତା ଚାହାନ୍ତି । ଆମେ ସବୁ ପାପପୂର୍ଣ୍ଣ ଜୀବନ ଯାପନ କଲେ ସେ ନ୍ୟାୟଭାବର ପ୍ରତିଷ୍ଠା ପାଇଁ ସବୁ ସଂହାର କରିବସିଲେ ତାଙ୍କର ଆମ ପ୍ରତି ପ୍ରେମ ବ୍ୟାହତ ହେବ । ପୁଣି ସେ ଆମର ସବୁ ପାପ ପ୍ରତି ଆଖି ବୁଜିଦେଲେ ନ୍ୟାୟଭାବ ବିଲୁପ୍ତ ହେବ । ତେଣୁ ଦୁଇଟି ମଧ୍ୟରେ ସମନ୍ୱୟ ଦରକାର ।

ଏ ଦ୍ୱନ୍ଦ୍ୱର ସମାଧାନ ପାଇଁ ବାବା ଏକ ସୁନ୍ଦର ସମାଧାନର ପନ୍ଥା ନିର୍ଦ୍ଦେଶ କରିଛନ୍ତି । ସେ କହିଛନ୍ତି – ''ଅନ୍ୟଠାରୁ ମନ୍ତ୍ର ବା ଉପଦେଶର ବିଶେଷ ଆବଶ୍ୟକତା ନାହିଁ । ସକଳ ଚିନ୍ତା ଓ କର୍ମର ଏକମାତ୍ର କେନ୍ଦ୍ରବିନ୍ଦୁ ହିସାବରେ ମୋତେ ଗ୍ରହଣ କର । ନିଶ୍ଚିତ ଭାବରେ ପରମାର୍ଥର ଉପଲବ୍ଧି ଘଟିବ । ମୋ ଆଡ଼କୁ ସଂପୂର୍ଣ୍ଣ ଭାବରେ ଚାହଁ । ସେହିପରି ଭାବରେ ମୁଁ ତୁମ ଆଡ଼କୁ ଚାହିଁବି ।'' ବାବାଙ୍କ ମହାସମାଧିର ବହୁବର୍ଷ ପରେ କାକା ସାହେବ ଦୀକ୍ଷିତଙ୍କ ମନରେ ସନ୍ଦେହ ଆସିଥିଲା ଯେ ସେ ଭକ୍ତ ଗହଣରେ ସ୍ଥାନ ପାଇଛନ୍ତି କି ନାହିଁ । ସ୍ୱପ୍ନରେ ଦେଖାଦେଇ ଏ ସନ୍ଦେହ ଦୂରକରି ବାବା ସୂଚନା ଦେଇଥିଲେ – ''ଗୁରୁକରି ପାଦପୂଜା କିମ୍ବା ତାଙ୍କ ପ୍ରତି ସଶ୍ରଦ୍ଧ ପ୍ରଣତି ହିଁ ଏ କ୍ଷେତ୍ରରେ ଯଥେଷ୍ଟ ।''

ମୁକ୍ତିର ଏ ପଥ ଅନୁମାନ ଓ ତର୍କ ଉପରେ ପ୍ରତିଷ୍ଠିତ ନୁହେଁ । ସାଇବାଣୀର ପ୍ରକୃତ ଅର୍ଥ କରିବସିଲେ ମୁକ୍ତିର ଏପରି ସାଇମାର୍ଗ ସ୍ପଷ୍ଟ ହୁଏ ।

ଏହି ସାଇମାର୍ଗ ମଧ୍ୟ ଆମକୁ ଭଲରୂପେ ବୁଝାଇଦିଏ ଯେ ଭଗବାନ କାହିଁକି ସାଇରୂପରେ ଅବତୀର୍ଣ୍ଣ ହୋଇଥିଲେ । ଏ କଥା ମଧ୍ୟ ସ୍ପଷ୍ଟ ହୁଏ ସେ କାହିଁକି ତାତିଆ ପଟିଲ୍ ସହିତ ନିଜ ଜୀବନର ବିନିମୟ କରିଥିଲେ । ପ୍ରେମ ଓ ନ୍ୟାୟ ମଧ୍ୟରେ ସମନ୍ୱୟ ରକ୍ଷା କରିବା ପ୍ରକ୍ରିୟାରେ କିଛି ହରାଇବାକୁ ହୁଏ । ଏ କଥା ମଧ୍ୟ ପ୍ରମାଣିତ ହୁଏ ଯେ ଆମେ ''ସାଇ ସାଇ'' କହି ଆମର ବାଚନିକ ଓ ଶ୍ରବଣଗତ ପାପ ଆମେ ଧୋଇପାରିବୁ । ସାଇବାବା କହୁଥିଲେ – ''ସାଇ ସାଇ'' କହି ସରଳ ଭାବରେ ମୋର ନାମସ୍ମରଣ କର ସକଳ ପାପ ଦୂର ହେବ ।

ବର୍ତ୍ତମାନ ପ୍ରଶ୍ନ ହେଉଛି ଏହି ସାଇମାର୍ଗ ଆମେ ଅନୁସରଣ କରିବୁ କିପରି ? ୧୯୩୬ ମସିହାରେ ପ୍ରଫେସର ଜି.ଜି. ନାର୍କେ କହିଥିଲେ – ''ସାଇବାବା ଏବେ ମଧ୍ୟ ରକ୍ତମାଂସର ଶରୀର ନେଇଅଛନ୍ତି । ଅତୀତରେ ଯେ ଯେପରି ରକ୍ତମାଂସର

ଶରୀର ଧାରଣ କରିଥିଲେ, ବର୍ତ୍ତମାନ ମଧ୍ୟ ସେପରି ଅଛନ୍ତି ।'' ସାଇବାବା ଅପରିବର୍ତ୍ତିତ, ସେ ଅତୀତରେ ଥିଲେ, ଏବେ ଅଛନ୍ତି ଏବଂ ଭବିଷ୍ୟତରେ ମଧ୍ୟ ଆମ ଗହଣରେ ରହିବେ । ବାଇବେଲ କହିଥିଲେ ଯେ – ''ପ୍ରଭୁଙ୍କ ନାମସ୍ମରଣ କରୁଥିବା ପ୍ରତ୍ୟେକ ବ୍ୟକ୍ତି ମୁକ୍ତିର ଉପଲବ୍ଧି ପାଇବେ ।''

ମୁଁ ସାଇଦର୍ଶନକୁ ଯେପରି ଭାବରେ ବୁଝିଛି, ମୋର ମନେହୁଏ ଆଉ ଗୋଟିଏ ଦାୟିତ୍ୱର ଆବଶ୍ୟକତା ରହିଛି । ଆପଣମାନଙ୍କ ମଧ୍ୟରୁ କେହି କ'ଣ ଅଛନ୍ତି ଯେ ସେ ମନେକରନ୍ତି କେବଳ ଈଶ୍ୱର ବିଶ୍ୱାସ ହିଁ ଯଥେଷ୍ଟ ? ଆପଣମାନେ ମନେପକାଇ ପାରନ୍ତି ଯେ ଅସୁରମାନଙ୍କର ଏ ବିଶ୍ୱାସ ଯେତେବେଳେ ପ୍ରବଳ ହେଲା ସେମାନେ ସବୁ ଭୟରେ ଥରିବାକୁ ଲାଗିଲେ । ମୋର ମନେହୁଏ ଭଗବାନ ଯାହା ଚାହୁଁଛନ୍ତି ତାହା ନ କଲେ କେବଳ ବିଶ୍ୱାସ ଫଳପ୍ରଦ ହେବନାହିଁ । ଉତ୍ତମ କର୍ମଉପରେ ପ୍ରତିଷ୍ଠିତ ନ ଥିବା ବିଶ୍ୱାସ ପ୍ରକୃତ ବିଶ୍ୱାସ ନୁହେଁ । ସୁତରାଂ ଅନ୍ୟକିଛି ଉପାଦାନର ଆବଶ୍ୟକତା ରହିଛି । ଯଦିଓ ଆପଣମାନେ ନିଜ କର୍ମପନ୍ଥାର ଅନୁସରଣ କରି ମୁକ୍ତିଲାଭ କରିପାରିବେ, ତଥାପି ମୁକ୍ତିର ଯୋଗ୍ୟ ହେଲାଭଳି ଭଲ କାର୍ଯ୍ୟ କରିବା ସହଜ ନୁହେଁ, ମୁକ୍ତିଲାଭ ପ୍ରକ୍ରିୟାରେ 'ଅନୁତାପ' ମଧ୍ୟ ଆବଶ୍ୟକ ।

ଅନେକ ସମୟରେ ଅନୁତାପ ଶବ୍ଦର ଭୁଲ୍ ଅର୍ଥ କରାଯାଏ । ପ୍ରକୃତରେ ଏହାର ଅର୍ଥ କ'ଣ ? ସାଇ ସତ୍‌ଚରିତର ଅଠଚାଳିଶ ଅଧ୍ୟାୟରେ ବର୍ଣ୍ଣିତ ସପନେକର୍‌ଙ୍କ କଥାରେ ଅନୁତାପର ପ୍ରକୃତ ଅର୍ଥ ପ୍ରତିଫଳିତ । ଅନୁତାପର ତିନୋଟି ସ୍ତର ଅଛି । ପ୍ରଥମ ସ୍ତରଟି ହେଉଛି ବିଶ୍ୱାସର ସ୍ୱର । ଦ୍ୱିତୀୟରେ ଭଲ କାର୍ଯ୍ୟ କରିବା ପୂର୍ବରୁ ଭଲ କାର୍ଯ୍ୟ କ'ଣ, ତାହା ଜାଣିବାକୁ ହେବ । ସେହିପରି ଖରାପ କାର୍ଯ୍ୟରୁ ଦୂରରେ ରହିବା ପାଇଁ, ଖରାପ କାର୍ଯ୍ୟ କ'ଣ ବୋଲି ଜାଣିବାକୁ ହେବ । ଅନୁତାପର ତୃତୀୟ ସ୍ତରରେ ନିଜର ହୃଦ୍‌ବୋଧ ହେବା ଉଚିତ ଯେ ଭଗବାନଙ୍କ ଆଗରେ ଆପଣ ଦୋଷୀ । ସପନେକର୍ ମସ୍‌ଜିଦ୍‌କୁ ଯାଇ ବାବାଙ୍କ ପାଦତଳେ ମୁଣ୍ଡ ଲଗାଇଲାବେଳେ ସେ ନିଜର ପାପ ସଂପର୍କରେ ସଚେତନ ନଥିଲା । ତା' ହୃଦୟର ପ୍ରକୃତ ଅନୁଭବ ନଥିଲା । ସୁତରାଂ ବାବା ତାକୁ ଗାଳିଦେଇ କହିଲେ 'ବାହରିଯାଅ' ।

ଅନୁତାପର ପ୍ରକୃତ ଉତ୍ସ କେଉଁଠି ? ''ତୁମେ ମୋତେ ଚାହଁ, ମୁଁ ତୁମକୁ ଚାହିଁବି'' – ଏହି ଶିକ୍ଷାର ଉପଲବ୍ଧି ମଧ୍ୟରେ ହିଁ ଅନୁତାପ ଆସିଥାଏ । ଭଗବାନ ସାଇନାଥଙ୍କ ସହିତ ଏହି ସଂପର୍କ ଗଭୀର ହେବାର କଥା । ସାଇନାଥଙ୍କୁ ଜୀବନର

କେନ୍ଦ୍ରବିନ୍ଦୁ କରି ହିଁ ଜୀବନକୁ ପରିଚାଳନା କରିବାକୁ ହେବ ଏବଂ ସେହି ଅନୁସାରେ ବ୍ୟବହାରସବୁର ପରିବର୍ତ୍ତନ ଘଟାଇବାକୁ ହେବ । ସ୍ଥୂଳତଃ, ଅନୁତାପରେ ବିଶ୍ୱାସ, ଠିକ୍ ଭୁଲ୍‌ର ଜ୍ଞାନ ଏବଂ ସଂଶୋଧନ ପାଇଁ ତୀବ୍ର ଇଚ୍ଛା ଅଂଗୀଭୂତ । ଆମେ ସମସ୍ତେ ଜାଣୁ ଯେ ସଦ୍‌ଚରିତରେ ବର୍ଣ୍ଣିତ ସପନ୍‌େକର୍ ବାବାଙ୍କର ଆଶୀର୍ବାଦ ପାଇଲା ପରେ ହିଁ ପ୍ରକୃତ ଅନୁତାପର ଉପଲବ୍ଧି ପାଇଥିଲେ ଏବଂ ତା'ପରେ ସଫଳ ଜୀବନ ଯାପନ କରିବାକୁ ସମର୍ଥ ହୋଇଥିଲେ ।

ମୁଁ ଭାବୁଛି ଯେ ସାଇବାବାଙ୍କୁ ନିଜ ଜୀବନର ସାରଥି ରୂପେ ଗ୍ରହଣ କରିନେବା ସଂପର୍କରେ ମୁଁ ଯାହା କହୁଛି ତାହାକୁ ଅଧିକ ବୁଝାଇବା ଦିଗରେ ମୁଁ ପରାମର୍ଶ ଦେଉଥିବା ପ୍ରାର୍ଥନାଟି ସହାୟକ ହେବ । ମୁଁ ସେ ପ୍ରାର୍ଥନାଟିକୁ ଏହିପରି ଭାବରେ ପ୍ରକାଶ କରିବି ।

''ପ୍ରଭୁ ସାଇନାଥ ! ମୋର ପ୍ରେମ ଓ ମୋ ନିଜ ବ୍ୟତୀତ ଅର୍ପଣ କରିବା ପାଇଁ ମୋ ପାଖରେ କିଛି ମୂଲ୍ୟବାନ ବସ୍ତୁ ନାହିଁ । ମୁଁ ତୁମକୁ ମୋ ଜୀବନର ନିୟାମକ ରୂପ ଗ୍ରହଣ କରୁଛି । ତୁମକୁ ମାନି ତୁମର ଅନୁସରଣ କରିବା ପାଇଁ ଚାହୁଁଛି । ମୋର ଅତୀତ ଓ ଭବିଷ୍ୟତ ତୁମର । ମୋର ପରିବାର, ପାର୍ଥିବ ସଂପତ୍ତି ଓ ସବୁକିଛି ମଧ୍ୟ ତୁମର । ମୋର କୌଣସି ଅଧିକାର ନାହିଁ । ତୁମେ ମୋତେ ପ୍ରେମ ଦେଇଛ, କ୍ଷମା ଦେଇଛ ଏବଂ ନିଜର କରିଛ । ଏଥିପାଇଁ ସର୍ବତୋଭାବେ ମୁଁ ପ୍ରଣିପାତ ଜଣାଉଛି ।''

(ମୂଳ ରଚନାଟି ଶ୍ରୀ ସାଇଲୀଳା ପତ୍ରିକା, ୧୯୯୬ର ସେପ୍ଟେମ୍ବର-ଅକ୍ଟୋବର ସଂଖ୍ୟାରେ ପ୍ରକାଶିତ)



# ଦିବ୍ୟମୁହୂର୍ତ୍ତରୁ ଦିବ୍ୟ ଜୀବନ

ମନୁଷ୍ୟକୁ ଦିବ୍ୟତ୍ୱର ଅନୁଭବ ଦେବା ପାଇଁ ଅବତାର ପୁରୁଷମାନେ ଧରାପୃଷ୍ଠକୁ ଆସିଥାନ୍ତି । ଦିବ୍ୟ ସଂସର୍ଗ ଓ ଦିବ୍ୟ ଉପଦେଶ ମାଧ୍ୟମରେ ସେମାନେ ମନୁଷ୍ୟକୁ ଆତ୍ମୋପଲବ୍ଧିର ମାର୍ଗ ଦର୍ଶାନ୍ତି । ଶିରିଡ଼ିର ପରମାରାଧ୍ୟ ସାଇବାବାଙ୍କ ସମେତ ସବୁ ଅବତାର ପୁରୁଷମାନେ ଚାହିଁଛନ୍ତି ମନୁଷ୍ୟର ପ୍ରତିଟି ମୁହୂର୍ତ୍ତ ଦିବ୍ୟତ୍ୱରେ ପରିପୂର୍ଣ୍ଣ ହେଉ । ମନୁଷ୍ୟ ଜୀବନର ମାସ, ବର୍ଷ ଓ ସାରା ଜୀବନ ଦିବ୍ୟତ୍ୱରେ ଭରିଯାଉ । ଈଶ୍ୱରଙ୍କ କୃପା ଓ ବ୍ୟକ୍ତିର ସାଧନା ଫଳରେ କେତେକଙ୍କ ଜୀବନରେ ଏହା ସଫଳ ହୋଇଛି । ଅନ୍ୟମାନଙ୍କ କ୍ଷେତ୍ରରେ ଏହା ଏକ ଅନତିକ୍ରମ୍ୟ ଲକ୍ଷ୍ୟ ହୋଇ ରହିଯାଇଛି ।

ମନୁଷ୍ୟ ଶାସ୍ତ୍ର ପୁରାଣ ପଢୁଥିବା ସମୟରେ ମନେକରେ ଯେ ସଂସାର ଅନିତ୍ୟ, ସକଳ ଅସାରତା ମଧ୍ୟରେ ଈଶ୍ୱର ହିଁ ଏକମାତ୍ର ସାରକଥା । ସେହିପରି ସତ୍‌ସଙ୍ଗରେ ଥିବା ସମୟରେ ସେ ଅନୁଭବ କରେ ଯେ ଜଗତର ସମସ୍ତ କୋଳାହଳ ମଧ୍ୟରେ ଭଗବାନଙ୍କ ନାମ ହିଁ ମଧୁର ମୂର୍ଚ୍ଛନା । ସବୁପ୍ରକାର ବିଷାକ୍ତ ବାତାବରଣ ମଧ୍ୟରେ ଈଶ୍ୱର ଚିନ୍ତା ହିଁ ଅମୃତର ଧାରା । ମାତ୍ର ଶାସ୍ତ୍ରପୁରାଣ ପାଖରୁ ଉଠି ଟିକିଏ ଦୂରକୁ ଚାଲଇଗଲେ କିମ୍ବା ସତ୍‌ସଙ୍ଗରେ ସମାପ୍ତି ପରେ ଜାଗତିକ କାମରେ ଲାଗିଗଲେ ଏପରି ସଦ୍‌ଭାବନା ଦୁର୍ବଳ ହୋଇପଡ଼େ । ଅଧିକାଂଶ ବ୍ୟକ୍ତିଙ୍କ କ୍ଷେତ୍ରରେ ଦିବ୍ୟ ସନ୍ଦେଶ ଓ ଦୈନନ୍ଦିନ ଜୀବନ ମଧ୍ୟରେ କୌଣସି ସଂଯୋଗ ରହେନାହିଁ । ଅନେକ ସମୟରେ ହୁଏତ ନୀତି ଉପଦେଶର ବିରୁଦ୍ଧ କାର୍ଯ୍ୟସବୁ କରିବାରେ ଦ୍ୱିଧା ରହେ ନାହିଁ ।

ଉପଦେଶ ଓ ଦୈନନ୍ଦିନ ଜୀବନ ମଧ୍ୟରେ କାହିଁକି ସଂଗତି ରହୁନାହିଁ, ଏ ପ୍ରଶ୍ନ ଯେ ମନରେ ଉଠେ ନାହିଁ ସେ କଥା ନୁହେଁ । ବହୁତ ଲୋକଙ୍କ ମନରେ ଏପରି ପ୍ରଶ୍ନ ଉଠେ । ମାତ୍ର ଅଧିକାଂଶ ଲୋକ ସେ ପ୍ରଶ୍ନର ନିଜ ତିଆରି ଉତ୍ତର ଦେଇ ସନ୍ତୁଷ୍ଟ ରହନ୍ତି । ବିଶିଷ୍ଟ ମନୋବିଜ୍ଞାନୀ ଫ୍ରଏଡ୍ ଥରେ କହିଥିଲେ ମନୁଷ୍ୟ ହେତୁବାଦୀ (Rational) ପ୍ରାଣୀ ନୁହେଁ, ସେ ଯୁକ୍ତିବାଦୀ (Rationalizing) ପ୍ରାଣୀ । ହେତୁବାଦୀ ପ୍ରାଣୀ ପ୍ରଥମେ ଯୁକ୍ତିଯୁକ୍ତ କାରଣ ଠିକ୍ କଲାପରେ ସେ ଠିକ୍ ପଦକ୍ଷେପଟି ଗ୍ରହଣ

କରେ । ଅନ୍ୟପକ୍ଷରେ ଯୁକ୍ତିବାଦୀ ମନୁଷ୍ୟ ପ୍ରଥମେ ନିଜକୁ ଖୁସି କଲାପରି ପଦକ୍ଷେପଟିଏ ନିଏ ଏବଂ ପରେ ଏ ପଦକ୍ଷେପଟି ସବୁଠାରୁ ଭଲବୋଲି ଯୁକ୍ତି ପ୍ରସ୍ତୁତ କରେ ।

ଠିକ୍‌ସେହିପରି ଭଲ ଉପଦେଶ ସବୁ ଆଚରଣରେ ପରିଣତ କରିପାରୁ ନଥିବା ଲୋକମାନେ ବିଭିନ୍ନ ପ୍ରକାର ତଥାକଥିତ କାରଣର ଦ୍ୱାହି ନିଜ ପାଖରେ ଦିଅନ୍ତି । ଘରସଂସାରର ଚାପ, ପୁତ୍ରକନ୍ୟାଙ୍କ ଶିକ୍ଷା ବ୍ୟବସ୍ଥା, ଉଚ୍ଚ କର୍ତ୍ତୃପକ୍ଷଙ୍କ ଅସହଯୋଗୀ ମନୋଭାବ ଇତ୍ୟାଦିର ଦୀର୍ଘ ତାଲିକା ଦେଇ ନିଜର ଅସାମର୍ଥ୍ୟ କେତେ ଯୁକ୍ତିଯୁକ୍ତ ତାହା ଦର୍ଶାନ୍ତି । ପ୍ରତିବଂଧକସବୁକୁ ବଡ଼ ବଡ଼ ରୂପ ଦେଇ ରଙ୍ଗୀନ୍ ବେଶଭୂଷାରେ ସଜାଇ ନିଜର ଅସମାର୍ଥ୍ୟ ଲୁଚାଇ ରହନ୍ତି । ଫଳରେ ସଦ୍‌ଗ୍ରନ୍ଥ ପାଠ କିମ୍ବା ସତ୍‌ସଙ୍ଗଜନିତ ଦିବ୍ୟ ମୁହୂର୍ତ୍ତ ପ୍ରସାରିତ ନ ହୋଇ ଦୁର୍ବଳ ହୋଇପଡ଼େ ।

ଏହା ନିଶ୍ଚିତ ଭାବରେ ସତ୍ୟ ଯେ ଦିବ୍ୟ ମୁହୂର୍ତ୍ତକୁ ଦୀର୍ଘସ୍ଥାୟୀ ଓ ନିରବଚ୍ଛିନ୍ନ ରୂପ ଦେବା ପାଇଁ ବ୍ୟକ୍ତିର ଆକୁଳ ପ୍ରାର୍ଥନା ଓ ଈଶ୍ୱରଙ୍କ ଆଶିଷ ନିତାନ୍ତ ଦରକାର । ଭଗବାନଙ୍କ କୃପା ବ୍ୟତିରେକ ଜୀବନକୁ ସାଧନାମୟ କରିବା ଅସମ୍ଭବ । ତଥାପି ପ୍ରଭୁକୃପା ଲାଭ ପାଇଁ କେତେକ ମାନବୀୟ ଉଦ୍ୟମର ଆବଶ୍ୟକତା ରହିଛି । ଅଳ୍ପ କେତୋଟି ପ୍ରୟୋଜନୀୟ ମାନବୀୟ ଉଦ୍ୟମର ଅବତାରଣା ଏଠାରେ କରାଯାଇପାରେ ।

ମନୁଷ୍ୟ ଯେଉଁସବୁ କର୍ମରେ ପ୍ରବୃତ୍ତ ହୁଏ ତାହା କେତୋଟି ଉପାଦାନ ଉପରେ ନିର୍ଭର କରେ । ପ୍ରଥମ ଉପାଦାନଟି ହେଉଛି ବ୍ୟକ୍ତିର କାର୍ଯ୍ୟଦ୍ୱାରା କେଉଁ ଚାହିଦା ପୂରଣ ହେଉଛି ଏବଂ ବ୍ୟକ୍ତିଟି ପାଇଁ ସେ ଚାହିଦା (Needs) ର ଗୁରୁତ୍ୱ କେତେ ? ପ୍ରତି ବ୍ୟକ୍ତିର ସଂଖ୍ୟାଧିକ ଚାହିଦା ରହିଛି । ଖାଦ୍ୟବସ୍ତ୍ର ପାନୀୟର ଚାହିଦା, ନିଜର ଓ ପରିବାରର ସୁରକ୍ଷା ବ୍ୟବସ୍ଥା, ପିଲାପିଲିମାନଙ୍କର ଶିକ୍ଷାଦୀକ୍ଷା, ପଦୋନ୍ନତି, ଆର୍ଥିକ ସଫଳତା ଏବଂ ଜୀବନର ଅନ୍ୟାନ୍ୟ କ୍ଷେତ୍ରରେ ସାଫଲ୍ୟ ଆଦି ଚାହିଦାର ତାଲିକା ଖୁବ୍ ଦୀର୍ଘ । ପୁଣି ପ୍ରତି ମଣିଷ ଏହି ସବୁ ତାଲିକା ମଧ୍ୟରୁ କାହାକୁ ସର୍ବପ୍ରଥମ ସ୍ଥାନ ଦେବାବେଳେ ଅନ୍ୟକୌଣସି ଲକ୍ଷ୍ୟକୁ ତୃତୀୟ ଚତୁର୍ଥ ସ୍ଥାନ ଏବଂ କୌଣସି ଲକ୍ଷ୍ୟକୁ ଶେଷ ସ୍ଥାନ ଦେଇପାରେ । ଅବଶ୍ୟ ଯୁକ୍ତି କରାଯାଇପାରେ ଯେ ସମୟକ୍ରମେ ବ୍ୟକ୍ତିତ୍ୱର ପ୍ରାଧାନ୍ୟ ଆରୋପ ପରିବର୍ତ୍ତିତ ହୋଇଥାଏ । ତଥାପି ଏକ ନିର୍ଦ୍ଦିଷ୍ଟ ସମୟରେ କେତେକ ଆବଶ୍ୟକତା ପୂରଣ ନିତାନ୍ତ ଜରୁରୀ ମନେକରାଯିବା ସ୍ଥଳେ ଅନ୍ୟକେତେକ କାର୍ଯ୍ୟକ୍ରମ ଅପେକ୍ଷାକୃତ କମ୍ ଦରକାରୀ ମନେହୁଏ ।

ଏହା କହିବାର ତାତ୍ପର୍ଯ୍ୟ ହେଉଛି ଯେ ଏକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ସେହି ଆବଶ୍ୟକତା ପରିପୂରଣର ଗୁରୁତ୍ୱ ଅନୁଯାୟୀ ବ୍ୟକ୍ତିର ଭାବନା ଓ କାର୍ଯ୍ୟତତ୍ପରତା ନିୟୋଜିତ ହୁଏ । ବ୍ୟକ୍ତିଟି ଯଦି ଅନୁଭବ କରେ ଯେ ନିଜର ପିଲାମାନଙ୍କୁ ଉଚ୍ଚଶିକ୍ଷା ଦେବାର ବ୍ୟବସ୍ଥା କରି ସେମାନଙ୍କର ଉଚ୍ଚ ଚାକିରିର ସମ୍ଭାବନା ବୃଦ୍ଧି କରିବା ନିତାନ୍ତ ଦରକାର, ବ୍ୟକ୍ତି ସେହିଠାରେ ଅପେକ୍ଷାକୃତ ଅଧିକ ସମୟ ଦେବ । ପିଲାଙ୍କୁ ପଢ଼ାଇବା, ସେମାନଙ୍କର ତାଲିମ ବ୍ୟବସ୍ଥା ବିଷୟରେ ଅନୁସନ୍ଧାନ କରିବା, ବିଭିନ୍ନ ବ୍ୟକ୍ତିଙ୍କ ସହିତ ସଂଯୋଗ ରକ୍ଷାକରିବା ଏବଂ ଏହା ସହିତ ସଂପୃକ୍ତ ମନେହେଉଥିବା ସଂଖ୍ୟାଧିକ କାର୍ଯ୍ୟ ସହିତ ନିଜେ ଜଡ଼ିତ ହୋଇପଡ଼ିବ । ଅନ୍ୟାନ୍ୟ କାର୍ଯ୍ୟ ଅବେହେଳିତ ହେଲେ ମଧ୍ୟ ସେ ଦିଗରେ ନଜର ରହିବ ନାହିଁ ।

ସୁତରାଂ ଆଧାତ୍ମିକ ବିକାଶ ପାଇଁ କୌଣସି କାର୍ଯ୍ୟକ୍ରମରେ ଯୋଗଦେବା କ୍ଷେତ୍ରରେ ପ୍ରଥମ ପ୍ରଶ୍ନଟି ହେଉଛି ଆମେ ଜୀବନରେ ଆଧାତ୍ମିକ ବିକାଶକୁ କେତେ ଗୁରୁତ୍ୱ ଦେଉଛୁ ? ଖୁବ୍ ଅଳ୍ପ ଗୁରୁତ୍ୱ ଦେଉଥିଲେ ନିଶ୍ଚିତ ଭାବରେ ଆମେ ସେ ସଂପର୍କୀୟ କାର୍ଯ୍ୟକଳାପ ସାମୟିକୀ (Casaul) ହେବ । ସୁବିଧା ମିଳିଲେ ଶାସ୍ତ୍ର ଅଧ୍ୟୟନ କରିବୁ, ବଂଧୁଙ୍କ ଦୃଢ଼ ଅନୁରୋଧ ଏଡ଼ି ନ ପାରି ସତ୍‌ସଙ୍ଗରେ ସାମିଲ ହେବୁ । ଆମ ବ୍ୟକ୍ତିଗତ ଜୀବନର ପ୍ରାଧାନ୍ୟ ତାଲିକାରେ ଆଧାତ୍ମିକ ବିକାଶ ତଳେ ରହୁଥିବାରୁ ଆମର କାର୍ଯ୍ୟକ୍ରମ ମଧ୍ୟ ସମାନୁପାତିକ ଭାବେ ସୀମିତ ରହିବ ।

ବେଳେବେଳେ ସତ୍‌କର୍ମରେ ନିୟୋଜିତ ହେବା ଉଚିତ୍ ମନେକଲେ ମଧ୍ୟ ବିଶେଷ ଅଗ୍ରସର ହେଇ ହୁଏନାହିଁ । ଏ କ୍ଷେତ୍ରରେ ଆତ୍ମବିଶ୍ଳେଷଣ ହିଁ ଖୁବ୍ ସହାୟକ ହୋଇଥାଏ । ଆତ୍ମବିଶ୍ଳେଷଣର ଆଶ୍ରୟ ନେଇ ବ୍ୟକ୍ତି ନିଜକୁ ଯେତେ ବେଶୀ ପ୍ରଶ୍ନ ପଚାରିବସିବ ନିଜର ଅଜ୍ଞାତସାରରେ ପରିବର୍ତ୍ତନର ସମ୍ଭାବନା ସେତେ ଅଧିକ ବୃଦ୍ଧି ପାଇବ । କେବଳ ଖାଇପିଇ ଶୋଇ ରହି ଇତରପ୍ରାଣୀମାନଙ୍କ ପରି ଜୀବନ ଯାପନ କରିବାକୁ ମୁଁ କ'ଣ ଏ ପୃଥିବୀକୁ ଆସିଛି ? ଦୈନନ୍ଦିନ ଜୀବନର ଉର୍ଦ୍ଧ୍ୱରେ ଆଉ କ'ଣ ଜାଣିବା ଓ ଅନୁଭବ କରିବାର କିଛି ନାହିଁ ? ଉପଭୋଗ-ସର୍ବସ୍ୱ ଜୀବନ ପରିବର୍ତ୍ତେ ସାଧନା-ନିଷ୍ଠ ଜୀବନରେ କ'ଣ ଅଧିକ ସୁଖର ସମ୍ଭାବନା ନାହିଁ ? ମଣିଷ ହିସାବରେ ନିଜର ପୁତ୍ରକନ୍ୟାଙ୍କ ପ୍ରତି ଦାୟିତ୍ୱ ତୁଲାଇବାରେ ମୋର କ'ଣ ସବୁଶକ୍ତି ଚାଲିଯିବ ? ପରିବାରର ବାହାରେ ମୁଁ କ'ଣ ଅନ୍ୟର କିଛି କରିପାରିବି ନାହିଁ ? ସମାଜର ଉପଯୋଗୀ ଲୋକ ହିସାବରେ ମୋର କ'ଣ ଭୂମିକା ନାହିଁ ? ଦୃଶ୍ୟମାନ ଜଗତରେ ଯାହା ଚାଲିଛି ତାହା ହିଁ କେବଳ କ'ଣ ମୋ ଜ୍ଞାନର ଆଧାର ? ଇନ୍ଦ୍ରିୟାନୁଭୂତିର ଅତୀତ ହୋଇଥିବା ଅନ୍ୟ କିଛି ଅନୁଭୂତି ମୁଁ କାହିଁକି ପାଉନାହିଁ ? ମୁଁ କାହିଁକି ନିଷ୍କ୍ରିୟ ଓ

ଶିଥିଳ ହୋଇଯାଉଛି ? ଆମ ଦେଶର ପୂର୍ବସୂରୀମାନେ ବେଦବାକ୍ୟ ମାଧ୍ୟମରେ ଯାହା ସବୁ କହିଛନ୍ତି ସେସବୁର ଉପଲବ୍ଧି କ'ଣ ମୋ ପକ୍ଷେ ଅସମ୍ଭବ ?

ଏସବୁ ପ୍ରଶ୍ନକୁ ନିଜକୁ ବାରମ୍ବାର ପଚାରି ବସିଲେ ସ୍ୱତଃ କେତେକ ଉତ୍ତର ଆସିବ । ନକାରାତ୍ମକ କାର୍ଯ୍ୟରୁ ନିଜକୁ ଦୂରେଇ ନେଇ ବ୍ୟକ୍ତି ସାଧନାମୁଖୀ କାର୍ଯ୍ୟରେ ଅଧିକରୁ ଅଧିକ ସମୟ ଦେବ ।

ବର୍ତ୍ତମାନ ଦ୍ୱିତୀୟ ଉପାଦାନଟିର କଥା ବିଚାର କରାଯାଉ । ଧରାଯାଉ ଆଧ୍ୟାତ୍ମିକ ବିକାଶ ଲକ୍ଷ୍ୟ ଉପରେ ବ୍ୟକ୍ତିଟି ଗୁରୁତ୍ୱ ଦେଉଛି । ବର୍ତ୍ତମାନ ପ୍ରଶ୍ନ ଉଠିବ କେବଳ ଗୁରୁତ୍ୱ ବା ସେ ଦିଗରେ ଅଭିଳାଷ ପୋଷଣ କଲେ କ'ଣ କାର୍ଯ୍ୟଗତ ସାଧନା ବୃଦ୍ଧି ପାଇବ ? ଧରାଯାଉ ଜଣେ ବ୍ୟକ୍ତି ଚାକିରି ପାଇଁ ଖୁବ୍ ଇଚ୍ଛୁକ । ନିଜର ଅନ୍ନ ସଂସ୍ଥାନ ପାଇଁ ଏହା ତାହାର ଅତ୍ୟାବଶ୍ୟକ । ଏହା ହେଲେ ମଧ୍ୟ ମାସିକ ତିରିଶହଜାର ଟଙ୍କାର ବେତନ ଦେବାପାଇଁ ବିଜ୍ଞାପନ ଦେଇଥିବା ସଂସ୍ଥାର ଚାକିରି ପାଇଁ ବ୍ୟକ୍ତି ଆଗଭର ହୋଇ ନ ପାରେ । ଦରଖାସ୍ତ ଫର୍ମ କ୍ରୟ କରିବା ଠାରୁ ଆରମ୍ଭ କରି ମନୋନୟନ ସାକ୍ଷାତ୍‌କାର ଇତ୍ୟାଦି ପ୍ରସ୍ତୁତି ପର୍ବ ପାଇଁ ନିଜକୁ ସଚେଷ୍ଟ କରି ନ ପାରେ । ଅଥଚ କମ୍ ବେତନ ଦେବାପାଇଁ ବିଜ୍ଞାପନ ଦେଉଥିବା ସଂସ୍ଥାରୁ ଚାକିରି ପାଇଁ ତତ୍ପରତା ପ୍ରକାଶ କରିଥାଏ ।

କାରଣ ଅନୁଧ୍ୟାନ କଲେ ଦେଖାଯିବ ଯେ ଚାକିରି ପାଇଁ ବ୍ୟକ୍ତିର ବ୍ୟାକୁଳତା ଥିଲେ ମଧ୍ୟ ତା'ର ବ୍ୟକ୍ତିଗତ ପ୍ରଚେଷ୍ଟା ଯେ ପ୍ରଥମ ଉଦାହରଣ କ୍ଷେତ୍ରରେ ସଫଳତା ଆଣିଦେବ, ଏହାର ସମ୍ଭାବନା କ୍ଷୀଣ । ବ୍ୟକ୍ତି ନିଜର ଆତ୍ମବିଶ୍ୱାସ, ନିଜର ଦକ୍ଷତା ଓ ଚାକିରି ପାଇଁ ସଂସ୍ଥା ଆବଶ୍ୟକ କରୁଥିବା ଅନ୍ୟାନ୍ୟ ଯୋଗ୍ୟତାକୁ ମନେ ମନେ ମୂଲ୍ୟାୟନ କରି ଅନୁଭବ କରିପାରେ ଯେ ତା'ର କାର୍ଯ୍ୟ ଅଭିଳକ୍ଷିତ ଲକ୍ଷ୍ୟ ପୂରଣ କରିବାର ଆଶା କ୍ଷୀଣ । ଅଥଚ ଦ୍ୱିତୀୟ ଉଦାହରଣରେ ସୂଚନା ଦିଆଯାଇଥିବା ଚାକିରି ସମ୍ଭାବନାକୁ ବ୍ୟକ୍ତି ନିଜର କର୍ମଯୋଜନା ବଳରେ ବଳବତ୍ତର କରିପାରିବ । ସୁତରାଂ ଏପରି ଅନୁଭବ ନେଇ ବ୍ୟକ୍ତି ଦ୍ୱିତୀୟ ଚାକିରିଟି ପ୍ରତି ଉଦ୍ୟମଶୀଳ ରହିବ ।

ଠିକ୍ ସେହିପରି ମନୁଷ୍ୟ ସାଧନା ସଂପର୍କୀୟ କୌଣସି କାର୍ଯ୍ୟକ୍ରମକୁ ଜୀବନର ଅଂଗୀଭୂତ କରିବା ପୂର୍ବରୁ ସେ କାର୍ଯ୍ୟଟି ବ୍ୟକ୍ତି ଗୁରୁତ୍ୱ ଆରୋପ କରିସାରିଥିବା ଆଧ୍ୟାତ୍ମିକ ବିକାଶ ବା ମାନସିକ ଶାନ୍ତି ଆଣିବାର ସମ୍ଭାବନାକୁ କଳନା କରେ । ମନ୍ଦିର ଯିବା ଫଳରେ ଏପରି ଶାନ୍ତିର ସମ୍ଭାବନା ବେଶୀ ଭାବିଲେ ଅଧିକ ପରିମାଣରେ ମନ୍ଦିର ଯିବ । ଶାସ୍ତ୍ର ଅଧ୍ୟୟନ ଫଳରେ ଏପରି ଶାନ୍ତିର ସମ୍ଭାବନା ଅଧିକ ଭାବିଲେ

ଶାସ୍ତ୍ର ଅଧ୍ୟୟନରେ ସମୟ ଦେବ । ସତ୍‌ସଙ୍ଗ ଦ୍ୱାରା ଏପରି ଲକ୍ଷ୍ୟ ସାଧନ ନିଶ୍ଚିତ ଭାବିଲେ ସେ ଦିଗରେ ବେଶୀ ମନନଶୀଳ ହେବ । କେବଳ ଗୋଟିଏ ମାର୍ଗକୁ ଆବୋରି ନେଇ ଅନ୍ୟ ସବୁକୁ ଯେ ଅବହେଳା କରିବ, ସେ କଥା କୁହାଯାଉ ନାହିଁ । ମାତ୍ର ଇପ୍‌ସିତ ପରିଣତି ଓ ନିର୍ଦ୍ଦିଷ୍ଟ କର୍ମପନ୍ଥାର ସମ୍ବନ୍ଧକୁ ବିଚାର କରି ସେ କର୍ମପନ୍ଥା ଗ୍ରହଣ କରିବ ।

ସ୍ଥୂଳତଃ ଜୀବନର ଲକ୍ଷ୍ୟ ତାଲିକାରେ ଆଧ୍ୟାତ୍ମିକ ବିକାଶକୁ ଗୁରୁତ୍ୱ ଦେବା ଏବଂ ସାଧନାମୁଖୀ କର୍ମପନ୍ଥା ମାଧ୍ୟମରେ ଆଧ୍ୟାତ୍ମିକ ବିକାଶକୁ ତ୍ୱରାନ୍ୱିତ କରାଯିବାର ଦୃଢ଼ ସମ୍ଭାବନାରୁ ଯାବତୀୟ ଅସାର କାମ କମିଯାଇ ମୌଳିକ ଓ ସତ୍‌କର୍ମ ପ୍ରତି ଆଗ୍ରହ ଓ ଉଦ୍ୟମଶୀଳତା ସୃଷ୍ଟି ହୁଏ ।

ଉକ୍ତ ଆଲୋଚନାରୁ ସ୍ପଷ୍ଟ ହୁଏ ଯେ ଆଧ୍ୟାତ୍ମିକ ବିକାଶ ନିର୍ଦ୍ଦିଷ୍ଟ ପନ୍ଥାଟି ଯେତେ ଗୁରୁତ୍ୱପୂର୍ଣ୍ଣ ନୁହେଁ, ଗୁରୁତ୍ୱପୂର୍ଣ୍ଣ ହେଉଛି ସେ ପନ୍ଥା ଉପରେ ବ୍ୟକ୍ତିଗତ ଆସ୍ଥା ଓ ବିଶ୍ୱାସ । ଦୃଢ଼ ବିଶ୍ୱାସ ରଖି ପନ୍ଥାଟିର ଅନୁସରଣ କରିବାରେ ହିଁ ସଫଳତା ଥାଏ । ଶିରିଡ଼ିର ପ୍ରଭୁ ସାଇନାଥ ଅନୁଗତ ଭକ୍ତମାନଙ୍କର ଆଧ୍ୟାତ୍ମିକ ବିକାଶ ଲାଗି ଗୋଟିଏ ପ୍ରକାର ବାଟ ଦେଖାଉ ନଥିଲେ । କେଉଁ ବ୍ୟକ୍ତିକୁ ସେବାର ମହତ୍ତ୍ୱ ବୁଝାଇବା ସ୍ଥଳେ ଅନ୍ୟ କାହାକୁ ନାମସ୍ମରଣର ଉପଦେଶ ଦେଉଥିଲେ । ବହୁ ଲୋକଙ୍କୁ ଶାସ୍ତ୍ର ଅଧ୍ୟୟନର ସନ୍ଦେଶ ଦେଉଥିଲେ । ଗୋଟିଏ ବ୍ୟକ୍ତିଙ୍କୁ ଅଧ୍ୟାତ୍ମ୍ୟ ରାମାୟଣ ପଢ଼ିବା ପାଇଁ ପରାମର୍ଶ ଦେବାସ୍ଥଳେ ଅନ୍ୟ ଲୋକଙ୍କୁ ଗୁରୁସଂହିତା ପଢ଼ିବାକୁ କହୁଥିଲେ । ବ୍ୟକ୍ତିର ରୁଚି, ଦକ୍ଷତା, ପ୍ରାରବ୍ଧ ଓ ଜୀବନଶୈଳୀକୁ ଚାହିଁ ମାର୍ଗଦର୍ଶନ ମଧ୍ୟ ଭିନ୍ନ ଭିନ୍ନ ଥିଲା । କିନ୍ତୁ ସବୁକ୍ଷେତ୍ରରେ ଉଦ୍ଦେଶ୍ୟ ଥିଲା ଏକ । ସାଧନାର ପଥ ସଂପର୍କରେ ବିଶ୍ୱାସର ଅଂକୁରଣ, ବିକାଶ ଓ ଶକ୍ତି ସଞ୍ଚରଣ ଘଟାଇ ବ୍ୟକ୍ତିକୁ ଆତ୍ମଜ୍ଞାନର ଅଧିକାରୀ କରାଇବା ତାଙ୍କର ଲକ୍ଷ୍ୟ ଥିଲା ।

ପରିଶେଷରେ କୁହାଯାଇପାରେ ଯେ ସଦ୍‌ଗୁରୁଙ୍କ କୃପା ଏବଂ ଈଶ୍ୱରଙ୍କ ଅନୁକମ୍ପା ଫଳରେ ମନୁଷ୍ୟ ମାର୍ଗଦର୍ଶନର ସୁଯୋଗ ପାଏ । କ୍ଷୁଧିତ ଶିଶୁର କ୍ଷୁଧା ନିବାରଣ ପାଇଁ ଜନନୀ ସଦାତତ୍ପର ଥିଲା ଭଳି ଆମର ଆଧ୍ୟାତ୍ମିକ କ୍ଷୁଧାର ପରିସମାପ୍ତି ଘଟାଇବାକୁ ସାଇନାଥ ଅବତାର ଗ୍ରହଣ କରିଥିଲେ । କ୍ଷୁଧା-ତୃଷାର ନିବାରଣ ପାଇଁ ଏବେ ବି ସେ ସଚଳ । କିଂତୁ ଆଧ୍ୟାତ୍ମିକ ଖାଦ୍ୟ ଗ୍ରହଣ ପାଇଁ ଆମର ସେ ଆଧ୍ୟାତ୍ମିକ କ୍ଷୁଧା ରହିଛି ତ ?



# ନିଷ୍ଠା : ସାଇପଥର ପ୍ରବେଶ ଦ୍ୱାର

ଯୁକ୍ତି-କୌଶଳ ଦ୍ୱାରା ଅନ୍ୟକୁ ଯୁକ୍ତିରେ ହରାଇ ନିଜର ଅହମିକାକୁ ପ୍ରସାରଣ କରାଯାଇପାରେ । ତର୍କ ପ୍ରବଣତା ସାହାଯ୍ୟରେ ନିଜର ଚିନ୍ତା ଓ ନିଜର କାର୍ଯ୍ୟଟି ସବୁଠାରୁ ଭଲ ବୋଲି ବିଜ୍ଞାପିତ କରାଯାଇପାରେ । ବିଶ୍ଳେଷଣ-ଦକ୍ଷତା ଫଳରେ ନିଜର ବୌଦ୍ଧିକ ଶକ୍ତିକୁ ଜାହିର କରାଯାଇପାରେ । ମାତ୍ର ଏ ସବୁର ପ୍ରୟୋଗ ଆଧ୍ୟାତ୍ମିକ ଲକ୍ଷ୍ୟ ହାସଲରେ ସହାୟକ ହୋଇ ନଥାଏ । ଆଧ୍ୟାତ୍ମିକ ଆନନ୍ଦ ଲାଭ ପାଇଁ ତର୍କ ପରିବର୍ତ୍ତେ ଅଟଳ ବିଶ୍ୱାସର ପ୍ରୟୋଜନ ହୁଏ, ଯୁକ୍ତି ବଦଳରେ ନିଷ୍ଠାର ପ୍ରୟୋଜନ ହୁଏ, ବିଶ୍ଳେଷଣ ପରିବର୍ତ୍ତେ ଐକାନ୍ତିକ ଶ୍ରଦ୍ଧାର ଦରକାର ପଡ଼େ ।

ଅବତାର ପୁରୁଷ ଶିରିଡ଼ିର ଶ୍ରୀ ସାଇବାବା ତାଙ୍କର ଅନୁଗତମାନଙ୍କୁ ସଦାସର୍ବଦା ଶ୍ରଦ୍ଧାର ଗୁରୁତ୍ୱ ସୂଚାଇ ଆସିଛନ୍ତି । ଐକାନ୍ତିକ ନିଷ୍ଠା ବଳରେ ଯେ ଭଗବତ ପ୍ରାପ୍ତି ସମ୍ଭବ, ଏ କଥା ତାଙ୍କର ବାଣୀ ଓ କାର୍ଯ୍ୟକଳାପ ମାଧ୍ୟମରେ ପ୍ରଖ୍ୟାପନ କରିଛନ୍ତି । ଭଗବାନଙ୍କ ପ୍ରତି ଯେପରି ଗଭୀର ଭକ୍ତି ଆବଶ୍ୟକ ସାଧନାରେ ଅଗ୍ରସର କରାଇ ନେଉଥିବା ଆଧ୍ୟାତ୍ମିକ ଦିଗଦର୍ଶନକାରୀ ଗୁରୁଙ୍କ ପ୍ରତି ମଧ୍ୟ ସେପରି ଅଟଳ ବିଶ୍ୱାସ ଓ ଅବିଚଳିତ ନିଷ୍ଠା ସେପରି ପ୍ରୟୋଜନ । ଏ କଥା ସାଇନାଥ ବାରମ୍ବାର ଚେତାଇଛନ୍ତି ।

ଶ୍ରୀ ସାଇସତଚରିତର ବର୍ଣ୍ଣନା ଅନୁଯାୟୀ ଦାମୁଆନ୍ନା ଜଣେ ବିଶିଷ୍ଟ ବ୍ୟବସାୟୀ ଥିଲେ । ବ୍ୟବସାୟରେ ପ୍ରଚୁର ଅର୍ଥଲାଭର ଆଶା ରଖି ଏବଂ ନିକଟ ଭବିଷ୍ୟତରେ ତୁଳାଦର ଖୁବ୍ ବଢ଼ିଯିବାର ପୂର୍ବାନୁମାନ କରି ସେ ବିରାଟ ପରିମାଣରେ ତୁଳା କିଣି ରଖିବାକୁ ଚାହୁଁଥିଲେ । ସେ ବାବାଙ୍କ ଅନୁଗତ ହୋଇଥିବାରୁ ତାଙ୍କର ପରାମର୍ଶ ମାଗିଲେ । ବାବା ସଂକ୍ଷିପ୍ତ ଉତ୍ତର 'ନା' ବୋଲି କହିଥିଲେ । ଦାମୁଆନ୍ନାଙ୍କ ମନରେ ଦୁଃଖ ହେଲା । ସେ ଲକ୍ଷ ଲକ୍ଷ ଟଙ୍କାର ଲାଭ ହରାଇବାକୁ ଯାଉଛନ୍ତି ଭାବି ଦୁଃଖ ଅନୁଭବ କଲେ । ବାବାଙ୍କୁ ପଚାରି ନ ଥିଲେ ବୋଧହୁଏ ଭଲ ହୋଇଥାନ୍ତା ବୋଲି ବିଚାର କଲେ ।

କହିବା ଅନାବଶ୍ୟକ ଯେ ଦାମୁଆନ୍ନାଙ୍କ ବିଚାର ମିଥ୍ୟା ବୋଲି ପ୍ରମାଣିତ ହେଲା । ଦର ବଢ଼ିବା ପରିବର୍ତ୍ତେ ହଠାତ୍ କମିଗଲା । ଦାମୁଆନ୍ନା ବାବାଙ୍କ ନିଷେଧ

ସତ୍ତ୍ୱେ କାରବାର କରିଥିଲେ ଅତ୍ୟଧିକ କ୍ଷତିରେ ପଡ଼ିଥାଆନ୍ତେ ବୋଲି ସ୍ପଷ୍ଟ ରୂପେ ଜାଣିପାରିଲେ ।

ମନୁଷ୍ୟ ତା'ର ସୀମିତ ଦୃଷ୍ଟି ନେଇ ଭବିଷ୍ୟତର ରୂପରେଖ କଳ୍ପନା କରେ । ମାତ୍ର ଦିବ୍ୟଦୃଷ୍ଟିରେ ବିଚାରଧାରା ଭିନ୍ନ ପ୍ରକାରର । ଆଶ୍ରିତର ମଙ୍ଗଳ ଦୃଷ୍ଟିରୁ ସେ ସବୁଦିଗକୁ ଲକ୍ଷ୍ୟ ରଖି ନିଷ୍ପତ୍ତି ନିଅନ୍ତି । ଏ କ୍ଷେତ୍ରରେ ଅନୁଗତ ବ୍ୟକ୍ତିକୁ ଗଭୀର ବିଶ୍ୱାସର ସହିତ ଭଗବାନଙ୍କ ନିଷ୍ପତ୍ତିକୁ ଗ୍ରହଣ କରିବାକୁ ହେବ । ଦାମୁଆନ୍ନାଙ୍କ ବିଶ୍ୱାସବୋଧରେ ପରିପକ୍ୱତା ଆସି ନଥିବାରୁ ସେ ପ୍ରଥମେ ଅଯଥା ବିଚଳିତ ହେଲେ । ପରେ ଅବଶ୍ୟ ଭ୍ରମ ଦୂର ହେଲା ।

ଅଟଳ ବିଶ୍ୱାସରେ ଗୁରୁତ୍ୱ ଅନୁଭବ କରିଥିବା ବ୍ୟକ୍ତିମାନେ ନିଷ୍ଠାପର ଭାବରେ ବାବାଙ୍କ ଉପରେ ଆସ୍ଥା ରଖୁଥିଲେ । ଦାଦା ସାହେବ ଦୀକ୍ଷିତ ଓ ବାପୁ ସାହେବ ବୁଟି ଏ ଧରଣର ଅନୁଗତ ବ୍ୟକ୍ତି ଥିଲେ । ଅଜସ୍ର ଅଜସ୍ର ଟଙ୍କାର କ୍ଷତି ସମ୍ଭାବନା ଥିବା ସତ୍ତ୍ୱେ କାକା ସାହେବ ଦୀକ୍ଷିତ ବାବାଙ୍କ ପରାମର୍ଶକୁ ସର୍ବାନ୍ତକରଣରେ ଗ୍ରହଣ କରି ନେଉଥିଲେ । ନିଜର ବିଚାର ବିଶ୍ଳେଷଣ ଅପେକ୍ଷା ଏହାର ସୁଫଳ ଯଥେଷ୍ଟ ଅଧିକ ବୋଲି ସେ ମର୍ମେ ମର୍ମେ ଅନୁଭବ କରୁଥିଲେ ।

ବାସ୍ତବରେ ଆତ୍ମୋପଲବ୍ଧି ପାଇଁ ଗୁରୁ ବା ଦିଗ୍‌ଦର୍ଶକଙ୍କ ଉପରେ ଅଟଳ ବିଶ୍ୱାସ ରଖିବାକୁ ହେବ । ନିଜ ଜୀବନର ଏକ ବିଶିଷ୍ଟ ଘଟଣାର ବର୍ଣ୍ଣନା କରି ଶିରିଡ଼ିର ସାଇବାବା ଏହାର ତାତ୍ପର୍ଯ୍ୟକୁ ଅଧିକ ସ୍ପଷ୍ଟ କରିଥିଲେ । ସାଇବାବା ଅନ୍ୟମାନଙ୍କ ଉପସ୍ଥିତିରେ ଘଟଣାର ବର୍ଣ୍ଣନା କରି କହିଲେ ଯେ ସେ ଓ ଅନ୍ୟ ତିନିଜଣ ଏକଦା ଆନନ୍ଦର ଅନ୍ୱେଷଣରେ ବଣରେ ବୁଲୁଥିଲେ । ବନ ମଧ୍ୟରେ ବହୁ ଦୂର ବୁଲି ସେମାନେ ଖୁବ୍ କ୍ଳାନ୍ତ ହୋଇପଡ଼ିଲେ । ବେଶ୍ କିଛି ସମୟ ପରେ ଜଣେ ସଦା ଭ୍ରମଣଶୀଳ ଗୃହହୀନ ଅଜଣା ବ୍ୟକ୍ତି ସେମାନଙ୍କର ଦୃଷ୍ଟିଗୋଚର ହେଲା । ସେହି ବଣୁଆ ବ୍ୟକ୍ତିଜଣକ ଏମାନଙ୍କର କ୍ଳାନ୍ତି ଓ ହତାଶଭାବ ଦେଖି କିଛି ଖାଦ୍ୟ ଦେବାକୁ ଚାହିଁଲେ । ମାତ୍ର ଏମାନେ ଗ୍ରହଣ କଲେ ନାହିଁ । ପଥହୀନ ଦୁର୍ବାର ବନଭୂମି ଅତିକ୍ରମ କରିବା ପାଇଁ ଜଣେ ପଥପ୍ରଦର୍ଶକଙ୍କ ଆବଶ୍ୟକତା ରହିଛି ବୋଲି ଲୋକଟି କହିଲା । ଏପରି ଦିଗ୍‌ଦର୍ଶକ କେବଳ ସେମାନଙ୍କୁ ଲକ୍ଷ୍ୟସ୍ଥଳରେ ପହଞ୍ଚାଇ ପାରିବ ବୋଲି ସୂଚନା ଦେଲା । ମାତ୍ର ସେମାନେ ଏଥିରେ କର୍ଣ୍ଣପାତ କଲେନାହିଁ । ପୁନଶ୍ଚ ବନ ମଧ୍ୟରେ ଭ୍ରମଣ କରିବାକୁ ଲାଗିଲେ । ବଣୁଆ ଲୋକଟି ମଧ୍ୟ ଅଦୃଶ୍ୟ ହୋଇଗଲା ।

ସାଇବାବା କହିଲେ ଯେ ପୁଣି କିଛି ସମୟ ପରେ ବଣୁଆ ଲୋକଟି ସହିତ ସାକ୍ଷାତ୍ ହେଲା । ସେ ତା'ଠାରୁ କିଛି ଖାଦ୍ୟଗ୍ରହଣ କରି ଖାଇଲେ । ଅନ୍ୟ ତିନିଜଣ

ଦୂରକୁ ଚାଲିଗଲେ । ପରେ ପରେ ସାଇନାଥ ନିଜର ଆଧ୍ୟାତ୍ମିକ ଗୁରୁଙ୍କ ସାକ୍ଷାତ ପାଇଲେ । ଗୁରୁ ତାଙ୍କୁ ନେଇଗଲେ । ଗୋଟିଏ କୂପ ଉପରେ ତାଙ୍କର ମୁଣ୍ଡ ତଳକୁ କରାଇଦେଇ ଦୁଇ ଗୋଡ଼କୁ ଦଉଡ଼ିରେ ବାନ୍ଧିଦେଲେ । ଗୁରୁ ସେଠାରୁ ଚାଲିଗଲେ । ବାବା ଏକାଗ୍ର ଚିତ୍ତରେ ସେହିପରି ରହିଲେ । ଗୁରୁଙ୍କ ପ୍ରତି ତାଙ୍କର ବିଶ୍ୱାସ ଅତୁଟ ରହିଥିଲା । ପରେ ଗୁରୁ ଆସି ତାଙ୍କର କଷ୍ଟ ଦୂର କରି ତାଙ୍କୁ ଆଧ୍ୟାତ୍ମିକ ଭାବରେ ଦୀକ୍ଷିତ କଲେ ।

ବାବାଙ୍କ ଏହି ବର୍ଣ୍ଣନାରେ ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଦୁଇଟି । ପ୍ରଥମତଃ ସେ କହିବାକୁ ଚାହିଁଛନ୍ତି ଯେ ଈଶ୍ୱରଙ୍କ ଉପଲବ୍ଧି ଭଳି ଏକ ଗଭୀର ଅନୁଭୂତି ପାଇଁ ଗୁରୁ ବା ଆଧ୍ୟାତ୍ମିକ ଦିଗ୍‌ଦର୍ଶକଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ଅଭିଜ୍ଞତାବିହୀନ ହୋଇ ଅପରିଚିତ ରାଜ୍ୟରେ ଏଣେତେଣେ ଇତଃସ୍ତତଃ ବୁଲିବା ଅପେକ୍ଷା ଅଭିଜ୍ଞ ଗୁରୁଙ୍କ ଦିଗ୍‌ଦର୍ଶନ ଆମକୁ ପ୍ରକୃତ ଲକ୍ଷ୍ୟବିନ୍ଦୁରେ ପହଞ୍ଚାଇ ପାରିବ । ଦ୍ୱିତୀୟତଃ ନିଜର ବ୍ୟକ୍ତିଗତ ଚତୁରତା ପରିହାର କରିବାକୁ ହେବ । ଯୁକ୍ତିର ବିଶ୍ୱ ବଦଳରେ ବିଶ୍ୱାସର ବିଶ୍ୱ ନିର୍ମାଣ କରିବାକୁ ହେବ । ଗୁରୁଙ୍କ ପ୍ରତି ଅବିଚଳିତ ନିଷ୍ଠା ଆଧ୍ୟାତ୍ମିକ ଯାତ୍ରାର ପ୍ରବେଶ ଦ୍ୱାର ରୂପେ କାର୍ଯ୍ୟ କରିବ ।

ବିଶ୍ୱାସର ଅଟଳତା କିପରି ଭାବରେ ସାଧନାର ପ୍ରାଥମିକ ପର୍ଯ୍ୟାୟରେ ଆବଶ୍ୟକ ହୁଏ, ତାହା ସାଇନାଥଙ୍କ ଲୀଳା ସହିତ ଜଡ଼ିତ କେତୋଟି ଘଟଣାରୁ ସ୍ପଷ୍ଟ ହୁଏ । ଥରେ ଜଣେ ଅଳ୍ପବୟସ୍କ ଛାତ୍ର ନାନା ସାହେବ ଚନ୍ଦୋରକରଙ୍କ ସହିତ ଦ୍ୱାରକାମାୟୀ ମସ୍‌ଜିଦ୍‌କୁ ଆସିଥିଲେ । ବାବାଙ୍କଠାରୁ ଯୋଗଶିକ୍ଷା କରିବା ଏହି ଛାତ୍ରଙ୍କର କାମନା ଥିଲା । ମସ୍‌ଜିଦ୍‌ରେ ପ୍ରବେଶ କରି ଛାତ୍ରଜଣକ ଦେଖିଲେ ଯେ ବାବା ରୁଟି ଓ ପିଆଜ ଖାଉଛନ୍ତି । ପିଆଜ ଖାଇବା ଯୋଗ ସାଧନା ପରମ୍ପରାର ବିରୋଧୀ ହୋଇଥିବାରୁ ଛାତ୍ର ଜଣକ ଦ୍ୱିଧାରେ ପଡ଼ିଲେ । ପିଆଜ ଖାଉଥିବା ବ୍ୟକ୍ତି ଜଣକ କିପ୍ରକାର ଯୋଗ ସାଧନା ଶିକ୍ଷା ଦେବେ ବୋଲି ଘୋର ସନ୍ଦେହ କଲେ । ଛାତ୍ରଜଣକର ବିଶ୍ୱାସର ଦୋଳନତା ଦେଖି ଏବଂ ଛାତ୍ରଟିର ମନକଥା ଜାଣିପାରି ବାବା ମନ୍ତବ୍ୟ କଲେ ଯେ ହଜମ କରିପାରୁଥିବା ଲୋକ କେବଳ ପିଆଜ ଖାଇପାରେ । ହୃଦୟର ସନ୍ଦେହ ବୁଝିପାରି ବାବା ଏପରି ପ୍ରକାଶ କରିଛନ୍ତି ଜାଣିପାରି ଛାତ୍ରଜଣକ ଲଜ୍ଜିତ ହେଲେ ଏବଂ ବାବାଙ୍କୁ ପ୍ରକୃତ ଶିକ୍ଷାଦାତା ରୂପେ ସ୍ୱୀକାର କଲେ ।

ଆଉ ଏକ ଘଟଣାରେ ମାଧବରାଓ ଦେଶ୍‌ପାଣ୍ଡେ (ଶ୍ୟାମା) ସର୍ପଦଂଶନରେ ପୀଡ଼ିତ ହୋଇ ମସ୍‌ଜିଦ୍‌କୁ ଆସିଲେ । ତାଙ୍କର ଅଟଳ ବିଶ୍ୱାସ ଥିଲା ଯେ ବାବା ନିଶ୍ଚିତ ଭାବରେ ତାଙ୍କୁ ସୁରକ୍ଷା ଦେବେ । ଶ୍ୟାମ ମସ୍‌ଜିଦ୍‌ରେ ପାଦଦେବା ମାତ୍ରେ

ବାବା ଜୋର୍‌ରେ ଚିତ୍କାର କରି ଉଠିଲେ । ବାବା ପାଟିକରି କହିଲେ – ‘‘ଯେତିକି ଉଠିବୁ ଉଠିବୁ, ଆଉ ଅଧିକା ଉଠିପାରିବୁ ନାହିଁ, ଶୀଘ୍ର ଓହ୍ଲାଇ ଯା’ ।’’ ପାଖରେ ଉପସ୍ଥିତ ଥିବା ବ୍ୟକ୍ତିମାନେ ଆଶ୍ଚର୍ଯ୍ୟ ହେଲେ । ବାବା ଶ୍ୟାମକୁ କାହିଁକି ଏପରି କହୁଛନ୍ତି, କେହି ବୁଝିପାରିଲେ ନାହିଁ । ପ୍ରକୃତରେ ବାବାଙ୍କର ଏପରି ଉକ୍ତି ଶ୍ୟାମ ପ୍ରତି ଉଦ୍ଦିଷ୍ଟ ନ ଥିଲା । ଏହା ସର୍ପବିଷ ପ୍ରତି ଉଦ୍ଦିଷ୍ଟ ଥିଲା । ଅନ୍ୟମାନେ ବାବାଙ୍କ କଥାରେ ବିସ୍ମୟ ପ୍ରକାଶ କଲେ ମଧ୍ୟ ଶ୍ୟାମ ଅବିଚଳିତ ଥିଲେ । ବାବାଙ୍କ କଥାରେ କଠୋରତା ଥିଲେ ମଧ୍ୟ ଏହାର ତାତ୍ପର୍ଯ୍ୟ ଅଛି ବୋଲି ଶ୍ୟାମଙ୍କର ଅଗାଧ ବିଶ୍ୱାସ ଥିଲା । ସେ ନିରବରେ ଅପେକ୍ଷା କଲେ । ପ୍ରକୃତରେ ପରଦିନ ସେ ସର୍ପଦଂଶନର ପୀଡ଼ାମୁକ୍ତ ହୋଇ ଆରୋଗ୍ୟ ଲାଭ କଲେ । ସଦ୍‌ଗୁରୁଙ୍କ ଉପରେ ଅଟଳ ବିଶ୍ୱାସ ରଖୁଥିବା ବ୍ୟକ୍ତି ଜୀବନ ଯନ୍ତ୍ରଣାରୁ କିପରି ମୁକ୍ତ ହୁଏ, ଏ ଘଟଣାଟି ତାହାର ଏକ ପ୍ରମାଣ ।

ନିଷ୍ଠାପୂର୍ଣ୍ଣ ଭାବରେ ଗୁରୁଙ୍କ ପ୍ରତି ଆସ୍ଥା ସ୍ଥାପନ କରିବା ବେଳେବେଳେ ପରୀକ୍ଷାର ରୂପ ନିଏ । ବାବାଙ୍କର ପରମ ଅନୁଗତ କାକା ସାହେବ ଦୀକ୍ଷିତ ଥରେ ଏପରି ଏକ ପରୀକ୍ଷାର ସମ୍ମୁଖୀନ ହୋଇଥିଲେ । ବାବା ନିଜେ ହିଁ ଏପରି ପରୀକ୍ଷାର ପରିବେଶ ସୃଷ୍ଟି କରିଥିଲେ । ସେ କାକା ସାହେବ ଦୀକ୍ଷିତଙ୍କ ସମେତ ଅନ୍ୟ କେତେଜଣଙ୍କୁ ମସ୍‌ଜିଦ୍ ମଧ୍ୟରେ ଗୋଟିଏ ଛେଳିକୁ କାଟିବାକୁ ନିର୍ଦ୍ଦେଶ ଦେଲେ । ମସ୍‌ଜିଦ୍ ମଧ୍ୟରେ ଜୀବହତ୍ୟା କରିବାର ମାନସିକ ଦ୍ୱନ୍ଦ ଏଡ଼ାଇବା କଷ୍ଟକର ଥିଲା । ସମସ୍ତେ ପଛେଇ ଗଲେ, ମାତ୍ର କାକା ସାହେବ ଦୀକ୍ଷିତ ଛୁରୀ ନେଇ ଆଗେଇ ଆସିଲେ । ନିଜର ମନୋଭାବ ବ୍ୟକ୍ତିକରି ସେ କହିଲେ ଯେ ବାବା ହେଉଛନ୍ତି ତାଙ୍କ ପାଇଁ ପରମ ଈଶ୍ୱର। ତାଙ୍କର ନିର୍ଦ୍ଦେଶ ଶାସ୍ତ୍ରପୁରାଣର ଉପଦେଶ ଅପେକ୍ଷା ଅଧିକ ମହତ୍ତ୍ୱପୂର୍ଣ୍ଣ । ତାଙ୍କର କଥା ପାଳନ କରିବା ଯେ କୌଣସି ଧର୍ମାଚରଣ ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ।

ବାସ୍ତବରେ ସାଧନାରେ ସିଦ୍ଧିଲାଭ ପାଇଁ ଏହାହିଁ ପ୍ରାଥମିକ ଯୋଗ୍ୟତା । ନିଜର ଗୁରୁ ବା ଆଧ୍ୟାତ୍ମିକ ଦିଗ୍‌ଦର୍ଶକ ରୂପେ ସ୍ୱୀକାର କରିନେଇଥିବା ବ୍ୟକ୍ତି ମନୁଷ୍ୟ ନୁହନ୍ତି । ସର୍ବାନ୍ତକରଣରେ ତାଙ୍କର ସାର୍ବଭୌମତ୍ୱକୁ ସ୍ୱୀକାର କରିବାକୁ ହେବ । ନିଷ୍ଠାର ସହିତ ତାଙ୍କର ନିର୍ଦ୍ଦେଶ ପାଳନ କରିବାକୁ ହେବ । ସକଳ ଅବସ୍ଥା ମଧ୍ୟରେ ତାଙ୍କ ଉପରେ ଅଟଳ ବିଶ୍ୱାସ ରଖିବାକୁ ହେବ । ଅନୁଧାତର ନିଷ୍ଠା ହିଁ ଜୀବନର ସବୁ ଦୁର୍ଦ୍ଦିନରୁ ମୁକ୍ତ କରାଇ ଆଧ୍ୟାତ୍ମିକ ଲକ୍ଷ୍ୟ ବିନ୍ଦୁରେ ପହଞ୍ଚାଇ ପାରିବ । ଶ୍ରୀ ସାଇନାଥଙ୍କ ଦିବ୍ୟ ସନ୍ଦେଶସବୁରେ ଏହାର ମର୍ମ ସଦା ଗୁଂଜରିତ ।



# ମୌଳିକ ପ୍ରଶ୍ନ : ମୁଁ କିଏ ?

ଦିବ୍ୟତ୍ୱର ଅନୁଭବ ପାଇଁ ଈଶ୍ୱର ସଦାସର୍ବଦା ମନୁଷ୍ୟର ସହାୟକ ହୁଅନ୍ତି । ମନୁଷ୍ୟକୁ ଉଚ୍ଚତର ସୋପାନକୁ ନେବାପାଇଁ ଭଗବାନ ଅବତାର ଗ୍ରହଣ କରନ୍ତି । ମାତୃଗର୍ଭର ଯନ୍ତ୍ରଣା ମଧ୍ୟଦେଇ ସେ ପୃଥିବୀ ମାଟିରେ ପାଦ ଦିଅନ୍ତି । ଆମପରି ଦୈନନ୍ଦିନ ଜୀବନର କ୍ଲିଷ୍ଟତା କିଛି ଅନୁଭବ କରନ୍ତି । ରୁକ୍ଷଶୁଷ୍କ ପଥରେ ଚାଲି ଅବତାର ପୁରୁଷମାନଙ୍କର ପଦ ମଧ୍ୟ କଷ୍ଟ ସ୍ୱୀକାର କରେ । କେତେ ବିବାଦୀୟ ପରିବେଶ ତାଙ୍କ ଦୃଷ୍ଟିରେ ପଡ଼େ, କେତେ ସମସ୍ୟାର ଘେର ତାଙ୍କ ଜୀବନକାଳରେ ସୃଷ୍ଟି ହୁଏ । ଜାଗତିକ ଶରୀରର ନିର୍ଯ୍ୟାତନା ସତ୍ତ୍ୱେ ଈଶ୍ୱରଙ୍କ ଅବତାର ମନୁଷ୍ୟକୁ ଦିବ୍ୟପଥରେ ଚାଳିତ କରିବା ପାଇଁ ସଂକଳ୍ପ ଗ୍ରହଣ କରନ୍ତି ।

ମନୁଷ୍ୟର ହାତଧରି ତାକୁ ଦିବ୍ୟତ୍ୱ ଆଡ଼କୁ ନେଇଯିବାପାଇଁ ଭଗବାନ୍ ସଦାସର୍ବଦା ପ୍ରସ୍ତୁତ ଥିଲେ ମଧ୍ୟ ପ୍ରାଥମିକ ସ୍ତରରେ ମନୁଷ୍ୟର କିଛି ପରିମାଣରେ ବ୍ୟାକୁଳତା ଥିବା ଉଚିତ୍ । ମନୁଷ୍ୟର ନିଜର ଇଚ୍ଛାର ବୀଜ ନ ଥିଲେ ଭଗବାନଙ୍କ ଅନୁକୂଳ ସହାୟ ଆଧ୍ୟାତ୍ମିକ ଅଙ୍କୁରଣରେ କିପରି ବା କାର୍ଯ୍ୟ କରିବ ? ଅଧିକ ପ୍ରାଞ୍ଜଳ ଭାବେ କହିବାକୁ ଗଲେ ମନୁଷ୍ୟର ନିଜସ୍ୱ ସ୍ୱରୂପ ସଂପର୍କରେ ପ୍ରଶ୍ନ ପ୍ରଥମେ ତା ମନରେ ଆସିବା ଉଚିତ୍ । ମୁଁ କିଏ ? – ଏ ମୌଳିକ ପ୍ରଶ୍ନର ବାରମ୍ବାର ପନୁରାବୃତ୍ତି ମନୁଷ୍ୟ ମନରେ ଏକ ଆତ୍ମଜିଜ୍ଞାସା ସୃଷ୍ଟି କରେ । ଏ ପ୍ରଶ୍ନ ଯେତିକି ଗଭୀର ହୁଏ ଭଗବାନ୍ ସେତେ ବେଶୀ ନିକଟବର୍ତ୍ତୀ ହୁଅନ୍ତି ଏ ପ୍ରଶ୍ନର ଉତ୍ତର ଦେବା ପାଇଁ ।

ଅବତାରପୁରୁଷ ଶିରିଡ଼ିର ଶ୍ରୀ ସାଇବାବା ମଧ୍ୟ ଏ ଦିଗଟି ପ୍ରତି ବିଶେଷ ଗୁରୁତ୍ୱ ଦେଉଥିଲେ । ଦିବ୍ୟଜ୍ଞାନ ଲାଭ କରିବାର ପ୍ରଥମ ସୋପାନ ରୂପେ ଏ ପ୍ରଶ୍ନଟି ବ୍ୟକ୍ତି ନିଜକୁ ବାରମ୍ବାର ପଚାରିବା ଆବଶ୍ୟକ ବୋଲି ସୂଚନା ଦେଉଥିଲେ । ମୁଁ କିଏ ? – ଏହି ମୌଳିକ ପ୍ରଶ୍ନର ପୁନରାବୃତ୍ତି ଘଟିଲେ ଆଉ କେତୋଟି ପ୍ରଶ୍ନ ସ୍ୱତଃ ମନକୁ ଆସେ । ମୁଁ କେଉଁଠାରୁ ଆସିଛି ? ମୋର ପ୍ରକୃତ ସ୍ୱରୂପ କ'ଣ ? ମୁଁ କେଉଁ କାର୍ଯ୍ୟରେ ନିଜକୁ ନିମଗ୍ନ ରଖିବା ଠିକ୍ ହେବ ? ମୋର ଗନ୍ତବ୍ୟସ୍ଥଳ କେଉଁଟି ? ଏହି ସବୁ ପ୍ରଶ୍ନ ମନରେ ଉଠେ । ପ୍ରଶ୍ନଗୁଡ଼ିକ ପାଇଁ ମନରେ ଯେତେ ଅଧିକ ବ୍ୟାକୁଳତା ଜନ୍ମେ ଆଧ୍ୟାତ୍ମଜ୍ଞାନ ସେତେ ବେଶୀ ପ୍ରସାରିତ ହୁଏ ।

ଆଦିଶଙ୍କର ମଧ୍ୟ ତାଙ୍କର ବିରଚିତ "ହସ୍ତାମଳକ ସ୍ତୋତ୍ର"ରେ ଏହାର ମନୋଜ୍ଞ ଚିତ୍ରଣ ଦେଇଛନ୍ତି । ଦକ୍ଷିଣ ଭାରତର ଶ୍ରୀବାଲି ଗ୍ରାମର ପ୍ରଭାକର ନାମକ ଜଣେ ସାଧାରଣ ବ୍ରାହ୍ମଣର ପୁତ୍ର ହସ୍ତାମଳକ । ବାଲ୍ୟକାଳରୁ ହସ୍ତାମଳକ ସଂସାରର ଯାବତୀୟ ବସ୍ତୁପ୍ରତି ଉଦାସୀନ ଥିଲା । ସେ ମୂକ ବଧିର ପରି ଆଚରଣ କରୁଥିଲେ । ଥରେ ଆଦିଶଙ୍କର ସେ ଗ୍ରାମକୁ ଆସିଥିବା ବେଳେ ପ୍ରଭାକର ନିଜ ପୁତ୍ରକୁ ନେଇ ଶଙ୍କରାଚାର୍ଯ୍ୟଙ୍କ ପାଖକୁ ଗଲା । ଶଙ୍କରାଚାର୍ଯ୍ୟଙ୍କ ପାଖରେ ତାଙ୍କର ବହୁ ଅନୁଗତ ଶିଷ୍ୟ ଥିଲେ । ପ୍ରଭାକର ଓ ହସ୍ତାମଳକ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ ଜଣାଇଲେ । ଶ୍ରୀ ଶଙ୍କରାଚାର୍ଯ୍ୟ ସେମାନଙ୍କୁ ଆସିବାର କାରଣ ପଚାରିଲେ ।

ପ୍ରଭାକର କହିଲେ – "ପ୍ରଭୁ, ମୋର ପୁଅ କିଛି କଥା କହୁନାହିଁ । ପିଲାଦିନରୁ ସଂସାର ପ୍ରତି ସେ ଉଦାସୀନ । ତାକୁ ବର୍ତ୍ତମାନ ତେର ବର୍ଷ; ଅଥଚ ସେ ଆମର କଥାବାର୍ତ୍ତା କିଛି ବୁଝେ ନାହିଁ । କୌଣସି ବିଷୟରେ ଆଗ୍ରହ ଦର୍ଶାଏ ନାହିଁ । ବ୍ରାହ୍ମଣ ହୋଇ ମଧ୍ୟ ସେ ଏପର୍ଯ୍ୟନ୍ତ ବେଦ କିମ୍ବା ଅନ୍ୟ କୌଣସି ଶାସ୍ତ୍ର ଅଧ୍ୟୟନ କରିନାହିଁ । ତାକୁ ଅକ୍ଷର ମଧ୍ୟ ଜଣା ନାହିଁ । ବହୁତ କଷ୍ଟରେ ମୁଁ ତାର ବ୍ରତୋପନୟନ କଲି, ହେଲେ ତା'ର କୌଣସି ପରିବର୍ତ୍ତନ ଦେଖୁନାହିଁ । ସେ ଅନ୍ୟମାନଙ୍କ ସହିତ ଖେଳାଖେଳି ମଧ୍ୟ କରୁନାହିଁ । ତା'ର ଏପରି ସ୍ୱଭାବ ଦେଖି ପିଲାମାନେ ତାକୁ ଚିଡ଼ାଉଛନ୍ତି ଏବଂ ବେଳେବେଳେ ମାରୁଛନ୍ତି । ତଥାପି ତା'ର କାହା ପ୍ରତି ରାଗ ନାହିଁ । ବେଳେବେଳେ ଖାଉଛି, ଅନ୍ୟ ସମୟରେ ଉପାସ ରହୁଛି । କିନ୍ତୁ ସେ ସଦାସର୍ବଦା ହସ ହସ ଓ ପ୍ରଫୁଲ୍ଲିତ । ଦୟାକରି ଆପଣ ଏହାର କାରଣ କ'ଣ କୁହନ୍ତୁ । କିଛି ପ୍ରତିକାର କରି ମୋର ପୁଅକୁ ରକ୍ଷା କରନ୍ତୁ ।

ଶ୍ରୀ ଶଙ୍କରାଚାର୍ଯ୍ୟ ସବୁ ଶୁଣିଲା ପରେ ପିଲାଟି ଯାହା ଉତ୍ତର ଦେଇଥିଲା । ତାହା ଆଦିଶଙ୍କରଙ୍କ 'ହସ୍ତାମଳକ ସ୍ତୋତ୍ର'ରେ ସ୍ଥାନ ପାଇଛି ।

ଶ୍ରୀ ଶଙ୍କରାଚାର୍ଯ୍ୟ ପଚାରିଲେ "ହେ ପ୍ରିୟ ବାଳକ ! ତୁମେ କିଏ ? ତୁମେ କାହାର ପୁତ୍ର ? ତୁମର ନାମ କ'ଣ ? ତୁମେ କୁଆଡ଼େ ଯିବାକୁ ଚାହୁଁଛ ? ତୁମେ କେଉଁଠାକୁ ଆସିଛ ? ତୁମେ ମୋର ଅତି ପ୍ରିୟ । ମୁଁ ଚାହେଁ ତୁମେ ଏ ସବୁ ପ୍ରଶ୍ନର ଉତ୍ତର ଦିଅ ।"

ହସ୍ତାମଳକ ଉତ୍ତର ଦେଲା – "ମୁଁ ମନୁଷ୍ୟ ନୁହେଁ କି ଦେବତା ନୁହେଁ । ମୁଁ ଯକ୍ଷ ମଧ୍ୟ ନୁହେଁ । ମୁଁ ବ୍ରାହ୍ମଣ ନୁହେଁ କି କ୍ଷତ୍ରିୟ ନୁହେଁ । ମୁଁ ବୈଶ୍ୟ ନୁହେଁ କି ଶୂଦ୍ର ନୁହେଁ । ମୁଁ ବ୍ରହ୍ମଚାରୀ ନୁହେଁ କି ସଂସାରୀ ନୁହେଁ । ମୁଁ ବାନପ୍ରସ୍ଥ ଜୀବନଯାପନ କରୁନାହିଁ କି ଭିକ୍ଷୁର ଜୀବନ ଯାପନ କରୁନାହିଁ । ମୁଁ ନିଜେ ହିଁ ଶାଶ୍ୱତ ଆତ୍ମଜ୍ଞାନ ।"

ହସ୍ତାମଳକ ପୁଣି କହିଲା – ''ମୁଁ ହେଉଛି ଶାଶ୍ୱତ ଜ୍ଞାନର ପରିପ୍ରକାଶ । ମୁଁ ସମସ୍ତ ମାନସିକ କାର୍ଯ୍ୟକଳାପର ସୀମାରୁ ମୁକ୍ତ । ମୁଁ ପରିବର୍ତ୍ତନର ଊର୍ଦ୍ଧ୍ୱରେ । ଜଳରେ ପ୍ରତିଫଳିତ ମୁଖର ପ୍ରତିବିମ୍ବ ଯେପରି ମୁଖଠାରୁ ଅଭିନ୍ନ ସେହିପରି ବୁଦ୍ଧିରେ ପ୍ରତିଫଳିତ ଜୀବ ହେଉଛି ଆତ୍ମାର ପ୍ରତିବିମ୍ବ । ମୁଁ ସେହି ଆତ୍ମା । ଦର୍ପଣ ଅପସାରିତ ହେଲେ ପ୍ରତିବିମ୍ବ ଚାଲିଯାଏ, କିନ୍ତୁ ମୁଖମଣ୍ଡଳ ଚାଲିଯାଏ ନାହିଁ । ସେହିପରି ବୁଦ୍ଧିର ଅନୁପସ୍ଥିତିରେ ମଧ୍ୟ ଆତ୍ମା ତିଷ୍ଠି ରହେ । ମୁଁ ସେହି ଆତ୍ମା ।''

ହସ୍ତାମଳକ ପୁଣି କହିଲା – ''ମୁଁ ହେଉଛି ଅଧ୍ୟାତ୍ମଜ୍ଞାନର ପରିପ୍ରକାଶ । ମୁଁ ଇନ୍ଦ୍ରିୟ ଓ ମନର ଊର୍ଦ୍ଧ୍ୱରେ । ମୋର ନିଜସ୍ୱ ଆଲୋକ ରହିଛି । ସୂର୍ଯ୍ୟର ଆଲୋକ ବିଭିନ୍ନ ପାତ୍ରରେ ପ୍ରତିଫଳିତ ହେଲାପରି ମୁଁ ବିଭିନ୍ନ ମାଧ୍ୟମରେ ପ୍ରତିବିମ୍ବିତ ହୁଏ । ସୂର୍ଯ୍ୟ ଏକ ସମୟରେ ବହୁ ବସ୍ତୁକୁ ଆଲୋକିତ କଲାପରି ମୁଁ ଗୋଟିଏ ସମୟରେ ସମସ୍ତ ବୁଦ୍ଧିମତ୍ତାକୁ ଦୀପ୍ତିମୟ କରେ । ସୂର୍ଯ୍ୟ ଉଦୟ ହେବାପରେ ଆମେ ସକଳ ବସ୍ତୁକୁ ପ୍ରତ୍ୟକ୍ଷ କରିବାର ସାମର୍ଥ୍ୟ ଲାଭ କଲାପରି ମୋ ବଳରେ ହିଁ ଚକ୍ଷୁ ଦେଖିବାର ସାମର୍ଥ୍ୟ ଲାଭ କରେ । ମୁଁ ସର୍ବତ୍ର ପରିବ୍ୟାପ୍ତ । ମୁଁ ସଦା ପବିତ୍ର । ଆକାଶ ପରି ସର୍ବଦା ନିଷ୍କଳଙ୍କ ।''

ପରିଶେଷରେ ହସ୍ତାମଳକ କହିଲା –

''ଉପାଧୌ ଯଥା ଭେଦତା ସନ୍ମଣିନା ତଥା ଭେଦତା
ବୁଦ୍ଧିଭେଦେଷୁ ତେଽପି ।
ଯଥା ଚନ୍ଦ୍ରିକାଣାଂ ଜଳେ ଚଞ୍ଚଳତ୍ୱଂ ତଥା ଚଞ୍ଚଳତ୍ୱଂ
ତବାପୀହ ବିଷ୍ଣୋଃ ।।''

(ରତ୍ନସବୁର ବର୍ଣ୍ଣ ଓ ଆକାର ଯୋଗୁ ବିଭିନ୍ନ ଦେଖାଗଲା ପରି ଆତ୍ମା ବିଭିନ୍ନ ଉପାଧି ଫଳରେ ପୃଥକ୍ ପୃଥକ୍ ପ୍ରତୀୟମାନ ହୁଏ । ଏହା ବିଭିନ୍ନ ଅବସ୍ଥା ଓ ପରିବର୍ତ୍ତିତ ହେଉଥିବା ସ୍ଥାନରେ ଜଳରେ ପ୍ରତିଫଳିତ ଚନ୍ଦ୍ରର ପ୍ରତିବିମ୍ବ ପରି ଭିନ୍ନ ବୋଧ ହୁଏ । ବିଭିନ୍ନ ବାହ୍ୟ ଅବସ୍ଥା ବା ଉପାଧି ମଧ୍ୟରେ ବିଷ୍ଣୁ ପୃଥକ୍ ଲାଗନ୍ତି । କିନ୍ତୁ ବାସ୍ତବରେ ସେ ଏକ, ଚିର ପବିତ୍ର ଓ ଅପରିବର୍ତ୍ତନୀୟ ।)

କହିବା ନିଷ୍ପ୍ରୟୋଜନ ଯେ ହସ୍ତାମଳକ ମୂକ କିମ୍ବା ବଧିର ନ ଥିଲା । ବାସ୍ତବରେ ସେ ଥିଲା ଆତ୍ମଦୀପ୍ତ ଜଣେ ପ୍ରଜ୍ଞାନୀ । ଆଦିଶଙ୍କର ଏହା ଅନୁଭବ କରି ତା'ର ଉତ୍ତରସବୁକୁ ସ୍ତୋତ୍ର ଆକାରରେ ରୂପ ଦେଲେ ।

ଗ୍ରାମ୍ୟ ପରିବେଶରେ ପ୍ରତିପାଳିତ ଗୋଟିଏ ବାଳକର କଥୋପକଥନକୁ ଭିତ୍ତି କରି ଶ୍ରୀ ଶଙ୍କରାଚାର୍ଯ୍ୟ ହସ୍ତାମଳକ ସ୍ତୋତ୍ର ଲେଖିବାର ବିଶେଷ ତାତ୍ପର୍ଯ୍ୟ ହେଉଛି ଆତ୍ମବିଚାର ଉପରେ ଗୁରୁତ୍ୱ ଆରୋପ କରିବା । ନିଜର ସତ୍ତା ବିଷୟରେ ମୌଳିକ ପ୍ରଶ୍ନ ପଚାରି ହସ୍ତାମଳକ ଯେଉଁ ଆତ୍ମଜ୍ଞାନ ଲାଭ କରିଥିଲା, ତାହା ଜ୍ଞାନର ଶୀର୍ଷବିନ୍ଦୁ । ଶିରିଡ଼ିର ଶ୍ରୀ ସାଇବାବା ଏକ ମୌଳିକ ପ୍ରଶ୍ନକୁ ବାରମ୍ବାର ନିଜକୁ ପଚାରିବା ପାଇଁ ଅନୁଗତ ଲୋକମାନଙ୍କୁ ପରାମର୍ଶ ଦେଉଥିଲେ ।

ବିଂଶ ଶତାବ୍ଦୀର ମଧ୍ୟଭାଗରେ ଦକ୍ଷିଣ ଭାରତର ଯୁଗପୁରୁଷ ରମଣ ମହର୍ଷି ମଧ୍ୟ ଏହି ଆତ୍ମବିଚାର ଉପରେ ପ୍ରାଧାନ୍ୟ ଆରୋପ କରିଛନ୍ତି । ରମଣ ମହର୍ଷି କହୁଥିଲେ – ''ମୁଁ କିଏ ? – ଏ ପ୍ରଶ୍ନ ପଚାରି ତା'ର ଉତ୍ତର ସନ୍ଧାନ କରିବାର ଅର୍ଥ ହେଉଛି ଅହଂକେନ୍ଦ୍ରୀ ଭାବନା ବା ଅହମିକାର ଉତ୍ପତ୍ତି ସ୍ଥଳକୁ ଆବିଷ୍କାର କରିବା । ବାରମ୍ବାର ଏ ପ୍ରଶ୍ନର ପୁନରାବୃତ୍ତି କରିବା ଫଳରେ 'ମୁଁ ଯେ ଶରୀର ନୁହେଁ' ଏପରି ଚିନ୍ତା ବିକଶିତ ହୁଏ । 'ମୁଁ'ର ଉତ୍ପତ୍ତିସ୍ଥଳ ଖୋଜିବା ମାଧ୍ୟମରେ ବ୍ୟକ୍ତି ଅଦରକାରୀ ଭାବନାରୁ ମୁକ୍ତ ହୁଏ । ତୁମ୍ଭମାନଙ୍କ ମଧ୍ୟରେ ଅନ୍ୟ କୌଣସି ଚିନ୍ତା ଆସିବା ଉଚିତ ନୁହେଁ । 'ମୁଁ କିଏ ?' ବୋଲି ସଦାସର୍ବଦା ନିଜକୁ ପଚାର, ମନରେ ଅନ୍ୟ ଚିନ୍ତା ଉଦୟ ହେବାମାତ୍ରେ 'ମୁଁ କିଏ ?' ବୋଲି ପ୍ରଶ୍ନ କରିଚାଲ । 'ମୁଁ'ର ଉତ୍ପତ୍ତି ସ୍ଥଳ ସଂପର୍କରେ ଜିଜ୍ଞାସା କର ।

ଏପରି ଆତ୍ମାନୁସନ୍ଧାନ ଉପରେ ଗୁରୁତ୍ୱ ଦେଇ ରମଣ ମହର୍ଷି କେତେକ କାରଣ ସୂଚିତ କରିଥିଲେ ।

ପ୍ରଥମତଃ ମନୁଷ୍ୟର ପ୍ରଥମ ସମସ୍ୟା ହେଉଛି ସେ ନିଜର ପ୍ରକୃତ ସ୍ୱରୂପ ସଂପର୍କରେ ସଚେତନ ନୁହେଁ । ନିଜର ସାଧାରଣ ବୁଦ୍ଧିରେ ପରିଚାଳିତ ହୋଇ 'ମୁଁ ଜାଣେ', 'ମୁଁ ଦେଖେ', 'ମୁଁ ଶୁଣେ', 'ମୁଁ ଭାବେ', 'ମୁଁ ବିଚାର କରେ' – ଏହିପରି ଭାବନାର ବଳୟ ସବୁ ମଧ୍ୟରେ ନିଜର ପ୍ରକୃତ ସ୍ୱରୂପ ଲୁଚିଯାଏ । ଏପରି ଭାବନା ସବୁ ଫଳରେ ନିଜର ସତ୍ତା ଗୋଟିଏ ଦେହ ଓ ଗୋଟିଏ ନାମ ସହିତ ସଂଯୁକ୍ତ ହେଇଯାଏ ।

ରମଣ ମହର୍ଷି ପ୍ରସଙ୍ଗରେ ଗୋଟିଏ ସୁନ୍ଦର ଉଦାହରଣ ଦିଅନ୍ତି । ସେ କହନ୍ତି ଯେ 'ମୁଁ'ର ପ୍ରକୃତ ସ୍ୱରୂପ ହେଉଛି ପବିତ୍ର, ନାମହୀନ ଓ ଆକାରହୀନ । ଏହା ଏକ ଅମାପ ସାଗର । କିନ୍ତୁ ଅହଂକେନ୍ଦ୍ରୀ ଚିନ୍ତା ହେଉଛି ପାଣିଫୋଟକା । ପାଣିଫୋଟକା ହେଲେ ମଧ୍ୟ ଏହା ଜଳର ଅଂଶ ବିଶେଷ । କିନ୍ତୁ ପାଣିର ଫୋଟକା ହୋଇଥିବାରୁ

ଏହା ନିଜକୁ ପୃଥକ୍ ବୋଲି ବିଚାର କରେ । ଭ୍ରମରେ ପଡ଼ି ଏହାର ଆକାରକୁ ବଡ଼ କରି ଧରି ବସେ । ମାତ୍ର ଫୋଟକା ଫାଟିଗଲା ମାତ୍ରେ ଭିନ୍ନତା ଭାବ ମିଳାଇଯାଏ ଏବଂ ଜୀବରୂପକ 'ମୁଁ' ବିଶ୍ୱଚେତନାର ସାଗର ମଧ୍ୟରେ ମିଶିଯାଏ । ସୁତରାଂ ଗୋଟିଏ ପାଣିଫୋଟକା ଯେ ସାଗରଠାରୁ ଭିନ୍ନ ଏବଂ ଅନ୍ୟାନ୍ୟ ପାଣିଫୋଟକା ଯେ ସାଗରଠାରୁ ଭିନ୍ନ ଏବଂ ଅନ୍ୟାନ୍ୟ ପାଣିଫୋଟକାଠାରୁ ଭିନ୍ନ – ଏ ଭାବନା ଭ୍ରାନ୍ତିକର । ଏ ଭାବନାର ସଂଶୋଧନ ହିଁ ଜ୍ଞାନଲାଭର ଏକ ତାତ୍ପର୍ଯ୍ୟପୂର୍ଣ୍ଣ ସୋପାନ।

ବାସ୍ତବରେ ବିଶ୍ୱଚେତନା ଏକ । 'ଯୋଗ ବଶିଷ୍ଠ'ରେ କୁହାଯାଇଛି – ''ପ୍ରକୃତ ସତ୍ୟ ଆମପାଇଁ ଲୁକ୍କାୟିତ । ଅସତ୍ୟ ହିଁ ଆମ ଆଗରେ ପ୍ରକାଶିତ ।''

ଆମେ ସତ୍ୟ ହୁଏତ ଅନୁଭବ କରୁ, କିନ୍ତୁ ମିଥ୍ୟାରେ ବିଶ୍ୱାସ କରୁ । ଗୋଟିଏ ଉଦାହରଣ ଦିଆଯାଇପାରେ । ଧରାଯାଉ ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ଜଣେ ଅଭିନେତା । ସେ କେତେବେଳେ ବିଚାରକ ଆସନରେ ବସି ଦୋଷୀର ବିଚାର କରନ୍ତି, କେତେବେଳେ ବଣରେ ପଶି ଡକାୟତ ରୂପେ ଲୁଣ୍ଠନ କରନ୍ତି । ସେହି ପୂର୍ଣ୍ଣଚନ୍ଦ୍ର ଅନ୍ୟ ସମୟରେ ମଞ୍ଚଉପରେ ବଣ ମଣିଷ ଭୂମିକାରେ ଅଭିନୟ କରି ନିଜର ବନ୍ୟତା ଦର୍ଶାନ୍ତି । ଏ ସମସ୍ତ କାର୍ଯ୍ୟକଳାପ ଅପ୍ରାକୃତିକ । ଏ ସବୁ ସତ୍ତ୍ୱେ ଆମେ ତାଙ୍କର ପ୍ରକୃତ ସତ୍ତା ଓ ବ୍ୟକ୍ତିତ୍ୱ ପ୍ରତି ସଚେତନ ନ ହୋଇ ଅଭିନୀତ କ୍ରିୟାକଳାପରେ ବାନ୍ଧି ହୋଇରହୁ । ଆମେ ମଞ୍ଚଉପରେ ଦେଖୁଥିବା ସବୁକଥା ଅସତ୍ୟ ଏବଂ ଯାହା ଆମେ ଦେଖୁଚାହୁଁ ତାହା ହିଁ ସତ୍ୟ । ଅଧ୍ୟାତ୍ମ ବିଜ୍ଞାନରେ ଏହା ହିଁ ହେଉଛି 'ମାୟା' ।

ମାୟାର ଏହି ଆବର୍ତ୍ତ ମଧ୍ୟରୁ ନିସ୍ତାର ପାଇବା ପାଇଁ 'ମୁଁ କିଏ ?' ହେଉଛି ଏକ ଅମୋଘ ଅସ୍ତ୍ର । ମାୟାର ଜାଲ କାଟିବା ପାଇଁ ଏହା ଏକ ଆୟୁଧ । ସାମଗ୍ରିକ ଦୃଷ୍ଟିହୀନତା ଏଡ଼ଇବା ପାଇଁ ଏକ ଅଂଜନ । ସମବେତ ସମ୍ମୋହନ (ହିପ୍ନୋସିସ୍) ଦୂର କରିବାରେ ଏ ଏକ ସଫଳ ମାଧ୍ୟମ ।

ସତ୍ୟର ଉପଲବ୍ଧି ପାଇଁ ଏକ ପଦ୍ଧତିଟି ସ୍ୱଷ୍ଟ । ଏ ପଦ୍ଧତିରେ ମନର ପ୍ରାଧାନ୍ୟ ଧୀରେ ଧୀରେ କମିଯାଏ ଏବଂ ଅହମିକା କ୍ରମଶଃ ଦୂର ହୁଏ । ବିରୋଧାତ୍ମକ ପ୍ରଶ୍ନସବୁ କମିଯାଏ ଏବଂ ବାଧା ମଧ୍ୟ ଅପସରି ଯାଏ ।

''ମୁଁ କିଏ ?'' – ର ଜିଜ୍ଞାସା ଫଳରେ ସତ୍ୟର ଉପଲବ୍ଧି ଘଟେ । ଅନ୍ୟାନ୍ୟ ପଦ୍ଧତିରେ ଜ୍ଞାନଲାଭର ଉପାୟ କରୁ କରୁ ମନ ଓ ବୁଦ୍ଧି ସକ୍ରିୟ ହୋଇଉଠନ୍ତି । ଫଳରେ ଅହଂକେନ୍ଦ୍ରୀ ଭାବନା ସବୁ ପ୍ରାଣୀକୁ କବଳିତ କରେ । ଫଳରେ 'ମନ ବା

ଅହଂ'କୁ ପୂରାପୂରି ଧ୍ୱଂସ କରିବାର ଯୋଜନା ଚୋରକୁ ଧରିବା ପାଇଁ ଚୋରକୁ ପୋଲିସ୍ ବେଶରେ ସଜାଇବା ପରି ହୁଏ ।

ଅନ୍ୟ ସବୁ ପଦ୍ଧତିରେ ମନ ଉପରେ ଚାପ ପଡ଼େ । ମାନସିକ କ୍ରିୟାକଳାପ ଯେତେ ବୃଦ୍ଧି ପାଇବ, ମୁଁ-ସଂଶ୍ଲିଷ୍ଟ ଚିନ୍ତା ସେତେ ବେଶୀ ବଢ଼ିବ । ସେଇଥିପାଇଁ ମନକୁ ସୂକ୍ଷ୍ମ ଶରୀର କୁହନ୍ତି । ଏହି ଅହଂକେନ୍ଦ୍ରୀ ଭାବନା ସବୁ କେଉଁଠାରୁ ଆସୁଛି ଚିନ୍ତା କଲେ ପ୍ରଥମେ ମନେହେବ ଏହା ଶରୀର ମଧ୍ୟରୁ ଆସୁଛି । କିନ୍ତୁ ଗଭୀରଭାବେ ଅନୁଶୀଳନ କଲେ ଦେଖାଯିବ ଏହାର ଉତ୍ପତ୍ତିସ୍ଥଳ ହେଉଛି ହୃଦୟ ।

ସବୁ ଚିନ୍ତାର କେନ୍ଦ୍ରବିନ୍ଦୁ ହେଉଛି 'ମୁଁ' । ମୁଁ-ସଂଶ୍ଲିଷ୍ଟ ଚିନ୍ତା ଆସିଲା ପରେ ହିଁ ଅନ୍ୟସବୁ ଚିନ୍ତା ଉଦୟ ହୁଏ, ଅନ୍ୟ ଭାଷାରେ କହିଲେ 'ମୁଁ' ସର୍ବନାମ ପ୍ରୟୋଗ ହେଲାପରେ 'ସେ' 'ତୁମେ' 'ସେମାନେ' ଇତ୍ୟାଦି ସର୍ବନାମମାନ ଆମ ଭାଷାରାଜ୍ୟକୁ ଆସନ୍ତି । ଅନ୍ୟସବୁ ଚିନ୍ତା ''ମୁଁ ଭାବନା'ର ପରେ ଆସୁଥିବାରୁ ଏବଂ ମନ କେବଳ ଭାବନାସବୁର ସମାହାର ହୋଇଥିବାରୁ କେବଳ ''ମୁଁ କିଏ ?'' ''ମୁଁ କିଏ ?''ର ଜିଜ୍ଞାସା ଫଳରେ ମନର କ୍ରିୟାକଳାପ ନିୟନ୍ତ୍ରିତ ହୁଏ । ଧୀରେ ଧୀରେ ମନ ମିଳାଇଯିବାକୁ ଆରମ୍ଭ କରେ ।

ବନ୍ଧନରେ ପଡ଼ିରହିଥିବା ଏହି ମୁଁ କିଏ ? — ଏ ପ୍ରଶ୍ନର ବାରମ୍ବାର ଅନ୍ତଃଉଚ୍ଚାରଣ ପ୍ରକୃତ ସତ୍ୟ ଆଡ଼କୁ ଗତି କରିବାରେ ସାହାଯ୍ୟ କରେ । ଏପରି ଆତ୍ମଚେତନବାଣୀ ଜିଜ୍ଞାସାକୁ କେହି କେହି ମନୋବିଶ୍ଳେଷଣ (Psychoanalysis) ବୋଲି ଭାବିପାରନ୍ତି । କେହି କେହି ଏହାକୁ ମନୋଚିକିତ୍ସା (Psychiatric treatment) ବୋଲି ମଧ୍ୟ ମନେ କରିପାରନ୍ତି । ପ୍ରକୃତ ଏହା ମନୋବିଶ୍ଳେଷଣ ବା ମନୋଚିକିତ୍ସା ନୁହେଁ । ଉଭୟେ ମନୋବିଶ୍ଳେଷଣକାରୀ ଓ ମନୋଚିକିତ୍ସକ ମାନସିକ ସ୍ୱାଭାବିକତା ଓ ସୁସ୍ଥତା ସୃଷ୍ଟି ପାଇଁ ଉଦ୍ୟମ କରନ୍ତି; କିନ୍ତୁ ଏମାନଙ୍କ କାର୍ଯ୍ୟଧାରା ମାନବୀୟ ଅବସ୍ଥା ମଧ୍ୟରେ ସୀମିତ ଥାଏ । ମାନବୀୟ ସ୍ଥିତିର ଊର୍ଦ୍ଧ୍ୱକୁ ଯାଇ ମନୁଷ୍ୟ ପାଇଁ ସମ୍ଭାବନା ସୃଷ୍ଟି କରିବାର ସାମର୍ଥ୍ୟ ଏମାନଙ୍କର ନ ଥାଏ । ସୁତରାଂ ନିଜକୁ ନିଜେ 'ମୁଁ କିଏ ?' ବୋଲି ପଚାରିବାର ପ୍ରଣାଳୀ ଭିନ୍ନ ।

ପ୍ରାଥମିକ ସ୍ତରରେ ମନୁଷ୍ୟ ''ମୁଁ କିଏ'' ବୋଲି ଯେଉଁ ପ୍ରଶ୍ନ ପଚାରେ ତାହାର ଉତ୍ତର ଦେହ ସଂଶ୍ଲିଷ୍ଟ ହୋଇଥାଏ । 'ମୁଁ' ଅନ୍ନମୟକୋଷରେ ଥିଲା ପରି ଲାଗେ । ଜିଜ୍ଞାସା ଗଭୀର ହେଲେ ମାନସିକ କ୍ରିୟାକଳାପ ମୁଣ୍ଡଟେକେ ଏବଂ 'ମୁଁ' ଶବ୍ଦଟି ମନୋମୟ କୋଷରେ ଥିବାର ଅନୁଭବ ଆସେ । ଜିଜ୍ଞାସା ସେଠାରେ ବନ୍ଦ

ନ କରି ''ମୁଁ କିଏ ?'' ''ମୋର ଚିନ୍ତାସବୁ କେଉଁ ଉସରୁ ଆସୁଛି ?'' ବୋଲି ନିଜକୁ ପଚାରିଲେ 'ବୁଦ୍ଧି' ବିଭିନ୍ନ ଚିନ୍ତାଭାବନା ସବୁକୁ ବିଶ୍ଳେଷଣ କରୁଛି, ସଂଯୋଜନା କରୁଛି ବୋଲି ଉତ୍ତର ମିଳେ । ଏ କ୍ଷେତ୍ରରେ 'ମୁଁ'ର ସ୍ଥିତି ବିଜ୍ଞାନମୟ କୋଷରେ ଥିଲା ପରି ବୋଧହୁଏ । ପୁଣି ମନୁଷ୍ୟ ଯେତେବେଳେ ନିଜକୁ ପଚାରିବସେ ଯେ ସେହି ବୁଦ୍ଧି ବା ଅହଂକେନ୍ଦ୍ରୀ ଭାବନା ସ୍ୱପ୍ନ ବା ନିଦ୍ରା ଅବସ୍ଥାରେ କେଉଁଠାରେ ଥିଲା, ତାହାର ଉତ୍ତର ମିଳେ ଯେ 'ମୁଁ' ବାହ୍ୟଅବସ୍ଥା ଦ୍ୱାରା ନିୟନ୍ତ୍ରିତ । ଜାଗ୍ରତ ଅବସ୍ଥାରେ ଯେଉଁ ମୁଁ କ୍ରିୟାଶୀଳ, ନିଦ୍ରା ଅବସ୍ଥାରେ ସେ ନିଷ୍କ୍ରିୟ । ସୁତରାଂ ଅନୁଭୂତ ହେଉଥିବା ଏହି 'ମୁଁ'ଟି ଶାଶ୍ୱତ ଓ ପ୍ରକୃତ ନୁହେଁ ।

ଶାଶ୍ୱତ ଓ ପ୍ରକୃତ 'ମୁଁ' ସଦାସର୍ବଦା ରହିଛି । କିନ୍ତୁ ମାନସିକ କ୍ରିୟାକଳାପ ଜନିତ ପ୍ରତିବନ୍ଧକ ଫଳରେ ଏ ଉପଲବ୍ଧି ସହଜରେ ଆସେନାହିଁ । ''ମୁଁ କିଏ ?'' ପଚାରିବା ଦ୍ୱାରା ପ୍ରତିବନ୍ଧକ ସବୁ ଧୀରେ ଧୀରେ ଦୂରେଇଯାଏ ।

ମନୁଷ୍ୟର ପ୍ରଶ୍ନର ଗଭୀରତା ଉପରେ ନିର୍ଭର କରି ଶାଶ୍ୱତ ମୁଁ ଉପଲବ୍ଧି ହେବ, ଶାଶ୍ୱତ ମୁଁ ପ୍ରକାଶିତ ହେବ । ଅଧିକ ଉଦ୍ୟମର ଆବଶ୍ୟକତା ନାହିଁ । ପ୍ରକୃତ 'ମୁଁ' ଉଦ୍‌ଭାସିତ ହେଲେ, ''ମୁଁ ବ୍ରହ୍ମ'' ବୋଲି କହିବାର ଆବଶ୍ୟକତା ପଡ଼ିବ ନାହିଁ । ଜଣେ ଲୋକ ''ମୁଁ ମଣିଷ'' ''ମୁଁ ମଣିଷ'' ବୋଲି କହିଚାଲି ନ ଥାଏ । ସେ ମଣିଷ ନୁହେଁ ବୋଲି କେହି କେହି ଅଭିଯୋଗ କଲେ ସେ ଦୃଢ଼ ସ୍ୱରରେ ମଣିଷ ବୋଲି ନିଜକୁ ପରିଚୟ ଦିଏ । ସୁତରାଂ ମନୁଷ୍ୟର ନିଜସ୍ୱ ସ୍ୱରୂପ ବ୍ରହ୍ମ ହୋଇଥିବାରୁ ତାହା ସ୍ୱତଃ ରହିଯାଏ । ଯାହାର ଉଦ୍‌ଘୋଷଣ ଦରକାର ହୁଏ ନାହିଁ ।

ପରିଶେଷରେ କୁହାଯାଇପାରେ ଯେ ଆତ୍ମଜିଜ୍ଞାସା (ମୁଁ କିଏ) ଗୋଟିଏ ଦୃଷ୍ଟିରୁ ଧ୍ୟାନ । ସବୁସମୟରେ ଏହି ପ୍ରଶ୍ନ ଏହି ଭାବନା ଉପରେ ତିଷ୍ଠି ରହିବାର ଏକନିଷ୍ଠ ନିରବଚ୍ଛିନ୍ନ ଉଦ୍ୟମ ହେଉଛି ଚିନ୍ତାଶୂନ୍ୟତାର ସ୍ତରକୁ ଉଠିବାର ପ୍ରକ୍ରିୟା । ସମର୍ଥ ସଦ୍‌ଗୁରୁ ଶ୍ରୀ ଶିରିଡ଼ି ସାଇବାବା ଏହା ଉପରେ ପ୍ରାଧାନ୍ୟ ଆରୋପ କରି ଆମ୍ଭ ମଧ୍ୟରେ ଦିବ୍ୟତ୍ୱର ଉପଲବ୍ଧି ପାଇଁ ସମ୍ଭାବନା ଦର୍ଶାଇଛନ୍ତି । କହିବା ବାହୁଲ୍ୟ ଯେ ଜୀବାତ୍ମା ଓ ପରମାତ୍ମାଙ୍କ ମଧ୍ୟରେ ଅଭେଦତ୍ୱ ହିଁ ଭାରତୀୟ ଦର୍ଶନର କେନ୍ଦ୍ରବିନ୍ଦୁ । ଆତ୍ମାନୁସନ୍ଧାନ ମାଧ୍ୟମରେ ଏହାର ଅନୁଭବ ପାଇଁ ଶ୍ରୀ ଶିରିଡ଼ି ସାଇବାବା ଓ ଅନ୍ୟ ଭାରତୀୟ ସନ୍ଥମାନେ ଏ ପ୍ରସଙ୍ଗରେ ଯେଉଁ ମାର୍ଗଦର୍ଶନ କରିଛନ୍ତି ତାହାର ପ୍ରୟୋଗାତ୍ମକ ମୂଲ୍ୟ ଅକଳନ ।



# ଆତ୍ମ-ସମୀକ୍ଷା ଓ ଆତ୍ମ-ବିଶ୍ଳେଷଣ

ଆତ୍ମୋପଲବ୍ଧି ଏକ ଲକ୍ଷ୍ୟ ହେଲେ ସାଧନା ହେଉଛି ସେ ଲକ୍ଷ୍ୟବିନ୍ଦୁ ଦିଗରେ ନିରବଚ୍ଛିନ୍ନ ଯାତ୍ରା । ଏ ଯାତ୍ରା କେଉଁ ଜନ୍ମରେ ଆରମ୍ଭ ହୁଏ ତାହା ଜାଣିବା ସମ୍ଭବ ନୁହେଁ । ପୁଣି କେଉଁ ସମୟରେ ଏ ଯାତ୍ରାର ପରିସମାପ୍ତି ଘଟି ଶେଷ ପରିଣତି ରୂପେ ଈଶ୍ୱରଙ୍କ ସହିତ ଏକତ୍ୱ ଅନୁଭବର ପୂର୍ଣ୍ଣ ଆନନ୍ଦ ମିଳିବ, ତାହା ମଧ୍ୟ ଜାଣିବା ସମ୍ଭବ ନୁହେଁ । ତଥାପି ପ୍ରତ୍ୟେକ ବ୍ୟକ୍ତିର କର୍ତ୍ତବ୍ୟ ହେଉଛି ଅବିଳମ୍ବେ ଏ ସାଧନା ପଥରେ ପଥିକ ହେବା ଏବଂ ଲକ୍ଷ୍ୟ ବିନ୍ଦୁ ଦିଗରେ ଯାତ୍ରା କରିବା ।

ସୁଦୂର ପଥ ଅତିକ୍ରମ କରି ଦୂର ସ୍ଥାନକୁ ଯାଉଥିବା ବ୍ୟକ୍ତି ଯାତ୍ରାପଥରେ ମଝିରେ ମଝିରେ ଟିକିଏ ଠିଆହୋଇ ମନକୁ ମନ ପଚାରେ – ''ମୁଁ କେତେଦୂର ଅଗ୍ରସର ହୋଇଛି ?'' ବ୍ୟକ୍ତିଟି ଯାତ୍ରାପଥର କେତେଦୂର ଅତିକ୍ରମ କଲାଣି ଏବଂ ଆଗରେ ଆଉ କେତେ ପଥ ପଡ଼ିରହିଛି, ତାହା ଜାଣିବା ଆବଶ୍ୟକ ହୁଏ । ଠିକ୍ ସେହିପରି ଈଶ୍ୱରାନୁଭୂତି ପାଇଁ ସଚେଷ୍ଟ ଥିବା ବ୍ୟକ୍ତି ମଧ୍ୟ ମନକୁ ପଚାରେ – ''ମୁଁ ସାଧନାର କେଉଁ ପର୍ଯ୍ୟାୟରେ ପହଞ୍ଚିଛି ?'' ବ୍ୟକ୍ତିଟି ନିଜକୁ ଆଶ୍ରିତ ବୋଲି ମନେ କରିପାରେ, ସାଧକ ବୋଲି ମନେ କରିପାରେ ଅଥବା ଭକ୍ତ ବୋଲି ମନେ କରିପାରେ । ନିଜକୁ ଯାହା ମନେ କରୁନା କାହିଁକି, ପ୍ରୟୋଜନ ହୁଏ ନିଜେ ଅତିକ୍ରାନ୍ତ କରିଥିବା ପଥର ମାତ୍ରା ଜାଣିବାକୁ । ଏ ଦୃଷ୍ଟିରୁ ନିଜର ଅଗ୍ରଗତି ସଂପର୍କରେ ଜିଜ୍ଞାସା ଓ ମୂଲ୍ୟାୟନ ଏକ ସ୍ୱଭାବିକ ପ୍ରକ୍ରିୟା । ଆଧ୍ୟାତ୍ମିକ ବିକାଶ ପାଇଁ ଏହା ଏକ ବହୁ ପ୍ରୟୋଜନ ପ୍ରକିୟା ।

ନିଜକୁ ଠିକ୍‌ଭାବେ ପରଖି ଦେଖିବା ପାଇଁ ଶିରିଡ଼ିର ସାଇବାବା ଏବଂ ଅନ୍ୟାନ୍ୟ ଅବତାର ପୁରୁଷମାନେ ପରାମର୍ଶ ଦେଇଥିଲେ ମଧ୍ୟ ମଣିଷ ଏ ଦିଗରେ ପ୍ରଯତ୍ନ କରିନାହିଁ । ପୁଣି ନିଜକୁ ବିଚାର କରିବାକୁ ଚେଷ୍ଟା କଲାବେଳେ ତାହା ତ୍ରୁଟିପୂର୍ଣ୍ଣ ଭାବରେ କରିଛି । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ ମନୁଷ୍ୟ ନିଜର ସଫଳତା ଓ ବିଫଳତାର କାରଣ ସ୍ଥିର କରିବା ସମୟରେ ତ୍ରୁଟିପୂର୍ଣ୍ଣ ପନ୍ଥାର ଆଶ୍ରୟ ନେଇଛି ।

## ସଫଳତା ଓ ବିଫଳତାର ବିଚାର

ମନୁଷ୍ୟ ବିଭିନ୍ନ କାର୍ଯ୍ୟକ୍ଷେତ୍ରରେ ସଫଳତା କିମ୍ବା ବିଫଳତା ଅନୁଭବ କରେ । ବିଚାର ସମୟରେ ଏହି ସଫଳତା ଓ ବିଫଳତାର କାରଣ ତା' ମନକୁ ଆସେ । ସାଧାରଣତଃ ଦେଖାଯାଏ ଯେ ମନୁଷ୍ୟ ନିଜ ସଫଳତାର ମୂଲ୍ୟାୟନ କଲାବେଳେ ଯେଉଁସବୁ ମାନଦଣ୍ଡ ଗ୍ରହଣ କରୁଛି, ବିଫଳତାର ବିଚାର କଲାବେଳେ ଭିନ୍ନସବୁ ମାନଦଣ୍ଡର ଅବତାରଣା କରୁଛି । ସଫଳତାକୁ ନିଜ ସୁଗୁଣର ପରିପ୍ରକାଶ ରୂପେ ବିଚାର କରିବା ସ୍ଥଳେ ବିଫଳତା ପାଇଁ ପରିବେଶକୁ ଦୋଷାରୋପ କରୁଛି । କାର୍ଯ୍ୟକ୍ଷେତ୍ରରେ ସଫଳ ହେଲେ ନିଜର କର୍ମଦକ୍ଷତା ଓ ବୁଦ୍ଧିମତ୍ତା ଯୋଗୁଁ ଏହା ସମ୍ଭବ ହେଲା ବୋଲି ଭାବୁଛି । କୌଣସି ଆଧ୍ୟାତ୍ମିକ କାର୍ଯ୍ୟରେ ସାଫଲ୍ୟ ମିଳିଲେ ସେ ନିଜେ ନିଷ୍ଠାପର ହୋଇଥିବାରୁ ଏହା ଘଟିଲା ବୋଲି ଭାବୁଛି । ଅଥଚ କାର୍ଯ୍ୟକ୍ଷେତ୍ରରେ ବିଫଳତା ଘଟିଲେ ବାହ୍ୟ ପରିସ୍ଥିତି ସଂପୂର୍ଣ୍ଣ ପ୍ରତିକୂଳ ଥିବାରୁ ଏପରି ଘଟିଲା ବୋଲି ବିଚାର କରୁଛି । ସାଧନାରେ ବିଫଳତା ଆସିଲେ ଅନ୍ୟମାନଙ୍କର ଚକ୍ରାନ୍ତ ଏଥିପାଇଁ ଦାୟୀ ବୋଲି ବିଚାର କରୁଛି । ବିଫଳତା କ୍ଷେତ୍ରରେ ବ୍ୟକ୍ତିର ନିଷ୍ଠାର ଅଭାବ ଥାଇପାରେ କିମ୍ବା ପ୍ରଯତ୍ନଶୀଳତାର ଅଭାବ ଥାଇପାରେ, ଏ ଚିନ୍ତା ତା' ମନକୁ ଆସୁନାହିଁ । ମୋଟ ଉପରେ ସଫଳତା କ୍ଷେତ୍ରରେ ଆମେ ନିଜକୁ ସୁଗୁଣର ଅଧିକାରୀ ଭାବିବା ସ୍ଥଳେ ବିଫଳତା କ୍ଷେତ୍ରରେ ପରିବେଶ ତ୍ରୁଟିପୂର୍ଣ୍ଣ ବୋଲି ଧରିନେଉଛୁ । ଦୁଇଟି ସ୍ଥାନରେ ଦୁଇଟି ପୃଥକ୍ ପୃଥକ୍ ମାନଦଣ୍ଡର ବ୍ୟବହାର ଯୁକ୍ତିଯୁକ୍ତ ନୁହେଁ ।

ଅତୀତର ସ୍ମୃତି ଉପରେ ଆଧାରିତ ଏକ ଗଳ୍ପଦ୍ୱାରା ଏହାକୁ ସ୍ପଷ୍ଟ କରାଯାଇପାରେ । ଥରେ ଗୋଟିଏ ଲୋକ ନିଜ ବଗିଚାରେ କାମ କରୁଥିବା ସମୟରେ ଗୋଟିଏ ଗାଈ ବାଡ଼ଭାଙ୍ଗି ବଗିଚା ନଷ୍ଟ କରିବାକୁ ଚେଷ୍ଟା କରୁଥିବା ସମୟରେ ଲୋକଟି ଗାଈଟିକୁ ଜୋର୍‌ରେ ମାରିଲା । ଆଘାତରେ ଗାଈଟି ସେଠାରେ ଟଳି ପଡ଼ି ମରିଗଲା । ଲୋକଟି ଗୋହତ୍ୟା ଦୋଷରେ ପଡ଼ିଲା । ଯମଦୂତମାନେ ଲୋକଟିକୁ ଯମପୁରକୁ ନେଇଯିବା ପାଇଁ ଆସିଲେ ।

ଲୋକଟି ଯମଦୂତମାନଙ୍କ ସହିତ ଯୁକ୍ତି କରିବାକୁ ଲାଗିଲା । ଲୋକଟି ଯୁକ୍ତି କଲା ଯେ ଇନ୍ଦ୍ର ହେଉଛନ୍ତି ହାତର ଦେବତା; ସୁତରାଂ ଲୋକଟିର ହାତ ଗାଈଟିକୁ ମାରିଥିବା ଦୃଷ୍ଟିରୁ ପ୍ରକୃତରେ ଇନ୍ଦ୍ର ଦେବତା ଦୋଷୀ । ଯମଦୂତମାନେ ଇନ୍ଦ୍ରଙ୍କ ପାଖକୁ ଯିବା ଉଚିତ । କଥାମାନି ଯମଦୂତମାନେ ଇନ୍ଦ୍ରଦେବଙ୍କ ପାଖକୁ ଗଲେ । ଇନ୍ଦ୍ରଦେବଙ୍କ ପାଖରେ ଯମଦୂତମାନେ ଲେକୋଟିର ଯୁକ୍ତିର ଅବତାରଣା କଲେ । ସମାଧାନ ପାଇଁ

ଇନ୍ଦ୍ରଦେବ କିଛି ସମୟ ମାଗିଲେ । ତା'ପରେ ଇନ୍ଦ୍ରଦେବ ଛଦ୍ମବେଶରେ ଜଣେ ଭଦ୍ରଲୋକ ଭାବେ ଲୋକଟିର ବଗିଚା ପାଖକୁ ଆସିଲେ । ବଗିଚାଟି ସୁନ୍ଦର ଫୁଲ ଫଳରେ ଶୋଭା ପାଉଥିଲା । ଭଦ୍ରଲୋକ ବେଶରେ ଇନ୍ଦ୍ରଦେବ ଉଚ୍ଚ ପ୍ରଶଂସା କରିବାକୁ ଲାଗିଲେ । ପ୍ରଶଂସା ଶୁଣି ଲୋକଟି ବଗିଚାର ବାଡ଼ପାଖକୁ ଆସିଲା ଏବଂ ପ୍ରଶଂସକଙ୍କ ସହିତ କଥାବାର୍ତ୍ତା କରିବାକୁ ଲାଗିଲେ । ପ୍ରଂଶସା ଶୁଣି ଲୋକଟି ବଗିଚାର ବାଡ଼ପଖକୁ ଆସିଲା ଏବଂ ପ୍ରଶଂସକଙ୍କ ସହିତ କଥାବାର୍ତ୍ତା କରିବାକୁ ଆରମ୍ଭ କଲା । ଛଦ୍ମବେଶୀ ଇନ୍ଦ୍ରଦେବ କହିଲେ – ''ଆପଣଙ୍କ ଉଦ୍ୟାନଟି ଖୁବ୍ ମନୋଜ୍ଞ । ଫଳପୁଷ୍ପଭରା ଏହି ଉଦ୍ୟାନଟି ସବୁ ଲୋକଙ୍କୁ ଖୁବ୍ ଆକର୍ଷଣ କରିବ ।'' ଲୋକଟି ଉତ୍ସାହିତ ହୋଇ କହିଲା – ''ମୋର ବଗିଚାଟି ପ୍ରକୃତରେ ସୁନ୍ଦର ।'' ଇନ୍ଦ୍ର ପ୍ରଶ୍ନ କଲେ – ''ଆପଣ କ'ଣ ନିଜେ ପରିଶ୍ରମ କରି ଏହାକୁ ଏପରି ଶୋଭାବନ୍ତ କରିଛନ୍ତି ?'' ଲୋକଟି କହିଲା – ''ମୁଁ ଏକାକୀ ସବୁ କରିଛି । ଚାରା ଆଣି ଖତ ଦେବାଠାରୁ ଆରମ୍ଭ କରି ପାଣିଦେବା ପର୍ଯ୍ୟନ୍ତ ସବୁକାମ ମୁଁ ନିଜ ହାତରେ କରିଛି । କୌଣସି ଲୋକ ମୋତେ ଏଥିପାଇଁ ସାହାଯ୍ୟ କରିନାହାନ୍ତି ।'' ଇନ୍ଦ୍ରଦେବ ପୁଣି ପ୍ରଶ୍ନ କଲେ – ''ଆପଣ କ'ଣ ସତରେ ନିଜ ହାତରେ ଏତେ ବଡ଼ କାମ କରିପାରିଲେ ?'' ଲୋକଟି ଦୃଢ଼ ସ୍ୱରରେ ଜବାବ ଦେଲା – ''ଏ କାମରେ ମୋ ହାତ ଛଡ଼ା ଆଉ କାହାର ହାତ ବାଜି ନାହିଁ ।''

ଇନ୍ଦ୍ରଦେବ ଏହିପରି ଏକ ମୁହୂର୍ତ୍ତକୁ ଅପେକ୍ଷା କରିଥିଲେ । ସେ ସଂଗେ ସଂଗେ କହିଲେ – ''ସୁନ୍ଦର ବଗିଚା କରିବା ଭଳି କାମଟି ଭଲ ହେବା ବେଳେ ତୁମର ହାତ ହେଉଛି କର୍ତ୍ତା, ଅଥଚ ଗାଈକୁ ମାରିବା ଭଳି ପାପକର୍ମ କଲାବେଳେ ତାହା ତୁମର ହାତର ଦୋଷ ନ ହୋଇ ହାତର ଦେବତା ଇନ୍ଦ୍ରଙ୍କ ଦୋଷ ହେଲା କିପରି ?'' କହିବା ନିଷ୍ପ୍ରୟୋଜନ ଯେ ଲୋକଟି ପାଖରେ କିଛି ଉତ୍ତର ନଥିଲା । ସଂଗେ ସଂଗେ ଯମଦୂତମାନେ ସେମାନଙ୍କର କାମ କଲେ । ନିଜର କୃତ ପାପକର୍ମ ପାଇଁ ଲୋକଟି ଯମବିଧାନକୁ ମାନିନେଲା ।

ମୋଟ ଉପରେ ନିଜର ସଫଳତା କ୍ଷେତ୍ରରେ ବ୍ୟକ୍ତିର ନିଜର ସୁଗୁଣ ବା ସାମର୍ଥ୍ୟର ଭୂମିକା ବିଚାର କରିବା ସଂଗେ ସଂଗେ ପରିବେଷ୍ଟନୀ ବା ଅନ୍ୟମାନଙ୍କର ସହାୟତା ବିଚାର କରିବା ଉଚିତ । ସେହିପରି ନିଜର ବିଫଳତାର କାରଣ ଖୋଜିବା ସମୟରେ ପରିବେଷ୍ଟନୀର ପ୍ରତିକୂଳ ଅବସ୍ଥା ବିଚାର କରିବା ସଂଗେ ସଂଗେ ନିଜର ଦୋଷତ୍ରୁଟି ଓ ଦୁର୍ବଳତା ମଧ୍ୟ ଦେଖିବା ଉଚିତ୍ ।

ବିଫଳତା କ୍ଷେତ୍ରରେ ନିଜର ତ୍ରୁଟିବିଚ୍ୟୁତିକୁ ନିରୀକ୍ଷଣ କରିବା ଫଳରେ ସାଧନା ଅଧିକ ସକ୍ରିୟ ହୁଏ । ନିଜର ମାନସିକ ଦୃଢ଼ତାର ଅଭାବ ଯୋଗୁଁ ବ୍ୟକ୍ତି ଏ ପର୍ଯ୍ୟନ୍ତ

ସାଧନାରେ ଯଥେଷ୍ଟ ଅଗ୍ରସର ହୋଇପାରି ନାହିଁ ବୋଲି ବିଚାର କଲେ ଅଧିକ ମାନସିକ ଦୃଢ଼ତା ଗଢ଼ିତୋଳିବ । ନିଜର ଯତ୍ନଶୀଳତାର ଅଭାବ ଯୋଗୁଁ କେତୋଟି ଭଲ କାର୍ଯ୍ୟ ଏ ପର୍ଯ୍ୟନ୍ତ କରିପାରି ନାହିଁ ବୋଲି ଭାବିଲେ ଅଧିକ ଯତ୍ନଶୀଳ ହେବ । ଭଲ ବୋଲି ବିଚାର କରୁଥିବା କାର୍ଯ୍ୟରେ ସେ ସମୟ ଦେଇପାରି ନଥିବାରୁ କାମସବୁ ସୁସମ୍ପାଦିତ ହୋଇପାରି ନାହିଁ ବୋଲି ଚିନ୍ତା କଲେ ସମୟ ଦେବାରେ ଆଗଭର ହେବ । ସ୍ଥୂଳତଃ ଯେଉଁ ସବୁ ତ୍ରୁଟି ବିଚ୍ୟୁତି ରହିଯାଉଛି ସେଠାରେ ନିଜର ଦୋଷଦୁର୍ବଳତା କେତେ ଦାୟୀ, ସେ ଦିଗରେ ବ୍ୟକ୍ତି ଧ୍ୟାନଶୀଳ ହେବା ବିଧେୟ । ବିଫଳତା ପାଇଁ କେବଳ ପରିସ୍ଥିତିକୁ ଦାୟୀ କରି ଛାଡ଼ିଦେଲେ ବ୍ୟକ୍ତିର ବ୍ୟକ୍ତିତ୍ୱରେ ଆବଶ୍ୟକ ପରିବର୍ତ୍ତନ ସମ୍ଭବ ହେବ ନାହିଁ ।

### ଆତ୍ମସାମର୍ଥ୍ୟବୋଧ :-

ନିଜ ବିଫଳତାର କାରଣ ଅନୁଶୀଳନ କଲାବେଳେ ନିଜର ବ୍ୟକ୍ତିଗତ ତ୍ରୁଟିବିଚ୍ୟୁତିକୁ ନିରୀକ୍ଷଣ କରିବା ପାଇଁ ଉପରେ ଯେଉଁ ପରାମର୍ଶ ଦିଆଯାଇଛି, ତାହାର ଅର୍ଥ ନୁହେଁ ଯେ ବ୍ୟକ୍ତି ନିଜର ସାମର୍ଥ୍ୟ ସଂପର୍କରେ ଆତ୍ମବିଶ୍ୱାସ ହରାଇବ । ଈଶ୍ୱରଙ୍କ ପ୍ରତି ବିଶ୍ୱାସ ମନୁଷ୍ୟର ଅହମିକାକୁ ନଷ୍ଟ କରେ । ମାତ୍ର ଗଭୀର ଈଶ୍ୱର ବିଶ୍ୱାସ ଆତ୍ମ-ବିଶ୍ୱାସକୁ ଦୃଢ଼ୀଭୂତ କରେ । ଈଶ୍ୱର ପ୍ରେମୀ ମନୁଷ୍ୟ ନିଜକୁ ଈଶ୍ୱରଙ୍କ ଅଂଶ ବିଶେଷ ବୋଲି ଚିନ୍ତା କରି ନିଜକୁ ଦିବ୍ୟ ସଂକଳ୍ପର ଆୟୁଧ ବୋଲି ବିଚାର କରେ । ସୁତରାଂ ଈଶ୍ୱର ବିଶ୍ୱାସ ଓ ଆତ୍ମ-ବିଶ୍ୱାସ ପରସ୍ପରର ବିରୋଧୀ ନୁହନ୍ତି ।

ଆତ୍ମବିଚାର ସମୟରେ ଆତ୍ମବିଶ୍ୱାସ ଓ ଆତ୍ମ-ସାମର୍ଥ୍ୟବୋଧ ସାଧନାକୁ ଦୃଢ଼ କରେ । ଏହା ଏକ ମନସ୍ତାତ୍ତ୍ୱିକ ସତ୍ୟ ଯେ ଆମର କାର୍ଯ୍ୟ ସମ୍ପାଦନାର ଦୁଇଟି ଦିଗ ରହିଛି । ପ୍ରଥମଟି ହେଉଛି କାର୍ଯ୍ୟକୁଶଳତା ଜ୍ଞାନ ଆହରଣ ଏବଂ କାର୍ଯ୍ୟକୁଶଳତା ସମ୍ପାଦନ । କାର୍ଯ୍ୟକୌଶଳର ଆହରଣ ଆମର ଶିକ୍ଷାଦୀକ୍ଷା ଓ ତାଲିମ ଇତ୍ୟାଦି ଦ୍ୱାରା ବୃଦ୍ଧି ପ୍ରାପ୍ତ ହୁଏ । କିନ୍ତୁ ଏକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ପ୍ରକୃତ କାର୍ଯ୍ୟ ସମ୍ପାଦନଟି କେବଳ କାର୍ଯ୍ୟ କୌଶଳ ଜ୍ଞାନ ଦ୍ୱାରା ସ୍ଥିରୀକୃତ ହୁଏ ନାହିଁ । କୌଶଳ ଜ୍ଞାନ ବ୍ୟତୀତ କାର୍ଯ୍ୟ ସମ୍ପାଦନ ପାଇଁ ଏକପ୍ରକାର ବିଶ୍ୱାସବୋଧ ଆବଶ୍ୟକ । ବ୍ୟକ୍ତିଟି ସେ ସୁଚାରୁରୂପେ କାର୍ଯ୍ୟଟିକୁ ସମ୍ପାଦନ କରିପାରିବ, ଏ ବିଶ୍ୱାସର ମାତ୍ରା ତା' କାର୍ଯ୍ୟ ସଫଳତାକୁ ରୂପ ଦିଏ । ଏପରି ଆତ୍ମ-ସାମର୍ଥ୍ୟବୋଧର ମାତ୍ରା ଯେତେ ବେଶୀ ହେବ କାର୍ଯ୍ୟ ସମ୍ପାଦନର ସଫଳତା ସେତିକି ବୃଦ୍ଧି ପାରିବ । ଅବଶ୍ୟ କାର୍ଯ୍ୟ ଦକ୍ଷତାର (କୌଶଳ ଜ୍ଞାନ) ଭୂମିକାକୁ ଅସ୍ୱୀକାର କରାଯାଉନାହିଁ । କିନ୍ତୁ କୌଶଳଜ୍ଞାନ

ସମାନଥାଇ ମଧ୍ଯ ଅଧିକ ଆତ୍ମସାମର୍ଥ୍ୟବୋଧ ଥିବା ଲୋକ କମ୍ ସାମର୍ଥ୍ୟବୋଧ ଥିବା ଲୋକଠାରୁ ବେଶୀ ସଫଳ ହେବ ଏ ସଂପର୍କରେ ପ୍ରାଧାନ୍ୟ ଦିଆଯାଉଛି ।

ଆତ୍ମସମାର୍ଥ୍ୟବୋଧର ସାଧନା ପରିପ୍ରେକ୍ଷୀରେ ଏକ ବିଶେଷ ତାତ୍ପର୍ଯ୍ୟ ରହିଛି । ପରିବାରରେ ଉପଯୋଗୀ ଅନୁଭୂତି, ଅନ୍ୟମାନଙ୍କର ସୁପ୍ରରୋଚନା ଏବଂ ଅତୀତର ଭଲ ଅନୁଭବ ଆମର ଆତ୍ମସାମର୍ଥ୍ୟବୋଧ ବଢ଼ାଇଥାଏ । ଏତଦ୍‌ବ୍ୟତୀତ ଆଉ ଗୋଟିଏ ଉପାୟରେ ଆମର ଆତ୍ମସାମର୍ଥ୍ୟବୋଧ ବିକଶିତ ହୁଏ । ତା ହେଉଛି ଆମର ନିକଟସ୍ଥ ପରିବେଶରେ ଏକ ଆଦର୍ଶ ସ୍ଥାନୀୟ ଏବଂ ଅନୁକରଣୀୟ ବ୍ୟକ୍ତିତ୍ୱ । ଧରାଯାଉ ଆମର ପରିବେଶରେ ଆମେ ଜଣେ ସାଧକଙ୍କ ସଂସ୍ପର୍ଶରେ ଆସିଛୁ ଏବଂ ତାଙ୍କର ସଦ୍‌ଗୁଣ ଆମକୁ ପ୍ରଭାବିତ କରୁଛି । ଏ କ୍ଷେତ୍ରରେ ଆମ ମନରେ ଶକ୍ତି ସଞ୍ଚରଣର ଯଥେଷ୍ଟ ସମ୍ଭାବନା ଅଛି ।

ଆମ ନିକଟସ୍ଥ ପରିବେଶରେ ଥିବା ଜଣେ ଆଦର୍ଶ ପୁରୁଷଙ୍କୁ ସମ୍ମୁଖରେ ରଖି ଆମେ ନିଜର ଆତ୍ମସାମର୍ଥ୍ୟବୋଧକୁ ଦୃଢ଼ କରିପାରିବୁ କି ନାହିଁ ତାହା ଏକ ବିଶେଷ ଉପାଦାନ ଉପରେ ନିର୍ଭର କରେ । ତାହା ହେଉଛି ସେପରି ଆଦର୍ଶ ବ୍ୟକ୍ତିତ୍ୱ ଓ ଆମ ମଧ୍ୟରେ ଥିବା ସାମଞ୍ଜସ୍ୟ ଓ ଅସାମଞ୍ଜସ୍ୟ ଉପରେ ଆପେକ୍ଷିକ ଗୁରୁତ୍ୱ ଆରୋପ । ଏହା ଏକ ମାନବୀୟ ଦୁର୍ବଳତା ଯେ ଆମେ ସାଧାରଣତଃ ସଫଳ ମନୁଷ୍ୟ ଓ ଆମ ମଧ୍ୟରେ ଥିବା ସାମଞ୍ଜସ୍ୟକୁ ନ ଦେଖି ଅସମାନତା ଉପରେ ଅଧିକ ଗୁରୁତ୍ୱ ଆରୋପ କରୁ । ବ୍ୟକ୍ତିଜଣକ ବିତ୍ତଶାଳୀ ହୋଇଥିବାରୁ ତାଙ୍କର ଏପରି ସଫଳତା ଆସିଲା, ତାଙ୍କର ବହୁ ପ୍ରଭାବଶାଳୀ ସହାୟକ ବନ୍ଧୁବାନ୍ଧବ ଥିବାରୁ ଏପରି ଘଟିଲା ଏବଂ ତାଙ୍କର ଅନ୍ୟ କିଛି ଜଞ୍ଜାଳ ନ ଥିବାରୁ ସେ ଏ ଦିଗରେ ସଫଳ ହେଲେ ବୋଲି ଭାବୁ । ସେହିପରି ଆକର୍ଷଣ କଳାଭଳି ତାଙ୍କର ଅନ୍ୟକୌଣସି ବାହ୍ୟ ପ୍ରଲୋଭନ ନାହିଁ, ତାଙ୍କର ପରିବେଶ ଖୁବ୍ ଅନୁକୂଳ ଏବଂ ସେ ସଦା ସ୍ୱାସ୍ଥ୍ୟବାନ ବୋଲି ସେ ଆଦର୍ଶ ସ୍ଥାନୀୟ ହେବା ସମ୍ଭବ ହୋଇଛି ବୋଲି ବିଚାର କରୁ । ଅନ୍ୟପକ୍ଷରେ ଆମର ଧନର ପ୍ରାଚୁର୍ଯ୍ୟ ନାହିଁ । ବନ୍ଧୁ ସହାୟ ବା ଅନ୍ୟସବୁ ଉପଯୋଗୀ ଅବସ୍ଥା ନ ଥିବାରୁ ଆମେ ଏହା ହାସଲ କରିପାରୁ ନାହିଁ ବୋଲି ବିଚାର କରୁ । ଅସମାନତା ଉପରେ ଏପରି ମାତ୍ରାଧିକ ଗୁରୁତ୍ୱ ସଫଳ ବ୍ୟକ୍ତି ଓ ଆମ ମଧ୍ୟରେ ଏକ ମନସ୍ତାତ୍ତ୍ୱିକ ଦୂରତ୍ୱ ସୃଷ୍ଟି କରେ । ସୁତରାଂ ସେପରି ବ୍ୟକ୍ତିକୁ ଆମେ ପ୍ରଶଂସା କରୁଥିଲେ ମଧ୍ୟ ସେପରି ହୋଇପାରିବୁ ବୋଲି ଆତ୍ମବିଶ୍ୱାସ ଆସେ ନାହିଁ ।

ଅନ୍ୟପକ୍ଷରେ ସାମଞ୍ଜସ୍ୟ ଉପରେ ପ୍ରାଧାନ୍ୟ ଦେଲେ ମାନସିକ ଦୂରତ୍ୱ କମେ ଏବଂ ଆମର ଆତ୍ମସାମର୍ଥ୍ୟବୋଧ ଦୃଢ଼ ହୁଏ । ସେ ମଧ୍ୟ ମୋ ପରି ଜଣେ

ମଣିଷ, ତାଙ୍କର ମଧ ବାଧାବନ୍ଧନ ରହିଛି, ତାଙ୍କର ମଧ ସମସ୍ୟା ରହିଛି – ଏପରି ମନୋଭାବ ଆମର ଆତ୍ମବିଶ୍ୱାସକୁ ବୃଦ୍ଧି କରେ । ସେ ବ୍ୟକ୍ତି ସାଧନା ପଥରେ ପଥିକ ହୋଇପାରି ଥିବାରୁ ମୁଁ ମଧ ହୋଇପାରିବି ବୋଲି ଆତ୍ମପ୍ରତ୍ୟୟ ସୃଷ୍ଟି ହୁଏ । ସୁତରାଂ ଆମର ନିକଟସ୍ଥ ପରିବେଶରେ ଯେଉଁ ସାଧନା ମଗ୍ନ ବ୍ୟକ୍ତି ରହିଛନ୍ତି ତାଙ୍କୁ ନିଜର ଦୃଷ୍ଟି ସମକ୍ଷରେ ରଖି ଆମେ ନିଜେ ସେପରି ହୋଇପାରିବୁ ବୋଲଇ ବିଶ୍ୱାସ ନିର୍ମାଣ କରିପାରିଲେ ଆମର ଯାତ୍ରାପଥ ସୁଗମ ହେବ ।

## ଆତ୍ମ-ବିଶ୍ଳେଷଣ –

ସାଧନା ପଥରେ ସଫଳ ଯାତ୍ରାପାଇଁ ଉପଯୋଗୀ ପରିବର୍ତ୍ତନକୁ ଅବାଧ ଭାବରେ ଗ୍ରହଣ କରିବା ପାଇଁ ଆତ୍ମବିଶ୍ଳେଷଣ ଆବଶ୍ୟକ । ସାଧାରଣତଃ ଦେଖାଯାଏ ଯେ ମନୁଷ୍ୟ କେତେକ ପରିବର୍ତ୍ତନ କଥା ଚିନ୍ତା କଲାବେଳେ ତା'ର ବିରୋଧୀ ଶକ୍ତିଗୁଡ଼ିକ ଅଧିକ ସକ୍ରିୟ ହୋଇଉଠୁଛି । ସେ ନିଜକୁ ଅବସାଦମୁକ୍ତ କରି ପ୍ରଫୁଲ୍ଲିତ ହେବାକୁ ଚେଷ୍ଟାକଲାବେଳେ ଅଧିକରୁ ଅଧିକ ବିଷାଦଭାବପୂର୍ଣ୍ଣ ଚିନ୍ତା ମନକୁ ଆସୁଛି । ନିଜକୁ ନିରାମିଷ ଭୋଜନକାରୀ କରିବାକୁ ଉଦ୍ୟମ କଲେ ଆମିଷ ଭୋଜନର ଭାବବା ଅଧିକ ପରିମାଣରେ ଆସୁଛି । ଏ ସବୁ କ୍ଷେତ୍ରରେ ଏକ ବିଶେଷ ଧରଣର ବିଶ୍ଳେଷଣ ଖୁବ୍ ସହାୟକ ହୁଏ । ମନରୁ ଏକ ନିର୍ଦ୍ଦିଷ୍ଟ ଭାବନାକୁ ବହିଷ୍କାର କରିବା ପରିବର୍ତ୍ତେ ନିଜକୁ ଏକାଧିକ ପ୍ରଶ୍ନ ପଚାରି ନିଜର ଅଜ୍ଞାତସାରରେ କେତେକ ପରିବର୍ତ୍ତନ ଆଣିବା ସମ୍ଭବ ହୁଏ ।

ଧରାଯାଉ ବ୍ୟକ୍ତିଟି ନିଜକୁ ମାନ୍ଦା ବା ବିଷର୍ଣ୍ଣ ମନେକରୁଛି । ହୁଏତ ନିଜକୁ ସରସ କରିବା କୃତ୍ରିମ ଚେଷ୍ଟା ସଫଳ ହେଉନାହିଁ, ଏ କ୍ଷେତ୍ରରେ ଗୋଟିଏ ପରେ ଗୋଟିଏ ପ୍ରଶ୍ନ ନିଜକୁ ପଚାରିଯିବା ଉଚିତ ।

ମୁଁ କ'ଣ ପ୍ରକୃତରେ ମାନ୍ଦା ? ମୁଁ କ'ଣ ଆକାଶର ରଙ୍ଗ ଆଉ ସୂର୍ଯ୍ୟାସ୍ତର ଶୋଭା ଦେଖେ ନାହିଁ ? ପୃଥିବୀର ସବୁଜିମା ମୋ ଆଖିରେ ପଡ଼େ ? ମୋ ପଡ଼ୋଶୀର ମୁହଁ ମୁଁ ଭଲଭାବରେ ଦେଖିଛି ? ତା' ହସରୁ ମର୍ମ ବୁଝିବାକୁ ଚେଷ୍ଟା କରିଛି ? ତା' ମୁହଁ ବେଦନାସିକ୍ତ ଥିବାବେଳେ ତା' ଦୁଃଖର କାରଣ ଜାଣିବାକୁ ଚେଷ୍ଟା କରିଛି କି ? ମୁଁ ଜନଗହଳିପୂର୍ଣ୍ଣ ରାସ୍ତାରେ ଯାଉ ଯାଉ ସର୍ବହରା ଦେଖିଛି କି ? ବଂଶୀର ସ୍ୱର ଓ ସଙ୍ଗୀତର ଲହରୀ ମୋ କାନକୁ ସ୍ପର୍ଶ କଲେ ମୁଁ ତାକୁ କିପରି ଗ୍ରହଣ କରିଛି ? ପୃଥିବୀର ଦୁଃଖ ମୋତେ ଛୁଇଁଛି କି ? ମୋର ଆନନ୍ଦ ମୋତେ ଉଦ୍‌ବେଳିତ କରିଛି କି ? ଏହାର ସୌନ୍ଦର୍ଯ୍ୟ ମୋତେ ଅଭିଭୂତ କରିଛି କି ?

ମୋର ପରିବାରର ଲୋକେ ମୋତେ କ'ଣ ଭାବନ୍ତି ଓ କିପରି ଅନୁଭବ କରନ୍ତି ସେ ବିଷୟରେ ମୁଁ ଧ୍ୟାନ ଦେଇଛି କି ? ମୋର ପିଲାମାନେ ମୋଠାରୁ କ'ଣ ଚାହାନ୍ତି ସେ କଥା ଭାବିଛି କି ? ମୋର ପ୍ରତିବେଶୀମାନେ ମୋଠାରୁ କିପରି ଭିନ୍ନ, ସେ ବିଷୟରେ ମୋର ଧାରଣା ଅଛି କି ? ଅନ୍ୟମାନଙ୍କର ଜୀବନ ଭିନ୍ନ ସେମାନଙ୍କର ଲକ୍ଷ୍ୟ, ଆଦର୍ଶ, ଅଭୀପ୍ସା ଓ କର୍ମଯୋଜନା ଭିନ୍ନ, ଏ ବିଚାର ମୋ ମନରେ ସ୍ଥାନ ପାଇଛି କି ?

ମୁଁ କ'ଣ କେବଳ ମୋ ନିଜ ଜୀବନର ଜଞ୍ଜାଳ ଆଉ କର୍ମବ୍ୟସ୍ତତା ମଧ୍ୟରେ ବନ୍ଦୀ ? ମୁଁ କ'ଣ ବିଶ୍ୱର ସୌନ୍ଦର୍ଯ୍ୟ ଆଉ ଦୁର୍ଗନ୍ଧ ପୃଥକ୍ ପୃଥକ୍ ଭାବେ ବିଚାର କରିପାରୁ ନାହିଁ ?

ମଣିଷ ମନରେ ଏପରି ଅସଂଖ୍ୟ ପ୍ରଶ୍ନ ଯେତେବେଳେ ଭିଡ଼ ବାନ୍ଧେ, ତାହା ତାକୁ ଏ ଭିନ୍ନ ସ୍ତରକୁ ନେଇଯାଏ । ମନରେ ପ୍ରଶ୍ନ ଉଠେ – କାହିଁକି ତେବେ ସେ ବିଷର୍ଣ୍ଣ ? ନିଜକୁ ପୁଣି ସେ ପଚାରି ବସିବ – ମୁଁ କାହିଁକି ପୃଥିବୀର ଦୁଃଖ ଅନୁଭବ କରୁନାହିଁ ? କେତେଦିନ ଧରି ମୁଁ ନିଜର ବ୍ୟକ୍ତିଗତ ବନ୍ଧନୀ ମଧ୍ୟରେ ବାନ୍ଧିହୋଇ ରହିଥିବି ? ଏତେ ଘଟଣା ଦୁର୍ଘଟଣା ମଧ୍ୟରେ ମୁଁ କେତେକାଳ ନିଷ୍କ୍ରିୟ ହୋଇ ରହିଥିବି ? ମୋର କେଉଁଠି ଭୁଲ୍ ରହିଗଲା ? କିଏ ମୋତେ ଏତେ ସଂକୀର୍ଣ୍ଣମନା କରିଛି ? କାହିଁକି ମୋ ହୃଦୟର ବିଶାଳତା ନାହିଁ ? କାହିଁକି ମୋ ମନର ବିସ୍ତୃତି ନାହିଁ ? କାହିଁକି ମୋ ଜୀବନର ବ୍ୟାପ୍ତି ନାହିଁ ? ମୋର ଖାଇବା ପିଇବା ଶୋଇବା ଚିନ୍ତାନେଇ ମୁଁ କାହିଁକି ପିଲାଙ୍କ ପରି କାମ କରୁଛି ? ମୋର ଲକ୍ଷ୍ୟସବୁ କାହିଁକି ଏପରି ସୀମାବଦ୍ଧ ହୋଇପଡୁଛି ?

ଏହି ଆତ୍ମବିଶ୍ଳେଷଣ ମଧ୍ୟରେ ମନୁଷ୍ୟ ଅନୁଭବ କରିବ ଯେ ସେ ନିଜ ପ୍ରତି ଏପରି ଆଗ୍ରହ ପୂର୍ବରୁ ପ୍ରକାଶ କରି ନଥିଲା । ମନନଶୀଳତା ନେଇ ନିଜର ସରସତା ବିଷୟରେ ଭାବି ନ ଥିଲା, ନିଜ ସଂପର୍କରେ ଏବଂ ଅନ୍ୟମାନଙ୍କ ସଂପର୍କରେ ସେ ଗଭୀର ଭାବରେ ଚିନ୍ତା କରି ନ ଥିଲା । ଯେଉଁ ମୁହୂର୍ତ୍ତରେ ତା'ର ଏପରି ଗଭୀରତାର ପ୍ରକାଶ ହେବ, ସେ ମୁହୂର୍ତ୍ତରେ ପରିବର୍ତ୍ତନ ପ୍ରକ୍ରିୟା ଅତି ସହଜ ସ୍ୱଭାବ ଭାବରେ ସକ୍ରିୟ ହୋଇ ଉଠିବ । ବ୍ୟକ୍ତି ଜାଣିବ ଯେ ସେ ପୂର୍ବପରି ଆଉ ନିରସ ନୁହେଁ, ସରସତାର ପ୍ଲାବନରେ ସେ ହର୍ଷସ୍ନାତ ।

ବିଶିଷ୍ଟ ଦାର୍ଶନିକ କୃଷ୍ଣମୂର୍ତ୍ତି ଏପରି ଆତ୍ମବିଶ୍ଳେଷଣର ତାତ୍ପର୍ଯ୍ୟ ଦର୍ଶାଇଥିଲେ । ତାଙ୍କ ମତରେ ଅପ୍ରୀତିକର ଅବସ୍ଥାରୁ ପ୍ରୀତିପଦ ଅବସ୍ଥାକୁ ଯିବାପାଇଁ ମନୁଷ୍ୟ ବହୁ ସମୟରେ ଅସହାୟ ଚେଷ୍ଟା କରିଥାଏ । ମାତ୍ର ବିରୋଧୀ ଶକ୍ତିଗୁଡ଼ିକ ସହଜରେ ନିଷ୍କ୍ରିୟ ହୁଅନ୍ତି ନାହିଁ, ବରଂ ଅଧିକ ସକ୍ରିୟ ହୁଅନ୍ତି । ମାତ୍ର ଆତ୍ମବିଶ୍ଳେଷଣ ମାଧ୍ୟମରେ

ମନୁଷ୍ୟ ନିଜକୁ ନିଜେ ପ୍ରଶ୍ନ ସବୁ ପଚାରି ବସିଲେ ନିଜର ଅଜାଣତରେ ସେ ବାଞ୍ଛିତ ପର୍ଯ୍ୟାୟକୁ ଚାଲିଯାଏ ।

ଆତ୍ମବିଚାର ଓ ଆତ୍ମବିଶ୍ଳେଷଣ ପାଇଁ ମାନବୀୟ ଉଦ୍ୟମ ପ୍ରୟୋଜନ । ସାଧନା ପାଇଁ ଏପରି ଆଗ୍ରହ ସୃଷ୍ଟି ହେଲେ ଈଶ୍ୱର ଏ ଦିଗରେ ଅଧିକ ସହାୟ ହୁଅନ୍ତି । ଅବତାର ପୁରୁଷ ଶିରିଡ଼ିର ସାଇବାବା ବ୍ୟକ୍ତିର ଆତ୍ମସମୀକ୍ଷା ପାଇଁ ପ୍ରତ୍ୟକ୍ଷ ଉପଦେଶ ଦେବା ଅପେକ୍ଷା ସମୀକ୍ଷା-ସହାୟକ ପରିସ୍ଥିତି ସୃଷ୍ଟି କରିବାରେ ଯଥେଷ୍ଟ କୃପା ଦର୍ଶାଇଛନ୍ତି । ଥରେ ସାଠେ ମହାଶୟ କିଛି ଦିନର ପାରାୟଣ ସାରିବା ପରେ ପୂର୍ଣ୍ଣତା ପ୍ରାପ୍ତି ପାଇଁ ଆଉ କେତେଦିନ ପାରାୟଣର ଆବଶ୍ୟକତା ଅଛି ବୋଲି ଜାଣିବାକୁ ବ୍ୟାକୁଳ ଥିଲେ । ବାବା ଆଉ କିଛିଦିନ ପାରାୟଣ ଲାଗି ପରାମର୍ଶ ଦେଇଥିଲେ । କିନ୍ତୁ ସେଠାରେ ଉପସ୍ଥିତ ଥିବା ହିମଦ୍‌ପନ୍ଥଙ୍କ ମନରେ ଆନ୍ଦୋଳନ ସୃଷ୍ଟି ହୋଇଥିଲା । ହିମଦ୍‌ପନ୍ଥଙ୍କ ବର୍ଷ ବର୍ଷର ପାରାୟଣରେ ପୂର୍ଣ୍ଣତା ଆସି ନଥିବା ସ୍ଥଳେ ସାଠେ ମହାଶୟଙ୍କ ସଫଳତା କିଛିଦିନରେ ସମ୍ଭବ ହେଲା କିପରି ? ପ୍ରକୃତ ଆତ୍ମବିଚାରର ଅଭାବ ଲକ୍ଷ୍ୟକରି ଅନ୍ତର୍ଯ୍ୟାମୀ ସାଇବାବା ହିମଦ୍‌ପନ୍ଥଙ୍କ ପାଇଁ ଏକ ଘଟଣା ସୃଷ୍ଟି କଲେ । ଶ୍ୟାମଙ୍କ ଘରକୁ ଯାଇ କିଛିଟଙ୍କା ଆଣିବାକୁ ବାବା ହିମଦ୍‌ପନ୍ଥଙ୍କୁ ନିର୍ଦ୍ଦେଶ ଦେଲେ । ବାସ୍ତବରେ ଟଙ୍କା ଦେବାପାଇଁ ଶ୍ୟାମଙ୍କର ସାମର୍ଥ୍ୟ ନଥିଲା କି ବାବାଙ୍କର ଟଙ୍କାର କୌଣସି ଆବଶ୍ୟକତା ନଥିଲା । କିନ୍ତୁ ହିମଦ୍‌ପନ୍ଥ ଶ୍ୟାମଙ୍କ ପାଖକୁ ଯାଇ ସେ ପୂଜାରେ ବ୍ୟସ୍ତଥିବାରୁ ଅପେକ୍ଷା କଲେ । ଏହି ଅପେକ୍ଷା କରିବା ସମୟରେ ସେଠାରେ ଥିବା ସଦ୍‌ଗ୍ରନ୍ଥ ପାଠ ତାଙ୍କ ମନରୁ କେତେକ ସନ୍ଦେହ ଦୂର କଲା । ପୁନଶ୍ଚ ଶ୍ୟାମ ପୂଜାରୁ ଫେରି ନିଜର ଅନୁଭୂତିଲବ୍ଧ ଗୋଟିଏ ଘଟଣାର ଅବତାରଣା କଲେ । ରାଧାବାଈ ଦେଶମୁଖ ନାମକ ଜଣେ ମହିଳା କିପରି ବାବାଙ୍କଠାରୁ ଗୁରୁମନ୍ତ୍ର ନେବାପାଇଁ ଆସିଥିଲେ ଏବଂ ବାବା ଶେଷରେ କିପରି ତାଙ୍କ ଭକ୍ତି ସଂପର୍କରେ କହିଥିଲେ, ଶ୍ୟାମ ତାହା ବର୍ଣ୍ଣନା କଲେ । କହିବା ନିଷ୍ପ୍ରୟୋଜନ ଯେ ଏହା ହିମଦ୍‌ପନ୍ଥଙ୍କ ମନରୁ ଅନ୍ଧକାର ଦୂର କଲା ।

କୃପାମୟ ଭଗବାନ ତାଙ୍କ ଉପାୟରେ ଆମ ମନର ସନ୍ଦେହ ଦୂର କରି ସଠିକ୍ ସିଦ୍ଧାନ୍ତ ଦିଅନ୍ତି । ବିଧି ନିର୍ଦ୍ଦେଶିତ ଘଟଣା ମାଧ୍ୟମରେ ନିଜ ସଂପର୍କରେ ଧାରଣା ସ୍ପଷ୍ଟ ହୁଏ । ଆତ୍ମସମୀକ୍ଷାର ସଫଳ ପ୍ରୟୋଗ ପାଇଁ କୃପାଶ୍ରୟୀ ହେବା ସଂଗେ ସଂଗେ ମାନବୀୟ ଉଦ୍ୟମର ସୂତ୍ରପାତ କୃପାଲାଭର ଦ୍ୱାରକୁ ଅଧିକ ଉନ୍ମୁକ୍ତ କରିଥାଏ ।



# ଆତ୍ମବିଶ୍ୱାସ : ଆଧ୍ୟାତ୍ମିକ ଯାତ୍ରାର ମୌଳିକ ସମ୍ବଳ

ବିଶ୍ୱର ବିଭିନ୍ନ ଦେଶ ମହାଦେଶ ଓ ଜଳପଥସବୁକୁ ଆବିଷ୍କାର କରିଥିବା ବ୍ୟକ୍ତିମାନେ ପ୍ରଚୁର ଆତ୍ମବିଶ୍ୱାସ ଅଧିକାରୀ ଥିଲେ । ଜଳଯାତ୍ରା ସମୟରେ ସେମାନଙ୍କର ପଥ କଷ୍ଟକର ଥିଲା । ଖାଦ୍ୟ ପାନୀୟ ଅର୍ଥ ଓ ଅନ୍ୟାନ୍ୟ ସମ୍ବଳର ମଧ୍ୟ ଅଭାବ ରହିଥିଲା । ତଥାପି ସେମାନଙ୍କର ଆତ୍ମବିଶ୍ୱାସ ରହିଥିଲା ଯେ ସେମାନେ ଦୁର୍ଗମ ପଥ ଅତିକ୍ରମ କରି ଲକ୍ଷ୍ୟସ୍ଥଳରେ ପହଞ୍ଚିପାରିବେ । ବିପଦର ସମସ୍ତ ପ୍ରତିବଂଧକ ଡେଇଁ ନିଜର ଲକ୍ଷ୍ୟ ପୂରଣ କରିପାରିବେ । ଆତ୍ମବିଶ୍ୱାସର ଏହି ସମ୍ବଳକୁ ମୂଳଧନ କରି ସେମାନେ ନୂତନ ଦେଶ ବିଦେଶ ଆବିଷ୍କାର କଲେ । ଜଳପଥସବୁ ଆବିଷ୍କାର କଲେ । ସେମାନଙ୍କର ସଂକଳ୍ପବଦ୍ଧ ପରିଶ୍ରମ ଫଳରେ ବିଶ୍ୱର ଭୂଗୋଳ ନୂଆ ରୂପ ନେଲା ।

ଆଧ୍ୟାତ୍ମିକ ଯାତ୍ରା କ୍ଷେତ୍ରରେ ମଧ୍ୟ ଏହାର ସାରମର୍ମ ତାତ୍ପର୍ଯ୍ୟପୂର୍ଣ୍ଣ । ଆବିଷ୍କାର ପାଇଁ ଆତ୍ମବିଶ୍ୱାସ ଯେପରି ଗୋଟିଏ ସମ୍ବଳ, ଆଧ୍ୟାତ୍ମିକ ସାଧନା ପଥରେ ଅଗ୍ରସର ହେବାପାଇଁ ଆତ୍ମବିଶ୍ୱାସ ମଧ୍ୟ ସେପରି ଅପରିହାର୍ଯ୍ୟ ।

କାର୍ଯ୍ୟସାଧନ ପାଇଁ ଶକ୍ତି ଆବଶ୍ୟକ । ଏପରି ଶକ୍ତି ଶାରୀରିକ, ମାନସିକ ଏବଂ ପ୍ରାଣଭିତ୍ତିକ ହୋଇଥାଏ । ଶରୀରକୁ ସୁସ୍ଥ ସବଳ ରଖି ହୁଏତ କିଛିଟା ଶକ୍ତିର ସମ୍ଭାବନା ସୃଷ୍ଟି କରାଯାଇପାରେ । ମାତ୍ର ଆତ୍ମ-ବିଶ୍ୱାସର ଅଭାବରେ ଏପରି ଶାରୀରିକ ଶକ୍ତି ନିର୍ଦ୍ଦିଷ୍ଟ ଲକ୍ଷ୍ୟ – ନିୟୋଜିତ ନହୋଇ ଭିନ୍ନଭିନ୍ନ ଓ ବିଶୃଙ୍ଖଳିତ କାର୍ଯ୍ୟରେ ବ୍ୟୟିତ ହୋଇପାରେ । ସେହିପରି ମାନସିକ ଶକ୍ତି ଅନିଶ୍ଚିତ ବାତାବରଣ ମଧ୍ୟ ସେ କୂଳକିନାରା ପାଏ ନାହିଁ । ଫଳରେ ଆତ୍ମ-ବିଶ୍ୱାସର ଅଭାବ ଆଧ୍ୟାତ୍ମିକ ଯାତ୍ରାକୁ ସଫଳ ରୂପ ଦେଇପାରେ ନାହିଁ ।

ଆତ୍ମବିଶ୍ୱାସୀ ବ୍ୟକ୍ତିର ସଂକଳ୍ପ ସ୍ଥିର । ଏକ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ନେଇ ସେ ଆଧ୍ୟାତ୍ମିକ ଯାତ୍ରା ଆରମ୍ଭ କରେ । ବାଛିନେଇଥିବା ଲକ୍ଷ୍ୟଟି ଯେ ଅନ୍ୟସବୁଠାରୁ

ଅଧିକ ଶ୍ରେୟ, ଅଧିକ ଗୁରୁତ୍ୱପୂର୍ଣ୍ଣ, ଏପରି ବିଚାର ତା'ର ହିଁ ଥାଏ । ସେହିପରି ତା'ର କର୍ମଯୋଜନା ମଧ୍ୟ ସୁନିର୍ଦ୍ଦିଷ୍ଟ । ନିଜର ବିବେକର ସ୍ୱର, ଅନ୍ତର୍ଦୃଷ୍ଟିର ପ୍ରେରଣା ଓ ସର୍ବୋପରି ଈଶ୍ୱରଙ୍କ ଅଦୃଶ୍ୟ ମାର୍ଗ ଦର୍ଶନ ତା'ର ସାଧନା ପଥକୁ ସ୍ଥିର ଓ ଅବିଚଳିତ କରେ । ସବୁଠାରୁ ବଡ଼ କଥା ହେଉଛି ଆଧ୍ୟାତ୍ମିକ ଲକ୍ଷ୍ୟ ପୂରଣ ପାଇଁ ସେ ନିଜର କାୟିକ ବାଚନିକ, ମାନସିକ ଓ ପ୍ରାଣର ସମସ୍ତ ଶକ୍ତି ଓ ଏକୀଭୂତ କରି ପ୍ରୟୋଗ କରେ । ଫଳରେ ସାଧନାର ସାଫଲ୍ୟ ଅବଶ୍ୟମ୍ଭାବୀ ହୋଇପଡ଼େ ।

ବର୍ତ୍ତମାନ ମୌଳିକ ପ୍ରଶ୍ନ ହେଉଛି – ଆତ୍ମବିଶ୍ୱାସ ବୃଦ୍ଧି କରାଯାଇପାରିବ କିପରି ? ପ୍ରଥମତଃ ଲକ୍ଷ୍ୟ କରିବାର କଥା ଯେ ପ୍ରାଥମିକ ପର୍ଯ୍ୟାୟରେ ସଫଳତାର ମାତ୍ରା ଆତ୍ମବିଶ୍ୱାସର ଅଂକୁରଣ ଓ ପ୍ରସାରଣରେ ସହାୟକ ହୋଇଥାଏ । ସୁତରାଂ ପ୍ରଥମେ ନିଜର କାର୍ଯ୍ୟ ଲକ୍ଷ୍ୟ ଓ ସ୍ଥିର କଲାବେଳେ ଖୁବ୍ କଷ୍ଟକର କାର୍ଯ୍ୟ ହାତକୁ ନ ନେଇ ଅଳ୍ପମାତ୍ରାର କଷ୍ଟକର କାର୍ଯ୍ୟର ଦାୟିତ୍ୱ ନେବା ବିଧେୟ । ଆଦୌ ସଦ୍‌ଗ୍ରନ୍ଥ ପାଠ ନ କରୁଥିବା ବ୍ୟକ୍ତି ଦୈନିକ ୨/୪ ଘଣ୍ଟା ସଦ୍‌ଗ୍ରନ୍ଥ ପାଠ କରିବାର ଯୋଜନା କଲେ ବିଫଳତାର ସମ୍ଭାବନା ବେଶୀ ରହିବ । ଏ ସ୍ଥଳରେ ପ୍ରାଥମିକ ଅବସ୍ଥାରେ ୧୫/୨୦ ମିନିଟ୍ ପ୍ରତିଦିନ ସଦ୍‌ଗ୍ରନ୍ଥ ପାଠର ଅଭ୍ୟାସ ନିର୍ମାଣ କରିବା, ପରବର୍ତ୍ତୀ ପର୍ଯ୍ୟାୟରେ ଏହାକୁ ୩୦ ମିନିଟ୍ ବୃଦ୍ଧି କରିବା ଏବଂ ଏହା ସଫଳତମ ଭାବରେ ବେଶ୍ କିଛିଦିନ କଲାପରେ ଦୈନିକ ଘଣ୍ଟାଏ ଦୁଇଘଣ୍ଟାକୁ ବୃଦ୍ଧି କରିବା ସମୁଚିତ ହେବ । ସେହିପରି ପ୍ରାଥମିକ ପର୍ଯ୍ୟାୟରେ ଘଣ୍ଟା ଘଣ୍ଟା ଧରି ଧ୍ୟାନ କରିବାର ସଂକଳ୍ପ ନ କରି ସୀମିତ ସମୟ ପାଇଁ ସ୍ଥିର ନିଶ୍ଚିତ ଯୋଜନା କରି ପରବର୍ତ୍ତୀ ପର୍ଯ୍ୟାୟରେ ସମୟର ପରିମାଣ ବୃଦ୍ଧି କରିବା ଯୁକ୍ତିଯୁକ୍ତ । ବ୍ୟକ୍ତିର ସାମର୍ଥ୍ୟକୁ ଚାହିଁ ପ୍ରାଥମିକ ସ୍ତରରେ କରାଯାଇଥିବା ଲକ୍ଷ୍ୟର ପରିପୂରଣ ଯେପରି ଆତ୍ମବିଶ୍ୱାସର ପରିବର୍ଦ୍ଧନରେ ସହାୟକ ହୁଏ, ପ୍ରାଥମିକ ସ୍ତରରେ କ୍ରମାଗତ ବିଫଳତା ସେପରି ଆତ୍ମବିଶ୍ୱାସ ଗଠନରେ ବାଧାସୃଷ୍ଟି କରେ ।

ଆତ୍ମବିଶ୍ୱାସ ଗଠନ କ୍ଷେତ୍ରରେ ଆମର ପରିପାର୍ଶ୍ୱରେ ଆମେ ଯେଉଁସବୁ ବ୍ୟକ୍ତିକୁ ଆମର ଆଦର୍ଶ (model) ରୂପେ ଗ୍ରହଣ କରୁ ସେମାନଙ୍କୁ ପୁରୋଭାଗରେ ରଖି ଆଗେଇବାକୁ ଶିଖିବା ଭଲ । ଅବଶ୍ୟ ବହୁସ୍ଥଳରେ ଆମର ଆଦର୍ଶ ବ୍ୟକ୍ତିଙ୍କୁ ଆମେ ପ୍ରଶଂସା କରି ମଧ୍ୟ ଆମର ଲକ୍ଷ୍ୟ ଓ ସଂକଳ୍ପକୁ ଦୃଢ଼ କରିବାରେ ଯେତିକି ଉଦ୍ୟମ ଆବଶ୍ୟକ ତାହା ଆମେ କରି ନଥାଉ । ଏକ ମାନବୀୟ ଦୁର୍ବଳତା ଆମର ଗତିରୋଧ କରେ । କୌଣସି ବ୍ୟକ୍ତିଙ୍କର ଉଚ୍ଚସଫଳତା ଦେଖିଲା ମାତ୍ରେ ଆମେ

ସେପରି ବ୍ୟକ୍ତି ଏବଂ ଆମ୍ଭ ମଧ୍ୟରେ ଥିବା ପାର୍ଥକ୍ୟକୁ ମାତ୍ରାଧିକ ଗୁରୁତ୍ୱ ଦେଇବସୁ । ସେ ବ୍ୟକ୍ତି ଉଚ୍ଚ ପଦବୀର ଅଧିକାରୀ, ତାଙ୍କର ବହୁତ ସମ୍ବଳ ଅଛି ଏବଂ ଅନ୍ୟମାନେ ତାଙ୍କୁ ବେଶ୍ ସହଯୋଗ କରୁଛନ୍ତି – ଏପରି ସବୁ ଭାବନା ଆମ ମନକୁ ଆସେ । ଅନ୍ୟପକ୍ଷରେ ମୁଁ ଏକ ସାଧାରଣ ଲୋକ, ମୋର ସମ୍ବଳ ନାହିଁ ଏବଂ ମୋତେ ସହଯୋଗ କରିବାର ଲୋକ ନାହାନ୍ତି – ଏପରି ଚିନ୍ତାର ଶରବ୍ୟ ହେଉ । ମୋର ଆଦର୍ଶ ବ୍ୟକ୍ତି ଓ ମୋ ମଧ୍ୟରେ ଥିବା ପାର୍ଥକ୍ୟକୁ ପ୍ରାଧାନ୍ୟ ଦେବା ଫଳରେ ତାଙ୍କର କାର୍ଯ୍ୟ ଓ ସଂକଳ୍ପକୁ ଅନୁକରଣ କରି ମୋର କାର୍ଯ୍ୟ ଓ ସଂକଳ୍ପ ନିର୍ମାଣ କଷ୍ଟକର ହୁଏ ।

ଅନ୍ୟପକ୍ଷରେ ନିଜର ସଂକଳ୍ପ ସ୍ଥିର କରିବାକୁ ଆଦର୍ଶ ବ୍ୟକ୍ତିଙ୍କ ସହିତ ମୋର ସାମଞ୍ଜସ୍ୟ ଦେଖିବାର କଥା । ସେ ମଧ୍ୟ ମୋ ପରି ଜଣେ ମଣିଷ, ତାଙ୍କର ମଧ୍ୟ ପ୍ରତିବଂଧକ ରହିଛି – ଏପରି ସବୁ ଭାବନା ମୋ ମନରେ ବଳ ଦେବ । ମୋର ଆତ୍ମବିଶ୍ୱାସକୁ ଦୃଢ଼ କରିବ । ସୁତରାଂ ନିଜର ଆଦର୍ଶ ପୁରୁଷକୁ ଆଖି ଆଗରେ ରଖି ନିଜ ମଧ୍ୟରେ ଶକ୍ତି ସଂଚାର ପ୍ରକ୍ରିୟାକୁ ଜାହିର କରିବାକୁ ହେବ ।

ଆତ୍ମ-ବିଶ୍ୱାସ ବୃଦ୍ଧି କରିବାର ସବୁଠାରୁ ସହାୟକ ଅବସ୍ଥା ହେଉଛି ନିଜର ଲକ୍ଷ୍ୟ ବା ସଂକଳ୍ପର ପବିତ୍ରତା ଉପରେ ଭରସା । ମୋର ଲକ୍ଷ୍ୟ ଓ ସଂକଳ୍ପ ବ୍ୟକ୍ତିଗତ ସ୍ୱାର୍ଥସାଧନ ପାଇଁ ଉଦ୍ଦିଷ୍ଟ ନ ହୋଇ ବ୍ୟକ୍ତିଗତ ସାଧନା ଓ ଗୋଷ୍ଠୀଗତ କଲ୍ୟାଣ ପାଇଁ ଅଭିପ୍ରେତ – ଏପରି ଅନୁଭବ ଆତ୍ମବିଶ୍ୱାସକୁ ବହୁଗୁଣିତ କରିବ । ଏପରି ଲକ୍ଷ୍ୟ ଓ ସଂକଳ୍ପ ଥିଲେ ସଦ୍‌ଗୁରୁ ଏବଂ ଈଶ୍ୱର ନିଶ୍ଚୟ କୃପା କରିବେ, ଏପରି ବିଶ୍ୱାସବୋଧ ପ୍ରତିଷ୍ଠିତ ହେବ ।

ଆତ୍ମବିଶ୍ୱାସକୁ ସମ୍ବଳ ପରି ବ୍ୟକ୍ତି ନିଜ ଜୀବନରେ ତଥା ବାହ୍ୟ ପରିବେଶରେ ପରିବର୍ତ୍ତନ ଆଣେ । ଆତ୍ମୋପଲବ୍ଧି ବା ଈଶ୍ୱର ଉପଲବ୍ଧି ପାଇଁ ତୀବ୍ର ଓ ନିରବଚ୍ଛିନ୍ନ ସାଧନା ଆବଶ୍ୟକ । ଆତ୍ମବିଶ୍ୱାସହୀନ କଦାପି ସାଧନର ଲକ୍ଷ୍ୟବିନ୍ଦୁରେ ପହଞ୍ଚାଇପାରେ ନାହିଁ । ଅନ୍ୟପକ୍ଷରେ ଆତ୍ମବିଶ୍ୱାସର ଦୃଢ଼ତା ଏବଂ ଏହା ଉପରେ ପ୍ରତିଷ୍ଠିତ ଦିବ୍ୟ ସଂକଳ୍ପ ସାଧନାମୁଖୀ ପରିବର୍ତ୍ତନକୁ ତ୍ୱରାନ୍ୱିତ କରି ଈଶ୍ୱର ଉପଲବ୍ଧି ଆଣିଥାଏ । ଏ ଦୃଷ୍ଟିରୁ ଆତ୍ମବିଶ୍ୱାସ ପରି ମୌଳିକ ସମ୍ବଳର ବୃଦ୍ଧି ଘଟାଇବା ପାଇଁ ପ୍ରତ୍ୟେକ ବ୍ୟକ୍ତି ସାଧ୍ୟମତେ ଉଦ୍ୟମ କରିବା ପ୍ରୟୋଜନ ।



# ସଂକଳ୍ପ : ସାଫଲ୍ୟର ଗୋପନ ସୂତ୍ର

ବ୍ୟକ୍ତିଗତ ବିକାଶ ଓ ଆଧ୍ୟାତ୍ମିକ ସାଫଲ୍ୟ ମୂଳରେ ସଂକଳ୍ପର ଭୂମିକା ଅନନ୍ୟ । ସଂକଳ୍ପକୁ ଅନ୍ୟସବୁ ଶବ୍ଦ ମାଧ୍ୟମରେ ପ୍ରକାଶ କରାଯାଇପାରେ ଏବଂ ସଂକଳ୍ପର ଭୂମିକା ଦର୍ଶାଇବା ପାଇଁ ଭିନ୍ନ ଭିନ୍ନ ଉଦାହରଣର ଆଶ୍ରୟ ନିଆଯାଇପାରେ । ଇଚ୍ଛାଶକ୍ତି, ଅଧ୍ୟବସାୟ ଏବଂ ଦୃଢ଼ମନ ପରି ପରିଭାଷା ସଂକଳ୍ପକୁ ହିଁ ବୁଝାଇଥାଏ । ମନୁଷ୍ୟ ଯେଉଁ ସମୀମ ଯୋଜନା କରେ ସେସବୁ ଯୋଜନା ସମୟ ସମୟରେ ବାହ୍ୟ ପରିସ୍ଥିତିର କୁପ୍ରଭାବ ଫଳରେ ବିଫଳ ହୋଇପାରେ । ପୁଣି ବେଳେବେଳେ ସମ୍ୱଳର ଅଭାବ ଯୋଗୁଁ ହୁଏତ ବିଫଳତା ଆସିପାରେ । ମାତ୍ର ମାନବୀୟ ଉଦ୍ୟମର ଅଭାବ ଏବଂ ନିଷ୍ଠାର ଅଭାବ ଅନେକ ସମୟରେ ବିଫଳତାର ମୁଖ୍ୟ କାରଣ ହୋଇଯାଏ । ଉପଯୁକ୍ତ ସଂକଳ୍ପର ଅଭାବ ଯୋଜନାକୁ ପୂର୍ଣ୍ଣାଙ୍ଗ ରୂପ ଦେବାରେ ଅସମର୍ଥ ହୁଏ ।

ଆଧ୍ୟାତ୍ମିକ ଜୀବନର ବିକାଶ ପାଇଁ ଚିନ୍ତା କରୁଥିବା ବ୍ୟକ୍ତିମାନେ ଏପରି ଏକ ସମସ୍ୟାର ସମ୍ମୁଖୀନ ହୁଅନ୍ତି । ହୁଏତ ଅନେକ ସମୟରେ ସେମାନେ କ'ଣ କରିବାକୁ ହେବ ତାହା ଜାଣିଥାନ୍ତି । କେଉଁସବୁ ବାଟରୁ ଦୂରରେ ରହିବାକୁ ହେବ, ତାହା ମଧ୍ୟ ଜାଣିଥାନ୍ତି । ମାତ୍ର ସେଗୁଡ଼ିକ କାର୍ଯ୍ୟକାରୀ କରିବାର ସଂକଳ୍ପ ଦୃଢ଼ ହୋଇ ନଥିବାରୁ, ସଫଳତାର ମାତ୍ରା ଖୁବ୍ କମ୍ ହୁଏ ।

ସଂକଳ୍ପର ଭୂମିକା ବହୁ ମହାପୁରୁଷମାନଙ୍କ ଜୀବନରେ ସୁସ୍ପଷ୍ଟ । ଏଠାରେ ଜଣେ ଐତିହାସିକ ପୁରୁଷଙ୍କ ବିଷୟରେ ଆଲୋଚନା କରାଯାଉ । ବ୍ରିଟେନ୍‌ର ଯୁଦ୍ଧକାଳୀନ ପ୍ରଧାନମନ୍ତ୍ରୀ ସାର୍ ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍‌ଙ୍କ ନାମ ବିଶ୍ୱର ନେତୃବୃନ୍ଦଙ୍କ ମଧ୍ୟରେ ଏକ ସ୍ୱତନ୍ତ୍ର ସ୍ଥାନ ପାଇଥାଏ । ଚର୍ଚ୍ଚିଲ୍ ବିଶ୍ୱର ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ବ୍ରିଟେନ୍‌ର ପ୍ରଧାନମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିଥିଲେ । ତାଙ୍କର ଅତୁଳନୀୟ ନେତୃତ୍ୱ ଏବଂ ଦୂରଦୃଷ୍ଟି ମିତ୍ରଶକ୍ତିମାନଙ୍କୁ ନିଶ୍ଚିତ ପରାଜୟ ମୁଖରୁ ଟାଣିନେଇ ବିଜୟର ସ୍ୱାଦ ଚଖାଇଥିଲା । ମାନବ ବିଦ୍ୱେଷୀ ହିଟ୍‌ଲର୍‌ଙ୍କ ପତନ ପରେ ବିଶ୍ୱର ଶ୍ରଦ୍ଧାସମ୍ମାନ ତାଙ୍କ ଉପରେ ଅଜାଡ଼ି ହୋଇପଡ଼ିଥିଲା ।

ଏପରି ଏକ ନେତାଙ୍କଠାରୁ ନେତୃତ୍ୱର ସଫଳତାର ଭିତ୍ତିଭୂମି ଶୁଣିବା ପାଇଁ ସମସ୍ତେ ଉଦ୍‌ଗ୍ରୀବ ଥିଲେ । ଏପରି ଏକ ସମୟରେ ଚର୍ଚ୍ଚିଲ୍ ପିଲାଦିନେ ଛାତ୍ରଥିବା ସ୍କୁଲଟି ତାଙ୍କୁ ଆମନ୍ତ୍ରଣ ଜଣାଇଲା । ଏହି ସ୍କୁଲର ଏକଶହ ପଚାଶତମ ଜୟନ୍ତୀ ଉପଲକ୍ଷେ ଏକ ସ୍ୱତନ୍ତ୍ର ଉତ୍ସବର ଆୟୋଜନ ହୋଇଥିଲା । ଚର୍ଚ୍ଚିଲ୍‌ଙ୍କୁ ସମ୍ମାନିତ ଅତିଥି ରୂପେ ନିମନ୍ତ୍ରିତ କରାଯାଇଥିଲା ଏବଂ ସେ ଏପରି ଆମନ୍ତ୍ରଣ ସ୍ୱୀକାର କରିଥିଲେ । ଛାତ୍ରଛାତ୍ରୀ ଓ ଅନ୍ୟମାନଙ୍କୁ ସଫଳ ନେତୃତ୍ୱର କାହାଣୀ ଶୁଣାଇବା ପାଇଁ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଅନୁରୋଧ କରିଥିଲେ ।

ନିର୍ଦ୍ଦିଷ୍ଟ ଦିନ ଚର୍ଚ୍ଚିଲଙ୍କ ଭାଷଣ ଶୁଣିବା ପାଇଁ ଅଗଣିତ ଜନତା ରୁଣ୍ଡ ହୋଇଥିଲେ । ଗତାନୁଗତିକ ଔପଚାରିକତା ପରେ ଭାଷଣ ପାଇଁ ପ୍ରଧାନମନ୍ତ୍ରୀଙ୍କୁ ଆହ୍ୱାନ କରାଗଲା । ଚର୍ଚ୍ଚିଲ୍ ବକ୍ତାଙ୍କ ପାଇଁ ଉଦ୍ଦିଷ୍ଟ ଥିବା ସ୍ଥାନକୁ ଯାଇ ତାଙ୍କର କ୍ଷୁଦ୍ର ଆୟତାକାର ଚଷମାଟିଏ ପିନ୍ଧିଲେ । ଉଚ୍ଚ ଡେସ୍କ ଉପରେ ଛୋଟିଆ କାଗଜଟିଏ ରଖିଲେ । ଚଷମା ଭିତରୁ ଜନ ସମୁଦ୍ର ଆଡ଼େ ଥରେ ଆଖିପକାଇଲେ । ତାହାପରେ କେବଳ ଏହି ପାଞ୍ଚୋଟି ଶବ୍ଦ କହିଲେ :

କେବେହେଲେ (Never)
କେବେହେଲେ (Never)
କେବେହେଲେ (Never)
କେବେହେଲେ (Never)
ଛାଡ଼ିଦେବ ନାହିଁ (Give up)

ଚକିତ ଜନସମୁଦ୍ର କିପରି ନିଜର ଭାବ ପ୍ରକାଶ କରିବ, ତାହା କିଛି ସମୟ ପାଇଁ ଜାଣିପାରିଲେ ନାହିଁ । ଅଳ୍ପ ସମୟ ପାଇଁ ଏକ ମୃଦୁ ଗୁଂଜରଣ ଶୁଣାଗଲା । କିନ୍ତୁ ଚର୍ଚ୍ଚିଲ୍‌ଙ୍କ ଅଭିବ୍ୟକ୍ତିର ତାତ୍ପର୍ଯ୍ୟ ବୁଝିବା ମାତ୍ରେ ସମସ୍ତ ନରନାରୀ, ବାଳକ ବାଳିକା ସମ୍ମାନ ଜଣାଇବାକୁ ଠିଆହୋଇଯାଇ ଦୀର୍ଘ ସମୟ ପର୍ଯ୍ୟନ୍ତ କରତାଳି ଦେଇ ସ୍ୱୀକୃତି ଜଣାଇଲେ ।

ବାସ୍ତବରେ ଦୃଢ଼ ସଂକଳ୍ପ ହିଁ ଥିଲା ଚର୍ଚ୍ଚିଲ୍‌ଙ୍କ ସାଫଲ୍ୟର ମୂଳମନ୍ତ୍ର । ଜୀବନର ସକଳ ଦୁର୍ଦ୍ଦିନ ଓ ବାହ୍ୟଜଗତର ସମସ୍ତ ବାଧାବିଘ୍ନ ଭିତରେ ପରାଜୟର ମନୋବୃତ୍ତି ତାଙ୍କୁ ସ୍ପର୍ଶ କରିନଥିଲା ।

ସାଫଲ୍ୟମୁଖୀ ଜୀବନ ପାଇଁ ଦୃଢ଼ ସଂକଳ୍ପର ଆବଶ୍ୟକତା ଯଥେଷ୍ଟ ବେଶୀ । ଜୀବନକୁ ସାଧନାମୁଖୀ କରିବାକୁ ହେଲେ ଅନେକଗୁଡ଼ିଏ ସାତ୍ତ୍ୱିକ ଗୁଣକୁ ଜୀବନର ଅଂଗୀଭୂତ କରିବାକୁ ହେବ । ସେହିପରି ଅନେକଗୁଡ଼ିଏ ତାମସିକ ଗୁଣକୁ ନିର୍ମୂଳ କରିବାକୁ ହେବ । ଏପରି ଲକ୍ଷ୍ୟ ସାଧନ ପାଇଁ ସଂକଳ୍ପ ଅପରିହାର୍ଯ୍ୟ ।

ସଂକଳ୍ପକୁ ଦୃଢ଼ କରିବା ପାଇଁ ବ୍ୟକ୍ତିଗତ ସ୍ତରରେ କିଛି କରାଯାଇପାରେ । ଏହା ବ୍ୟତୀତ ପ୍ରତି ଗୋଷ୍ଠୀରେ ଓ ପ୍ରତି ଧର୍ମରେ ମଧ ମାନସିକ ଦୃଢ଼ତାକୁ ବୃଦ୍ଧି କରିବା ପାଇଁ କେତେକ ପରାମର୍ଶ ଦିଆଯାଇଛି । ରାମଜାନ୍ ମାସରେ ତିରିଶ ଦିନ ଧରି ଉପବାସ ବା ରୋଜା ପାଳନ କରୁଥିବା ମୁସଲମାନ ଭାଇଭଉଣୀମାନେ ମାନସିକ ଦୃଢ଼ତା ଲାଭ ପାଇଁ ଏପରି ବ୍ରତ ପାଳନ କରନ୍ତି । ସମସ୍ତେ ଜାଣନ୍ତି ଯେ ଜାପାନରେ ସାମୁରାଇମାନେ ଖୁବ୍ ଦୁର୍ଦ୍ଧର୍ଷ ଓ ଏକନିଷ୍ଠ । ଇଚ୍ଛାଶକ୍ତିର ଦୃଢ଼ତା ପାଇଁ ସେମାନେ ମଧ ଉପବାସ ବ୍ରତ ପାଳନ କରନ୍ତି ଏବଂ ଖାଲିପାଦରେ ଦୀର୍ଘପଥ ଚାଲିବାର ବ୍ରତ କରନ୍ତି । ଚିନି ବା ଲୁଣ ପରି ଅତ୍ୟାବଶ୍ୟକ ବସ୍ତୁକୁ ଖାଦ୍ୟ ହିସାବରେ ଗ୍ରହଣ ନ କରିବାର ପଣ ଏବଂ ଶୋଇବା ସମୟକୁ କମାଇବାର ଶପଥ ଇତ୍ୟାଦି ଏ ଧରଣର ସଂକଳ୍ପ-ବର୍ଦ୍ଧନକାରୀ ବ୍ରତସବୁ କିଛିଲୋକ ସ୍ୱେଚ୍ଛାକୃତ ଭାବରେ ଗ୍ରହଣ କରିନିଅନ୍ତି ।

ସଂକଳ୍ପ ଗଠନ କଲାବେଳେ କେତୋଟି ଦିଗପ୍ରତି ଧ୍ୟାନଶୀଳ ହେବା ଆବଶ୍ୟକ । ମନେରଖିବାକୁ ହେବ ଯେ ବିରାଟ ଧରଣର ସଫଳତା ହଠାତ୍ ଆକସ୍ମିକ ଭାବରେ ଆସି ନଥାଏ । ଏ ପ୍ରସଙ୍ଗରେ ଇଂରାଜୀ କବି ଲଙ୍ଗଫେଲୋଙ୍କର ଗୋଟିଏ ପଦର ଓଡ଼ିଆ ରୂପାନ୍ତର ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ।

ମହାପୁରୁଷଙ୍କ ଶିଖର ସାଫଲ୍ୟ
ନୁହେଁ ବ୍ୟୋମଯାନ ପରି ।
ଅନ୍ୟମାନେ ଯେବେ ନିଦ୍ରାରେ ଅଚେତ
ଗଢୁଥାନ୍ତି ଶ୍ରମ କରି ।।

ସଂକଳ୍ପ-ଗଠନ ସମୟରେ ବ୍ୟବହାରିକ ଦୃଷ୍ଟିକୋଣରୁ ଆଉ ଗୋଟିଏ ବିଷୟ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ତାହା ହେଉଛି ସଂକଳ୍ପବଦ୍ଧ ଭାବରେ ଲକ୍ଷ୍ୟ ଦିଗରେ ଅଗ୍ରସର ହେବା ପୂର୍ବରୁ ଯଥୋଚିତ ଭାବରେ ଲକ୍ଷ୍ୟବିନ୍ଦୁଟି ସ୍ଥିର କରିବା ଉଚିତ୍ । ଏ କ୍ଷେତ୍ରରେ ସୁଦୂର ଲକ୍ଷ୍ୟଟିକୁ କେତୋଟି ସହଯୋଗୀ ଲକ୍ଷ୍ୟରେ ରୂପାନ୍ତର କରିବା ଅଧିକ ଫଳପ୍ରଦ

ହୋଇଥାଏ । ଉଦାହରଣ ସ୍ୱରୂପ, ମୋକ୍ଷ ବା ମୁକ୍ତିଲାଭ ଏକ ସୁଦୂର ଲକ୍ଷ୍ୟ । ଏ ଦିଗରେ ସଂକଳ୍ପ ସଂଯୋଜିତ କରିବା କଷ୍ଟକର । ଅନ୍ୟପକ୍ଷରେ ମୁକ୍ତିଲାଭର ଲକ୍ଷ୍ୟକୁ ସତ୍‌ସଙ୍ଗ, ସଦାଚାର, ସ୍ୱାଧ୍ୟାୟ ଏବଂ ଧ୍ୟାନ ପରି ସହଯୋଗୀ ଲକ୍ଷ୍ୟରେ ରୂପାନ୍ତର କଲେ ସେ ଦିଗରେ ସଂକଳ୍ପର ଗଠନ ଓ ପରିପୂରଣ ସମ୍ଭବ ହୁଏ । ପ୍ରଥମରୁ ବିରାଟ ବିରାଟ ଲକ୍ଷ୍ୟ ନିଜ ଦୃଷ୍ଟି ସମକ୍ଷରେ ସଂସ୍ଥାପନ କରି ସେସବୁ ବିଫଳ ହେଲେ ମନୋବଳ ଭାଙ୍ଗିଯାଏ । ସୁତରାଂ ଅପେକ୍ଷାକୃତ ସହଜ ଏବଂ ସାଧମତ ଲକ୍ଷ୍ୟବିନ୍ଦୁ ସ୍ଥିରୂ କରି ସେ ଦିଗରେ ଅଗ୍ରସର ହେବା ଫଳବତୀ ହୋଇଥାଏ ।

ସେହିପରି ଦୀର୍ଘମିଆଦୀ ଲକ୍ଷ୍ୟକୁ ଆଖିରେ ରଖି ସେସବୁକୁ ଅଳ୍ପମିଆଦୀ ଲକ୍ଷ୍ୟର ରୂପ ଦିଆଯାଇପାରେ । ଦୁଇମାସ ମଧ୍ୟରେ ଗୋଟିଏ ପଠିତ ବହି ସାରିବାକୁ କୁହାଯିବା ପରିବର୍ତ୍ତେ ପ୍ରତି ସପ୍ତାହରେ ଗୋଟିଏ ଗୋଟିଏ ଅଧ୍ୟାୟ ସାରିବାର ନିର୍ଦ୍ଦେଶ ଅଧିକ କାର୍ଯ୍ୟକାରୀ ହୁଏ । ଠିକ୍ ସେହିପରି ସାଧନାରତ ଜଣେ ବ୍ୟକ୍ତି ଅଳ୍ପ କିଛି ମାସ ମଧ୍ୟରେ ନିର୍ଦ୍ଦିଷ୍ଟ ଶାସ୍ତ୍ରାଧ୍ୟୟନ ସାରିବାର ଯୋଜନା ନ କରି ପ୍ରତି ସପ୍ତାହ ପାଇଁ କିଛି ଅଂଶର ଯୋଜନା କରିପାରନ୍ତି । ସମଗ୍ର ଲକ୍ଷ୍ୟଟିକୁ ଏପରି ନିକଟବର୍ତ୍ତୀ ଲକ୍ଷ୍ୟର (Proximal goal) ରୂପ ଦେବା ଫଳରେ ନିଜର ସଂକଳ୍ପକୁ କାର୍ଯ୍ୟକାରୀ କରିବାର ସମ୍ଭାବନା ବୃଦ୍ଧି ପାଏ । ଅଧିକନ୍ତୁ ପ୍ରାରମ୍ଭିକ ପର୍ଯ୍ୟାୟରେ ନିଜର ସଂକଳ୍ପ ଓ ସଫଳତା ବ୍ୟକ୍ତିମନରେ ଆତ୍ମବିଶ୍ୱାସ ବୃଦ୍ଧି କରେ । ଭବିଷ୍ୟତରେ ଅଧିକରୁ ଅଧିକ ଏବଂ ସହଜରୁ ସହଜତର ସଂକଳ୍ପ କରିବା ପାଇଁ ସାହସ ବୃଦ୍ଧିପାଏ ।

ପରିଶେଷରେ ସଂକଳ୍ପ ପରିପ୍ରେକ୍ଷୀରେ ଏକ ସତର୍କତା ଅବଲମ୍ବନ କରିବାକୁ ହେବ । ହୁଏତ କେହି ସଂକଳ୍ପକୁ 'ଜିଦ୍' ସହିତ ସମାନ କରି ଦେଇପାରନ୍ତି । କିନ୍ତୁ ପ୍ରକୃତରେ ସଂକଳ୍ପବଦ୍ଧ ହେବାର ଅର୍ଥ ଏକଜିଦିଆ ହେବାର ପ୍ରବୃତ୍ତିକୁ ବୁଝାଏ ନାହିଁ । ଏକଜିଦିଆ ହେବାର ମୂଳ ଉତ୍ସ ହେଉଛି ବୃଥା ଅଭିମାନ ଓ ଅହମିକା । ଏଥିରେ ସଚଳତା (Flexibility) ନଥାଏ । ନିଜର ପ୍ରାଧାନ୍ୟକୁ ଜାହିର କରିବା ପାଇଁ ଅହଂକେନ୍ଦ୍ରୀ ମନର ଏ ଏକ ପ୍ରତିଫଳନ । ମାତ୍ର ସଂକଳ୍ପର ଉତ୍ସ ହେଉଛି ବିବେକ ଏବଂ ଅନ୍ତର୍ଜଗତର ସ୍ୱର । ବିବେକାନୁମୋଦିତ ଭାବରେ ବ୍ୟକ୍ତି ନିଜର ଲକ୍ଷ୍ୟ ସ୍ଥିର କରେ ଏବଂ ଏଥିପ୍ରତି ଗଭୀର ଆନୁଗତ୍ୟ ପ୍ରକାଶ କରେ । ସଂକଳ୍ପବଦ୍ଧ ବ୍ୟକ୍ତି ଅଯଥାରେ ବାରମ୍ବାର ମତ ପରିବର୍ତ୍ତନ କରେ ନାହିଁ ସତ, ହେଲେ ଯୋଜନାଟିର କାର୍ଯ୍ୟକାରିତା ଲକ୍ଷ୍ୟ କରି ନିଜର କାର୍ଯ୍ୟକୌଶଳରେ ପରିବର୍ତ୍ତନ ଆଣିଥାଏ । ଏ ଦୃଷ୍ଟିରୁ ସେ ସଂକଳ୍ପବଦ୍ଧ

ହେଲେ ମଧ୍ୟ ପରିବର୍ତ୍ତନ ବିରୋଧୀ ନୁହେଁ । ସ୍ଥୂଳତଃ ଅନ୍ତର୍ଜଗତର ବିବେକର ଧ୍ୱନି ବ୍ୟକ୍ତିର ଲକ୍ଷ୍ୟ ନିର୍ମାଣ କରେ ଏକ ଦୃଢ଼ ସଂକଳ୍ପ ଏ ଲକ୍ଷ୍ୟଟି ସହିତ ତାହାକୁ ଜଡ଼ାଇ ରଖେ ।

ଅବତାର ପୁରୁଷ ଶିରିଡ଼ିର ସାଇବାବା ଶ୍ରଦ୍ଧା ଓ ସବୁରୀ ଉପରେ ଗୁରୁତ୍ୱ ଦେଉଥିଲେ । ସବୁରୀ ବା ଧୈର୍ଯ୍ୟ ଏବଂ ଶ୍ରଦ୍ଧା ବି ନିଷ୍ଠା ମଧ୍ୟରେ ସଂକଳ୍ପ ସଂଯୋଜିତ । ଧୈର୍ଯ୍ୟ ବ୍ୟତୀତ ସଂକଳ୍ପର ଅନୁସରଣ ସମ୍ଭବପର ନୁହେଁ । ସେହିପରି ଉପଯୁକ୍ତ ନିଷ୍ଠାକୁ ବାଦ୍‌ଦେଇ ସଂକଳ୍ପକୁ କାର୍ଯ୍ୟକାରୀ କରିବା ସମ୍ଭବ ନୁହେଁ । ବାବା ଶ୍ରଦ୍ଧା ଓ ସବୁରୀ ଉପରେ ଯେପରି ଗୁରୁତ୍ୱ ଦେଉଥିଲେ ତାହା ସାଇ ସଦ୍‌ଚରିତରେ ସବିଶେଷ ବର୍ଣ୍ଣିତ ଥିବାରୁ ଏଠାରେ ତାହା ଆଲୋଚନା କରାଯାଉ ନାହିଁ । ତଥାପି ଆମେ ଶ୍ରଦ୍ଧା ଓ ସବୁରୀ ସହିତ ସଂକଳ୍ପବଦ୍ଧ ଭାବରେ ଆଧ୍ୟାତ୍ମିକ ଯାତ୍ରା କରିବାର ଲକ୍ଷ୍ୟ ଆମ ଜୀବନର ମୂଳମନ୍ତ୍ର ହେବା ଉଚିତ୍ ।



# ଅବତାର ଓ ଅବତରଣ

ଈଶ୍ୱର ସର୍ବଶକ୍ତିମାନ ହୋଇଥିବାରୁ ସେ ନିଜ ଶକ୍ତିର ପ୍ରୟୋଗରେ ସମଗ୍ର ମାନବ ଜାତିକୁ ସାଧନାମୁଖୀ କରିବାର ଯୋଜନା ସେ ଉର୍ଦ୍ଧ୍ୱରେ ଥାଇ ମଧ୍ୟ ପୂରଣ କରିପାରିବେ । ତଥାପି ସେ ଅବତାର ଗ୍ରହଣ କରି ପୃଥିବୀକୁ ଓହ୍ଲାଇ ଆସନ୍ତି କାହିଁକି ? ଏହି କଣ୍ଟକିତ ବିଶ୍ୱରେ ପଦଚାଳନା କରି ଦେହକଷ୍ଟ ସହି ନିଅନ୍ତି କାହିଁକି ? ଏ ପ୍ରଶ୍ନ ସାଧାରଣ ଜନମାନସରେ ନିଶ୍ଚିତ ଭାବରେ ଆଲୋଡ଼ନ ସୃଷ୍ଟି କରେ । ଏ ପ୍ରଶ୍ନ ସମ୍ରାଟ ଆକବରଙ୍କୁ ମଧ୍ୟ ଥରେ ଆନ୍ଦୋଳିତ କରିଥିଲା । ସେ ବୀରବଲ୍‌ଙ୍କୁ ଥରେ ଉପହାସ କରି ପଚାରିଲେ – ''ତମ ହିନ୍ଦୁଧର୍ମର ଦେବାଦେବୀ ସବୁ ଏତେ ଶକ୍ତିଶାଳୀ, ଅଥଚ ସେମାନେ ନିଜ ସ୍ଥାନରେ ରହି ସମସ୍ୟାର ସମାଧାନ ନକରି ଅବତାର ଗ୍ରହଣ କରନ୍ତି କାହିଁକି ?''

ନିର୍ଦ୍ଦିଷ୍ଟ ସମୟରେ ସେ ଏ ପ୍ରଶ୍ନର ଉତ୍ତର ଦେବେ ବୋଲି କହି ବୀରବଲ୍ ସୁଯୋଗ ଖୋଜୁଥିଲେ । ଥରେ ସମ୍ରାଟଙ୍କର ନୌକାବିହାରର କାର୍ଯ୍ୟ ନିର୍ଘଣ୍ଟ ପ୍ରସ୍ତୁତ ହୋଇଥିଲା । ସମ୍ରାଟଙ୍କ ସହିତ ଯିବା ପାଇଁ ବୀରବଲ ମଧ୍ୟ ଆମନ୍ତ୍ରିତ ହୋଇଥିଲେ । ମାତ୍ର ନିର୍ଦ୍ଦିଷ୍ଟ ସମୟରେ ନୌକା ପ୍ରସ୍ତୁତ ଥାଇ ସମ୍ରାଟ ଓ ଅନ୍ୟ ପାରିଷଦ ଓ ସେବକଗଣ ଉପସ୍ଥିତ ଥିଲେ ମଧ୍ୟ ବୀରବଲ୍ ଆସି ନଥିଲେ । ସମ୍ରାଟ ଏଥିପାଇଁ ବିରକ୍ତି ପ୍ରକାଶ କରୁଥିବା ସମୟରେ ବୀରବଲ୍ ପହଞ୍ଚିଲେ । ସେ ତାଙ୍କ କାଖରେ ଗୋଟିଏ ଶିଶୁପୁତ୍ରକୁ ଧରି ତାକୁ ସୁନ୍ଦର ସୁନ୍ଦର ବସ୍ତ୍ରଦ୍ୱାରା ଆବୃତ୍ତ କରିରଖିଥିଲେ । ସମ୍ରାଟଙ୍କ ପ୍ରଶ୍ନ ପୂର୍ବରୁ ବୀରବଲ୍ ସୂଚନା ଦେଲେ ଯେ ନୌକାବିହାର ପାଇଁ ଶିଶୁ ରାଜପୁତ୍ରଙ୍କୁ ମଧ୍ୟ ସଂଗରେ ଆଣିଛନ୍ତି । ଏପରି କାର୍ଯ୍ୟ ପାଇଁ ସମ୍ରାଟ ବିରକ୍ତି ପ୍ରକାଶ କଲେ ମଧ୍ୟ ନୌବିହାରର ସମୟ ହୋଇଯାଇଥିବାରୁ ଯାତ୍ରା ଆରମ୍ଭର ନିର୍ଦ୍ଦେଶ ଦେଲେ । ରାଜକୀୟ ପରିପାଟୀରେ ସୁସଜ୍ଜିତ ନୌକା ଗଭୀର ଜଳରାଶି ମଧ୍ୟରେ ଆଗେଇବାକୁ ଆରମ୍ଭ କଲା । ଅଳ୍ପ କିଛି ସମୟ ପରେ ହଠାତ୍ ବୀରବଲ୍ ଚିତ୍କାର କରି ଉଠିଲେ । ''ରାଜକୁମାର ଖସିପଡ଼ିଲେ'' ''ରାଜକୁମାର ଖସିପଡ଼ିଲେ'' ବୋଲି ଉଚ୍ଚ ସ୍ୱରରେ ଚିତ୍କାର କଲେ । ସମ୍ରାଟଙ୍କ ପୁତ୍ର ନୌକାରୁ ଅତଳ ତଳ ମଧ୍ୟକୁ ଖସି ପଡ଼ିଛନ୍ତି ଜାଣି ସମସ୍ତେ ଆତଙ୍କିତ ହୋଇ ଉଠିଲେ । ସମ୍ରାଟ ନିର୍ଦ୍ଦେଶ ଦେବାପୂର୍ବରୁ

ପାରିଷଦଗଣ ଏବଂ ସେବକମାନେ ଜଳ ମଧ୍ୟକୁ ଲମ୍ଫ ପ୍ରଦାନ କରି ଶିଶୁପୁତ୍ରଙ୍କୁ ଉଦ୍ଧାର ପାଇଁ ପ୍ରଯତ୍ନଶୀଳ ହୋଇ ଉଠିଲେ । ସମ୍ରାଟ ଆକବର ମଧ୍ୟ ଅସମ୍ଭାଳ ହୋଇ ଶିଶୁପୁତ୍ରର ଉଦ୍ଧାର ପାଇଁ ଡେଇଁ ପଡ଼ିଲେ ।

ଉଦ୍ଧାର କର୍ତ୍ତା ଜଳ ମଧ୍ୟରୁ ଯେଉଁ ବସ୍ତୁଟିକୁ ଉଦ୍ଧାର କଲେ ତାହା ପ୍ରକୃତରେ କିନ୍ତୁ ଜୀବନ୍ତ ମନୁଷ୍ୟ ଶରୀର ବିଶିଷ୍ଟ ଶିଶୁପୁତ୍ର ନଥିଲା । ଏହା କେବଳ ଗୋଟିଏ କୁଣ୍ଢେଇ ଥିଲା । ବୀରବଲ୍ କାହିଁକି ଏପରି ରହସ୍ୟ ରଚନା କରିଥିଲେ ତାହା କେହି ବୁଝିପାରିଲେ ନାହିଁ । ସମ୍ରାଟ ମଧ୍ୟ ଜିଜ୍ଞାସୁ ଦୃଷ୍ଟିରେ ବୀରବଲ୍‌ଙ୍କ ଆଡ଼େ ଚାହିଁଲେ ।

ବୀରବଲ୍ ବିନୀତ ଭାବରେ ଉତ୍ତର ଦେଲେ – ''ମହାଭାଗ । ଆପଣଙ୍କ ପ୍ରଶ୍ନର ଉତ୍ତର ଦେବାପାଇଁ ମୁଁ ଏପରି ଆୟୋଜନ କରିଥିଲି । ଈଶ୍ୱର ଅବତାର ରୂପେ କାହିଁକି ଧରାଧାମକୁ ଆସନ୍ତି ବୋଲି ମୋତେ ଆପଣ ପଚାରିଲେ । ଆଜିର ଘଟଣା ମନେ ପକାନ୍ତୁ । ଆପଣଙ୍କ ପୁତ୍ର ଜଳମଗ୍ନ ହୋଇ ବିପଦରେ ପଡ଼ିଛି ଜାଣି ଆପଣ ତା'ର ଉଦ୍ଧାର ପାଇଁ ଜଳ ମଧ୍ୟକୁ ଡେଇଁଲେ । ଅଥଚ ଭଲରୂପେ ଆପଣ ଜାଣନ୍ତି ଯେ ଆପଣ ନିର୍ଦ୍ଦେଶ ଦେବା ପୂର୍ବରୁ ମଧ୍ୟ ଆପଣଙ୍କ ପାରିଷଦବର୍ଗ ଓ ସେବକଗଣ ଏ କାର୍ଯ୍ୟ କରିବେ । ଆପଣଙ୍କ ଶିଶୁପୁତ୍ରଙ୍କୁ ଉଦ୍ଧାର କରିବେ, ତଥାପି ନିଜର ପୁତ୍ର ପ୍ରତି ଅତ୍ୟଧିକ ସ୍ନେହ ହେତୁ ଏବଂ ନିଜେ ସେ କାର୍ଯ୍ୟଟି କରି ତୃପ୍ତି ପାଇବେ ଭାବି ଆପଣ ଲମ୍ଫ ପ୍ରଦାନ କଲେ । ଠିକ୍ ସେହିପରି ଈଶ୍ୱର ଉର୍ଦ୍ଧ୍ୱରେ ଥାଇ ସବୁସମସ୍ୟାର ସମାଧାନ କରିପାରିବେ । ତଥାପି ତାଙ୍କର ସୃଷ୍ଟ ଜୀବ ଜଗତ ପାଇଁ ତାଙ୍କର ଅହେତୁକ ସ୍ନେହ ହେତୁ ସେ ଅବତରଣ କରନ୍ତି । ମନୁଷ୍ୟର ଦୁଃଖ ଦୁର୍ଦ୍ଦଶାର ମୋଚନ କରିବାର ଆନନ୍ଦ ଲାଭ ପାଇଁ ସେ ଅବତାର ହୁଅନ୍ତି ।''

ଏହା ଏକ କଳ୍ପନାପ୍ରସୂତ ଗଳ୍ପ ହୋଇପାରେ । ତଥାପି ଏହାର ଅନ୍ତରାଳରେ ସତ୍ୟ ପ୍ରକଟିତ । ମନୁଷ୍ୟ ଜୀବନକୁ ସାଧନାମୁଖୀ କରିବାପାଇଁ ଭଗବାନ ଧରାଧାମରେ ଅବତୀର୍ଣ୍ଣ ହୁଅନ୍ତି । ଈଶ୍ୱରଙ୍କର ପିତୃତ୍ୱ ଓ ମନୁଷ୍ୟ ମଧ୍ୟରେ ଭ୍ରାତୃତ୍ୱ ପ୍ରତିଷ୍ଠା କରିବାର ମୁଖ୍ୟ ଉଦ୍ଦେଶ୍ୟ ନେଇ ଅବତାର ଅବତରଣ କରନ୍ତି ।

ସାଇନାଥଙ୍କ ଅବତରଣ ମଧ୍ୟ ଏହି ଦିବ୍ୟସଂକଳ୍ପ ସହିତ ଜଡ଼ିତ । ଭାରତ ବର୍ଷ ଏକ ବହୁସଂସ୍କୃତିପୂର୍ଣ୍ଣ ରାଷ୍ଟ୍ର । ଜାତି, ଧର୍ମ ଓ ଭାଷାର ବିଭିନ୍ନତା ଅନେକ ସମୟରେ ବିଭାଜନର ରେଖା ଟାଣିଲା ପରି ମନେହୁଏ । ରୀତିନୀତି ଚାଲିଚଳଣର ପାର୍ଥକ୍ୟ ବିଭେଦତାକୁ ପ୍ରଶ୍ରୟ ଦେଇପାରେ । ସୁତରାଂ ଏ ଦେଶରେ ଜନ୍ମଲାଭ କରିଥିବା ଅବତାର ପୁରୁଷମାନେ ସକଳ ବିବିଧତା ମଧ୍ୟରେ ଏକତ୍ୱ ଦର୍ଶାଇବାକୁ

ଆସିଛନ୍ତି । ବିଭେଦତା ମଧ୍ୟରେ ଐକ୍ୟର ପ୍ରମାଣ ପାଇଁ ପ୍ରଯତ୍ନ କରିଛନ୍ତି । ଶିରିଡ଼ିର ଅବତାର ପୁରୁଷ ସାଇନାଥଙ୍କ ଦିବ୍ୟଯୋଜନାରେ ଏହା ସ୍ପଷ୍ଟ ପ୍ରତିଫଳିତ । ବିଭିନ୍ନ ରୀତିନୀତି ଓ ଧାର୍ମିକ ପରମ୍ପରାକୁ ଅନୁସରଣ କଲେ ମଧ୍ୟ ମନୁଷ୍ୟ ଗୋଟିଏ ସତ୍ୟର ଉପାସନା କରୁଛି ଏବଂ ଭିନ୍ନ ଭିନ୍ନ ଦେବଦେବୀଙ୍କୁ ପୂଜା କଲେ ମଧ୍ୟ ମନୁଷ୍ୟ ଗୋଟିଏ ଶକ୍ତିର ଆରାଧନା କରୁଛି – ଏହି ସତ୍ୟର ଦୃଢ଼ ନିର୍ଘୋଷଣ ସାଇନାଥଙ୍କ ଜୀବନ କାଳ ମଧ୍ୟରେ ଏକ ପ୍ରଭାବଶାଳୀ ରୂପ ନେଇଥିଲା ।

କେତୋଟି ଘଟଣାର ଅବତାରଣା କରାଯାଇ ସାଇନାଥଙ୍କର ଏହି ଦିବ୍ୟଯୋଜନାର ସ୍ପଷ୍ଟ ରୂପରେଖ ଦିଆଯାଇପାରେ । ୧୯୦୯ ମସିହାରେ ଜଣେ ଡାକ୍ତର ତାଙ୍କର ତହସିଲଦାର ବଂଧୁଙ୍କ ସହିତ ଶିରିଡ଼ି ଆସିଲେ । ଡାକ୍ତର ଜଣକ ଖୁବ୍ ନୈଷ୍ଠିକ ଥିଲେ ଏବଂ ପୂଜା ଅର୍ଚ୍ଚନା ନ ସାରି କିଛି ଖାଦ୍ୟ ଗ୍ରହଣ କରୁ ନଥିଲେ । ଶିରିଡ଼ିର ସାଇବାବାଙ୍କ ପ୍ରତି ତାଙ୍କର କୌଣସି ଆସ୍ଥା ଓ ବିଶ୍ୱାସ ନଥିଲା । ପୁନଶ୍ଚ ସାଇବାବା ମୁସଲମାନ୍ ବୋଲି ଚିନ୍ତାକରି ସେ ଅଧିକ ଦୂରତ୍ୱ ଅନୁଭବ କରୁଥିଲେ । ତହସିଲଦାର ବଂଧୁଜଣଙ୍କ ଅନୁରୋଧ ଜଣାଇଲେ ମସ୍‌ଜିଦ୍ ଯାଇ ବାବାଙ୍କୁ ଦର୍ଶନ କରି ଆସିବା ପାଇଁ । ଡାକ୍ତର ବଂଧୁଙ୍କର ବିଶ୍ୱାସ ନ ଥିବାରୁ ସେ ଯିବା ପାଇଁ ଅନିଚ୍ଛା ପ୍ରକାଶ କଲେ । ମାତ୍ର ତହସିଲଦାର୍ ବଂଧୁଜଣକ କହିଲେ ଯେ ସେ ଇଚ୍ଛା କଲେ ସେଠାରେ ଭୂମିଷ୍ଠ ପ୍ରଦାନ ନ କରିପାରନ୍ତି ଏବଂ ବାବା ମଧ୍ୟ ଏସବୁ ଉପରେ ଗୁରୁତ୍ୱ ଦିଅନ୍ତି ନାହିଁ ।

ପରିଶେଷରେ ଡାକ୍ତର ଜଣକ ଦ୍ୱାରକାମାୟୀ ମସ୍‌ଜିଦ୍ ଗଲେ । ମାତ୍ର ଆଶ୍ଚର୍ଯ୍ୟର କଥା ଯେ ସେ ବାବାଙ୍କର ବସିବା ସ୍ଥାନରେ ତାଙ୍କର ପରମ ଆରାଧ୍ୟ ଶ୍ରୀରାମଙ୍କ ମୂର୍ତ୍ତି ଦେଖିଲେ । ସେ ଅଭିଭୂତ ହୋଇପଡ଼ିଲେ । ସେ ଫେରିବା ବାଟରେ ବଂଧୁଙ୍କ ପାଖରେ ଏକଥା ପ୍ରକାଶ କଲେ । ସେ ଆହୁରି ମଧ୍ୟ ପ୍ରତିଜ୍ଞା କରି ବସିଲେ ଯେ ବାବା ତାଙ୍କୁ ଆଉ ଏକ ଆଧ୍ୟାତ୍ମିକ ଅନୁଭବ ନ ଦେବା ପର୍ଯ୍ୟନ୍ତ ସେ ଖାଦ୍ୟ ସ୍ପର୍ଶ କରିବେ ନାହିଁ । ତିନିଦିନ ବିତିଗଲା । ଚତୁର୍ଥ ଦିନ ଖଣ୍ଡେଶ୍ୱରୁ ଆସିଥିବା ଜଣେ ବଂଧୁଙ୍କ ସହିତ କଥାବାର୍ତ୍ତା କରିବାବେଳେ ନିଜର ପ୍ରତିଜ୍ଞା ଭୁଲିଗଲେ ଏବଂ ତାଙ୍କ ସହିତ ମସ୍‌ଜିଦ୍ ଆସିଲେ । ତାଙ୍କୁ ଦେଖି ବାବା ପଚାରିଲେ – "ଡାକ୍ତର ! କାହିଁକି ଏଠାକୁ ଆସିଛ ? କିଏ ତୁମକୁ ଡାକିଛି ? ଏକଥା ଶୁଣି ଡାକ୍ତରଙ୍କ ହୃଦୟ ତରଳିଗଲା ।" ସେ ଆନନ୍ଦାଶ୍ରୁ ଢାଳି ବାବାଙ୍କ ପଦରେ ପ୍ରଣତି ଜଣାଇଲେ । ସେଦିନ ଅର୍ଦ୍ଧରାତ୍ରରେ ବାବା ତାଙ୍କ ପ୍ରତି କରୁଣା କଲେ । ସେ ସ୍ୱପ୍ନାବସ୍ଥାରେ ଅନିର୍ବାଚନୀୟ ଆନନ୍ଦ ଅନୁଭବ

କଲେ ଏବଂ ଘରକୁ ଫେରିବାର ପ୍ରାୟ ପନ୍ଦରଦିନ ପର୍ଯ୍ୟନ୍ତ ତାଙ୍କର ଏପରି ଆନନ୍ଦବିହ୍ୱଳ ଅବସ୍ଥା ରହିଲା । ବାବା ଏବଂ ପ୍ରଭୁ ଶ୍ରୀରାମ ଯେ ଏକ ଏବଂ ଅଭିନ୍ନ, ତାହାର ଉପଲବ୍ଧି ଗଭୀର ହେଲା ।

ସେହିପରି ମଳୟ ଶାସ୍ତ୍ରୀଙ୍କ ଘଟଣା ମଧ୍ୟ ଶିକ୍ଷାପ୍ରଦ । ମଳୟ ଶାସ୍ତ୍ରୀ ଗୁରୁ ଗୋଲାପଙ୍କର ଭକ୍ତ ଥିଲେ । ସେ ବାବାଙ୍କର ଅନୁଗତ ଏବଂ ନାଗପୁରରୁ ଆଗତ ବୁଟୀଙ୍କୁ ଦେଖା କରିବାକୁ ଶିରିଡ଼ି ଆସିଲେ । ଶିରିଡ଼ିରେ ବେଶୀଦିନ ରହିବା ପାଇଁ ତାଙ୍କର ଇଚ୍ଛା ନଥିଲା । କେବଳ ବୁଟୀଙ୍କୁ ଦେଖାକରି ନାସିକ୍ ଫେରିଯିବା ପାଇଁ ସେ ମନସ୍ଥ କରିଥିଲେ । ବୁଟୀଙ୍କ ସହିତ ଦେଖା ସାକ୍ଷାତ୍ ପରେ ସେ ଅନ୍ୟମାନଙ୍କ ସହିତ ମସ୍‌ଜିଦ୍ ଗଲେ । ମଳୟ ଶାସ୍ତ୍ରୀ ଷଡ଼୍‌ଦର୍ଶନରେ ପଣ୍ଡିତ ଥିଲେ ଏବଂ ହାତଦେଖି ଭବିଷ୍ୟତ ଗଣନା କରିବାରେ ତାଙ୍କର ବିଶେଷ ଦକ୍ଷତା ଥିଲା । ମଳୟ ଶାସ୍ତ୍ରୀ ମସ୍‌ଜିଦ୍‌ରେ ପହଞ୍ଚିଲା ବେଳକୁ ବାବା ଭକ୍ତମାନଙ୍କୁ କଦଳୀ ବିତରଣ କରୁଥିଲେ । ମଳୟ ଶାସ୍ତ୍ରୀ ସେଠାରେ ପହଞ୍ଚି ବାବାଙ୍କର ହାତ ଗଣନା କରିବା ପାଇଁ ନିଜର ହାତ ପ୍ରସାରଣ କଲେ । ମାତ୍ର ବାବା ହାତଗଣନା ପାଇଁ କୌଣସି ଆଗ୍ରହ ପ୍ରକାଶ ନ କରି ମଳୟ ଶାସ୍ତ୍ରୀଙ୍କ ହାତରେ ଚାରୋଟି କଦଳୀ ରଖିଦେଲେ ।

ହାତ ଗଣନା କରି ଫଳାଫଳ ଜାଣିବାରେ ଫକୀରଙ୍କର କୌଣସି ଆଗ୍ରହ ନ ରହିବା ସ୍ୱାଭାବିକ ଭାବି ମଳୟ ଶାସ୍ତ୍ରୀ ମସ୍‌ଜିଦ୍‌ରୁ ଫେରିଲେ । ଏହା ମଧ୍ୟରେ ମସ୍‌ଜିଦ୍‌ରେ କଦଳୀ ବିତରଣ ଶେଷ କରି ବାବା ଲେଣ୍ଡି ବଗିଚା ଆଡ଼କୁ ବାହାରିଲେ । ହଠାତ୍ ବାବା କହୁଥିବାର ଶୁଣାଗଲା – ‘‘ଗୋଟିଏ ଗେରୁଆ ବସ୍ତ୍ର ନିଅ । ମୋତେ ଆଜି ଗେରୁଆ ବସ୍ତ୍ର ପିନ୍ଧିବାକୁ ହେବ ।’’ ପାଖରେ ଥିବା ଲୋକମାନେ ଏକଥା କିଛି ବୁଝିପାରିଲେ ନାହିଁ ।

ବାବା ଲେଣ୍ଡି ବଗିଚାକୁ ଯାଇ ପୁନର୍ବାର ଫେରି ଆସିଲା ବେଳକୁ ମଧ୍ୟାହ୍ନ ଆରତିର ସମୟ ହୋଇସାରିଥିଲା । ଆରତି ଦାୟିତ୍ୱରେ ଥିବା ବାପୁସାହେବ୍ ଜୋଗ୍ ମଳୟଶାସ୍ତ୍ରୀଙ୍କୁ ମସ୍‌ଜିଦ୍ ଆସିବା ପାଇଁ କହିଲେ । ମାତ୍ର ମଳୟ ଶାସ୍ତ୍ରୀ ଖୁବ୍ ନୈଷ୍ଠିକ । ପୂଜା ଅର୍ଚ୍ଚନା ନ ସାରି ମସ୍‌ଜିଦ୍ ଗଲେ ସେଠାରେ ସ୍ପର୍ଶଜନିତ ଦୋଷ ହେବ ଭାବି ସେ ମନାକଲେ । ଆରତି ସମୟ ହୋଇ ଆସୁଥିଲା । ବାବା କହିଲେ – ‘‘ଏବେ ନୂଆକରି ଆସିଥିବା ସେ ବ୍ରାହ୍ମଣ ପାଖରୁ ଦକ୍ଷିଣା ନେଇଆସ ।’’ ବୁଟୀ ମଳୟ ଶାସ୍ତ୍ରୀଙ୍କ ପାଖରେ ପହଞ୍ଚି ବାବାଙ୍କ କଥା ଜଣାଇଲେ । ମଳୟ ଶାସ୍ତ୍ରୀ ସିଲ୍‌କ ଧୋତି ପିନ୍ଧି ପୂଜା ଅର୍ଚ୍ଚନା ପାଇଁ ନିଜକୁ ପ୍ରସ୍ତୁତ କରିଥିବାରୁ ମସ୍‌ଜିଦ୍ ଯିବା ପାଇଁ ତାଙ୍କର

ଇଚ୍ଛା ନଥିଲା । ତଥାପି ବୁଟୀଙ୍କୁ ସମ୍ମାନ ଜଣାଇ ସେ ଦକ୍ଷିଣା ଧରି ମସ୍‌ଜିଦ୍ ଆସିଲେ । କିନ୍ତୁ ପବିତ୍ରତା ନଷ୍ଟହେବ ଭାବି ମସ୍‌ଜିଦ୍ ମଧ୍ୟକୁ ନଯାଇ ଦୂରରେ ସଭାମଣ୍ଡପ ପାଖରେ ଠିଆହୋଇ ବାବାଙ୍କ ଉଦ୍ଦେଶ୍ୟରେ ପୁଷ୍ପ ଅର୍ପଣ କଲେ ।

ତାପରେ ଏକ ଅଦ୍ଭୁତ ଘଟଣା ଘଟିଲା । ସମସ୍ତେ ସାଇବାବାଙ୍କୁ ତାଙ୍କ ନିଜ ଆସନରେ ଦେଖୁଥିଲେ; ମାତ୍ର ମଳୟ ଶାସ୍ତ୍ରୀ ଦେଖିଲେ ଯେ ତାଙ୍କର ଗୁରୁ ଗୋଲାପ ସ୍ୱାମୀ ଗେରୁଆ ବସନ ପିନ୍ଧି ବାବାଙ୍କ ଆସନରେ ବସିଛନ୍ତି । ସେ ବିସ୍ମୟରେ ବୁଡ଼ିଗଲେ । ଗୁରୁ ଗୋଲାପ ସ୍ୱାମୀ କିଛି ବର୍ଷ ତଳେ ଦେହରକ୍ଷା କରିଛନ୍ତି । ମାତ୍ର ସେ ଏବେ ଦେଖୁଛନ୍ତି କ'ଣ ? ନିଜେ ସ୍ୱପ୍ନ ଦେଖୁଛନ୍ତି କି ସଚେତ ଅବସ୍ଥାରେ ଅଛନ୍ତି, ତାହା ସ୍ଥିର କରିବା ପାଇଁ ସେ ନିଜ ଦେହକୁ ଚିମୁଟିଲେ । ଜାଣିଲେ ଯେ ସେ ସ୍ୱପ୍ନ ଦେଖୁ ନାହାନ୍ତି । ସେ ଆନନ୍ଦାଭିଭୂତ ହୋଇ ମସ୍‌ଜିଦ୍ ଉପରକୁ ଉଠିଗଲେ ଏବଂ ଗୁରୁଙ୍କ ପଦସ୍ପର୍ଶ କରି ପ୍ରଣତି ଢାଳିଲେ । ସେ ସମୟରେ ସମସ୍ତେ ବାବାଙ୍କର ଆରତି ଗାଉଥିଲେ । ମଳୟ ଶାସ୍ତ୍ରୀ ଗୁରୁ ଗୋଲାପ ସ୍ୱାମୀଙ୍କ ଆରତି ଗାଇଲେ । ତାଙ୍କ ମନରେ ବିରୋଧାଭାସ ଚିରଦିନ ପାଇଁ ଚାଲିଗଲା ।

ପରବର୍ତ୍ତୀ କାଳରେ ବାବାଙ୍କର ପରମ ଅନୁଗତ ଓ ପୂଜକ ହୋଇ ପାରିଥିବା 'ମେଘା'ର ଜୀବନରେ ମଧ୍ୟ ସାଇକରୁଣା ଏକତ୍ୱ ଭାବ ସଞ୍ଚାର କରିଥିଲା । ପ୍ରଥମେ ମେଘା କେବଳ ନାମକୁ ମାତ୍ର ବ୍ରାହ୍ମଣ ଥିଲା । କିନ୍ତୁ ସନ୍ଧ୍ୟା, ପୂଜା, ଆରତି ଓ ଅର୍ଚ୍ଚନା ସଂପର୍କରେ ତା'ର ସାମାନ୍ୟତମ ଧାରଣା ମଧ୍ୟ ନଥିଲା । ଖେଡ୍ ଜିଲ୍ଲାର ଡେପୁଟି କଲେକ୍ଟର ରାଓ ବାହାଦୂର ହରି ବିନାୟକ ସାଠେ ତାକୁ ଦୈନିକ ପୂଜା ଆରତିର ନୀତିନିୟମ ଶିକ୍ଷା ଦେଲେ । ଧୀରେ ଧୀରେ ମେଘା ଶିକ୍ଷାଲାଭ କରି ସାଠେଙ୍କ ଗୃହରେ ଦୈନିକ ଶିବପୂଜା ମଧ୍ୟ ଆରମ୍ଭ କଲା । କିଛିଦିନ ପରେ ସାଠେ ସାହେବ ନିଜର ଆରାଧ୍ୟ ଗୁରୁ ସାଇବାବାଙ୍କ ମହାତ୍ମ୍ୟ ବର୍ଣ୍ଣନା କଲେ ଏବଂ ଗୁରୁଙ୍କର ଆଶୀର୍ବାଦ ଥିଲେ ମେଘା ମଧ୍ୟ ଶିରିଡ଼ି ଯାଇ ଗୁରୁକୃପା ଲାଭ କରିପାରିବ ବୋଲି ମତ ଦେଲେ ।

ଶିରିଡ଼ି ଯିବାର ପରାମର୍ଶ ଶୁଣି ମେଘା ସେ ଗୁରୁଙ୍କର ଜାତିଗୋତ୍ର ପଚାରିବସିଲା । ସାଠେ କହିଲେ ଯେ ସେ ଗୁରୁଙ୍କର ଜାତି ଜାଣନ୍ତି ନାହିଁ, ମାତ୍ର ଏହା ଭଲରୂପେ ଜାଣନ୍ତି ଯେ ହିନ୍ଦୁ ଓ ମୁସଲମାନ ଉଭୟେ ତାଙ୍କୁ ଗୁରୁରୂପେ ପୂଜା କରନ୍ତି । ଜଣେ ଯବନ କିପରି ଗୁରୁ ହୋଇପାରିବେ ବୋଲି ମେଘା ପ୍ରଶ୍ନ କଲା । ତଥାପି ସାଠେଙ୍କ କଥା ଭାଙ୍ଗି ନ ପାରି ମେଘା ଶିରିଡ଼ି ଆସିଲା । ମସ୍‌ଜିଦ୍ ମଧ୍ୟରେ

ପ୍ରବେଶ କରିବା ପୂର୍ବରୁ ସାଇବାବା ଭୟାନକ ରୂପ ଧରି ଚିତ୍କାର କରି ଉଠିଲେ – ''ଶୀଘ୍ର ଏଠାରୁ ପଳାଇ ଯା । ଏଠାକୁ ଆସିବାକୁ ତୋର ସାହସ କିପରି ହେଲା ? ମୁଁ ନିମ୍ନ ଜାତିର ଲୋକ । ମୋତେ ଛୁଇଁଲେ ତୋର ପବିତ୍ରତା ନଷ୍ଟ ହେବ ।'' ମେଘା ଭୟ ପାଇ ଚାଲିଗଲା । ମାତ୍ର ଧୀରେ ଧୀରେ ବାବାଙ୍କ ରାଗ ଶାନ୍ତ ହେଲା । ମେଘା ପୁଣି ଆସିଲା । ବାବାଙ୍କ ସଂସର୍ଗରେ ଆସିଲା । ବାବାଙ୍କର ଲୀଳା ଦେଖିଲା । ତଥାପି ତା'ର ପୂର୍ଣ୍ଣ ବିଶ୍ୱାସ ଆସି ନଥାଏ । ସେ ଖେଦ୍‌କୁ ଫେରି ପୀଡ଼ିତ ହୋଇ କିଛିଦିନ ପାଇଁ ଶଯ୍ୟାଶାୟୀ ହୋଇ ପଡ଼ିଲା ।

ଥରେ ମେଘା ଶିବଦର୍ଶନ ପାଇଁ ମନ୍ଦିରକୁ ଯାଇ ଦେଖିଲା ଯେ ପୂଜାମଣ୍ଡପରେ ବାବା ଅଧିଷ୍ଠିତ । ଏହାପରେ ଶିରିଡ଼ିକୁ ଫେରିବା ପାଇଁ ସେ ବ୍ୟାକୁଳ ହୋଇଉଠିଲା । ଶିରିଡ଼ିକୁ ଫେରିବା ପରେ ସେ ବାବାଙ୍କୁ ଶିବ ଜ୍ଞାନକରି ପୂଜା କଲା । ଶିରିଡ଼ିରେ ପ୍ରାୟ ବେଲଗଛ ନଥିଲା । ସୁତରାଂ ପ୍ରତିଦିନ ପ୍ରାୟ ଦେଢ଼ମାଇଲ ଦୂରବର୍ତ୍ତୀ ଗ୍ରାମରୁ ବେଲପତ୍ର ଆଣି ମେଘା ପୂଜା କଲା । ପୂର୍ବରୁ ନୁଲ୍‌କର୍ ନାମକ ଜଣେ ବ୍ୟକ୍ତି ବାବାଙ୍କୁ ପୂଜା କରୁଥିଲେ । ତାଙ୍କର ଦେହାନ୍ତ ପରେ ମେଘା ଏହାର ଦାୟିତ୍ୱ ନେଲା । ଶିରିଡ଼ିରେ ଥିବା ସବୁ ଦେବାଦେବୀଙ୍କ ମନ୍ଦିରରେ ପୂଜାକାର୍ଯ୍ୟ ଶେଷ କରି ମେଘା ବାବାଙ୍କ ପାଖକୁ ଫେରି ତାଙ୍କର ପୂଜାକରେ । ଥରେ ମେଘା ସବୁ ଦେବାଦେବୀ ମନ୍ଦିରରେ ପୂଜା ସାରି ଖଣ୍ଡୋବାଙ୍କ ମନ୍ଦିରରେ ପହଞ୍ଚିଲାବେଳକୁ ମନ୍ଦିରର ଦ୍ୱାର ବନ୍ଦ ଥିଲା । ସୁତରାଂ ସେ ଫେରିଯାଇ ବାବାଙ୍କ ପାଖରେ ପହଞ୍ଚିଲା । ବାବା କହିଲେ – ''ଆଜି ବ୍ୟତିକ୍ରମ କାହିଁକି ?'' ମେଘା ଖଣ୍ଡୋବା ମନ୍ଦିରର ଦ୍ୱାର ବନ୍ଦ ଅଛି ବୋଲି ଜଣାଇବାରୁ ବାବା ବର୍ତ୍ତମାନ ଏହା ଖୋଲା ଅଛି ବୋଲି ଜଣାଇଲେ । ପ୍ରକୃତରେ ମେଘା ଫେରିଯାଇ ଖଣ୍ଡୋବା ମନ୍ଦିର ଖୋଲିଥିବାର ଦେଖିଲା ଏବଂ ପୂଜାକାର୍ଯ୍ୟ ଶେଷ କରି ବାବାଙ୍କ ପାଖକୁ ଆସି ତାଙ୍କର ପୂଜା କଲା ।

ଅନ୍ୟ ଏକ ଦିନ ଏକ ବିଚିତ୍ର ଅନୁଭୂତି ମାଧ୍ୟମରେ ମେଘାର ଈଶ୍ୱର ବିଶ୍ୱାସକୁ ଅଧିକ ଦୃଢ଼ୀଭୂତ କରିଥିଲେ । ଗୋଟିଏ ମକର ସଂକ୍ରାନ୍ତି ତିଥିରେ ମେଘାର ଆଗ୍ରହ ଜନ୍ମିଲା । ବାବାଙ୍କୁ ଗଙ୍ଗାସ୍ନାନ କରାଇବାକୁ । ମେଘା ବାବାଙ୍କୁ ଶିବରୂପେ ପୂଜା କରୁଥିବାରୁ ଏବଂ ବାବା ସଦାସର୍ବଦା ଗୋଦାବରୀ ନଦୀକୁ ଗଙ୍ଗା ବୋଲି ଅଭିହିତ କରୁଥିବାରୁ ମେଘା ଗୋଦାବରୀ ନଦୀରୁ ଜଳ ଆଣି ବାବାଙ୍କୁ ସ୍ନାନ କରାଇବାର ଇଚ୍ଛା ପୋଷଣ କଲା । ବାବା ପ୍ରଥମେ ଏ ପ୍ରସ୍ତାବରେ ସମ୍ମତ ହେଉ ନଥିଲେ । ବାରମ୍ବାର ଅନୁନୟ ପରେ ମେଘାକୁ ଅନୁମତି ମିଳିଲା । ମେଘା ଅତି ପ୍ରତ୍ୟୁଷରେ

ଷୋହଳ କିଲୋମିଟର ଦୂରରେ ଥିବା ଗୋଦାବରୀ ନଦୀରୁ ଜଳ ଆଣିଲା । ସ୍ନାନ ପାଇଁ ବାବା ପ୍ରସ୍ତୁତ ନଥିଲେ । ଅନେକ ବିଳମ୍ବ ଘଟିବା ପରେ ବାବା ମେଘାକୁ କହିଲେ – ''ମସ୍ତକ ହେଉଛି ଶରୀରର ମୁଖ୍ୟ ଅଂଶ । ସୁତରାଂ ମୋର ମସ୍ତକରେ ଜଳ ଦେଲେ ଠିକ୍ ହେବ ।'' ଏହା ଶୁଣିବା ମାତ୍ରେ ମେଘା ହର ହର ମହାଦେବ କହି ବାବାଙ୍କ ଉପରେ ଜଳ ଢାଳିବାକୁ ଲାଗିଲା । ମାତ୍ର ଆଶ୍ଚର୍ଯ୍ୟର କଥା ଯେ ଜଳ ଢାଳି ସାରିବା ପରେ ମେଘା ବାବାଙ୍କର ଶରୀରକୁ ଶୁଷ୍କ ବସନରେ ପୋଛିବାକୁ ଗଲାବେଳେ ଦେଖିଲା ଯେ ମସ୍ତକ ବ୍ୟତୀତ ଶରୀର କୌଣସି ଅଂଶ ଓଦା ହୋଇନାହିଁ । ବାବାଙ୍କର ଏପରି ଲୀଳା ମେଘାକୁ ଅଭିଭୂତ କରିଥିଲା ଏବଂ ମେଘାର ଶେଷ ଜୀବନ ପର୍ଯ୍ୟନ୍ତ ସେ ବିଶ୍ୱାସର ବଳୟ ମଧ୍ୟରେ ବାନ୍ଧି ହୋଇ ରହିଥିଲା ।

ମହାରାଷ୍ଟ୍ରର ନାସିକ ଜିଲ୍ଲାର ବାଣୀ ଅଞ୍ଚଳର ଅଧିବାସୀ କାକାଜୀ ବୈଦ୍ୟ ସପ୍ତଶୃଙ୍ଗୀ ଦେବୀଙ୍କର ଭକ୍ତ ଥିଲେ । ଥରେ ସେ ଗଭୀର ମାନସିକ ଚିନ୍ତାରେ ଉଦ୍‌ବେଳିତ ହୋଇ ଦେବୀଙ୍କୁ ପ୍ରାର୍ଥନା କଲାପରେ ଦେବୀ ସ୍ୱପ୍ନରେ ଆବିର୍ଭୂତା ହୋଇ ତାଙ୍କୁ ନିର୍ଦ୍ଦେଶ ଦେଲେ ବାବାଙ୍କୁ ଦର୍ଶନ କରିବା ପାଇଁ । ଶିରିଡ଼ି ବାବାଙ୍କ ସଂପର୍କରେ ତାଙ୍କର କୌଣସି ଧାରଣା ନଥିବାରୁ ସେ ଏ ସୂଚନାର ପ୍ରକୃତ ତାତ୍ପର୍ଯ୍ୟ ବୁଝିପାରିଲେ ନାହିଁ । 'ବାବା' ଶବ୍ଦର ତାତ୍ପର୍ଯ୍ୟ ସେ ତ୍ରୟମ୍ବକେଶ୍ୱର ବୋଲି ବୁଝିଲେ । ତ୍ରୟମ୍ବକେଶ୍ୱରଙ୍କ ପୂଜାର୍ଚ୍ଚନା କରିସାରିବା ପରେ ମଧ୍ୟ ତାଙ୍କର ମାନସିକ ଉଦ୍‌ବେଳନ ଶାନ୍ତ ହୋଇ ନଥିଲା । ସୁତରାଂ ପଥ ପ୍ରଦର୍ଶନ ପାଇଁ ମା' ସପ୍ତଶୃଙ୍ଗୀକୁ ପ୍ରାର୍ଥନା କରି ଚାଲିଥିଲେ । ସେ ମଧ୍ୟ ସପ୍ତଶୃଙ୍ଗୀ ମନ୍ଦିରର ପୂଜକ ଥିଲେ । ଏପରି ସମୟରେ ଶିରିଡ଼ିରେ ଏକ ଘଟଣା ଘଟିଲା । ବାବାଙ୍କର ପରମ ଅନୁଗତ ଶ୍ୟାମର ସାନଭାଇ ପାଖକୁ ଆସିଥିବା ଜଣେ ବିଖ୍ୟାତ ଜ୍ୟୋତିଷ ଜଣାଇଲେ ଯେ ଶ୍ୟାମଙ୍କର ମା' ଦେବୀ ସପ୍ତଶୃଙ୍ଗୀଙ୍କ ପାଖରେ କିଛି ଦେବାକୁ ମାନସିକ କରିଥିଲେ ଏବଂ ଶ୍ୟାମ ଏହା ପାଳନ କରିନାହାନ୍ତି । ଶ୍ୟାମର ସାନଭାଇ ତାକୁ ଏହା ଜଣାଇବାରୁ ଶ୍ୟାମ ନିଜ ମା'ଙ୍କ ମାନସିକ ମାନସିକ କଥା ସ୍ମରଣ କଲେ । ପିଲାଦିନେ ଶ୍ୟାମ ଅସୁସ୍ଥ ଥିବା ସମୟରେ ତାଙ୍କର ମା' ସପ୍ତଶୃଙ୍ଗୀ ଦେବୀଙ୍କୁ ଦର୍ଶନ ପାଇଁ ମନାସି ଥିଲେ । ପୁନଶ୍ଚ ଶ୍ୟାମଙ୍କ ମାତା ସ୍ତନ୍ୟକର୍କଟ ରୋଗରେ ପୀଡ଼ିତ ଥିବା ସମୟରେ ଯନ୍ତ୍ରଣାର ଉପଶମ ପାଇଁ ଶ୍ୟାମ ମା' ସପ୍ତଶୃଙ୍ଗୀ ଦେବୀଙ୍କୁ ପ୍ରାର୍ଥନା କରିଥିଲେ ଏବଂ ଦୁଇଟି ରୌପ୍ୟ ସ୍ତନ୍ୟ ଦେବାପାଇଁ ମନାସି ଥିଲେ । ଯନ୍ତ୍ରଣାର ଉପଶମ ଘଟିଥିଲେ ମଧ୍ୟ ଶ୍ୟାମ ଏହା ଭୁଲିଯାଇଥିଲେ ।

ବିସ୍ମୃତ ଯାଇଥିବା ମାନସିକ କଥା ସ୍ମରଣ କରି ଶ୍ୟାମ ଦୁଇଟି ରୌପ୍ୟ ସ୍ତନ୍ୟ ନିର୍ମାଣ କରାଇ ବାବାଙ୍କ ପାଖୁ ଯାଇ ପ୍ରାର୍ଥନା କଲେ । ଶ୍ୟାମ କହିଲେ – ''ଦେବ ! ମୋ ପାଇଁ ଆପଣ ସର୍ବଦେବଦେବୀ । ସୁତରାଂ ଗ୍ରହଣ କରନ୍ତୁ ।'' କିନ୍ତୁ ବାବା ଶ୍ୟାମଙ୍କୁ ନିର୍ଦ୍ଦେଶ ଦେଲେ 'ବାଣୀ' ଯାଇ ସେଠାରେ ସପ୍ତଶୃଙ୍ଗୀ ମନ୍ଦିରରେ ପୂଜା ଅର୍ଚ୍ଚନା କରିବା ପାଇଁ । ନିର୍ଦ୍ଦେଶ ମତେ ଶ୍ୟାମ ବାଣୀରେ ପହଞ୍ଚିଲେ ଏବଂ ପୂଜକଙ୍କ ସନ୍ଧାନ କରୁ କରୁ କାକାଜୀ ବୈଦ୍ୟଙ୍କ ପରେ ପହଞ୍ଚିଲେ । ବାବାଙ୍କର ବିଧାନ କି ବିଚିତ୍ର ଆଉ ମନୋଜ୍ଞ । ଦୁଇ ଭକ୍ତଙ୍କର ମିଳନ ଓ ମନସ୍କାମନା ପୂରଣ ହେଲା । ଶ୍ୟାମ ସପ୍ତଶୃଙ୍ଗୀ ଦେବୀ ମନ୍ଦିରରେ ପୂଜା ଆରାଧନାର ସୁଯୋଗ ପାଇ ଋଣମୁକ୍ତ ହେଲେ । ପୁଣି କାକାଜୀ ବୈଦ୍ୟ ଶ୍ୟାମଙ୍କ ସାକ୍ଷାତ ପାଇଁ ଶିରିଡ଼ିର ସବିଶେଷ ବିବରଣୀ ପାଇ ବାବାଙ୍କ ପାଖକୁ ଆସିବାର ଉନ୍ମୁକ୍ତ ପଥ ଦେଖିଲେ । ଦିବ୍ୟତ୍ୱ କେତେବେଳେ ବାପର ରୂପ ନିଏ ତ କେତେବେଳେ ମା'ର ରୂପ ନିଏ – ଏ ଧାରଣା ସ୍ପଷ୍ଟ ହୋଇ ଉଠିଲା ।

ସମଧର୍ମୀ ଘଟଣାର ବହୁଳତା ବାବାଙ୍କର ଦିବ୍ୟ ଯୋଜନାକୁ ପରିସ୍ଫୁଟ କରେ । ବ୍ୟକ୍ତିର ଇଷ୍ଟଦେବଦେବୀ ଯାହା ହୁଅନ୍ତୁ ନା କାହିଁକି, ବ୍ୟକ୍ତି ମୂଳତଃ ସେହି ଏକ ଈଶ୍ୱରଙ୍କର ଆରାଧନା କରେ । ନାମ ଆଉ ରୂପର ବିବିଧତା ମଧ୍ୟରେ ଏକତ୍ୱ ସଦା ବିରାଜମାନ । ସେଥିପାଇଁ ପ୍ରତି ବ୍ୟକ୍ତିର ଉପାସ୍ୟ ଦେବତା ମାଧ୍ୟମରେ ବାବା ଭକ୍ତକୁ ଈଶ୍ୱରାନୁଭୂତି ଆଣି ଦେଇଛନ୍ତି । କେତେବେଳେ ସେ ଶିବ ରୂପରେ ପ୍ରତିଭାତ ହେବାସ୍ଥଳେ ଅନ୍ୟ ସମୟରେ ରାମ ରୂପରେ ଦର୍ଶନ ଦେଇଛନ୍ତି । ସେହିପରି ଗୋଲାପ ସ୍ୱାମୀ ରୂପେ ସେ କାହାଠାରୁ ସଦ୍‌ଗୁରୁ ପୂଜା ଅର୍ଚ୍ଚନା ଗ୍ରହଣ କରିବା ବେଳେ ଅନ୍ୟ କାହାଠାରୁ ଅକଲ୍‌କୋଟ୍ ମହାରାଜ ରୂପେ ଆରାଧନା ଗ୍ରହଣ କରିଛନ୍ତି ।

ଆଚାର ବିଚାରର ଭିନ୍ନତା ଏହି ଅଭେଦତ୍ୱର ଉପଲବ୍ଧିକୁ ନଷ୍ଟ କରିଦେଇ ନାହିଁ । ହିନ୍ଦୁମାନଙ୍କର ରାମନବମୀ ଉତ୍ସବ ଏବଂ ମୁସଲମାନଙ୍କର ଚନ୍ଦନ ଯାତ୍ରା ଏକା ଦିନରେ ଏକାସ୍ଥାନରେ ସମ୍ମିଳିତ ଭାବରେ ପାଳିତ ହୋଇ ବାବାଙ୍କର ମହିମା ଗାନ କରିଛନ୍ତି । ଶିରିଡ଼ିର ମହାତ୍ମ୍ୟ ହିନ୍ଦୁ ମୁସଲମାନମାନଙ୍କୁ ଯେପରି ଅଭିଭୂତ କରିଛି, ସେହିପରି ଖ୍ରୀଷ୍ଟିୟାନ୍ ଓ ପାର୍ସୀମାନଙ୍କୁ ମଧ୍ୟ ବିମୋହିତ କରିଛି । ପ୍ରକାଶିତ ଓ ଜାଗତିକ ବସ୍ତୁର ବିଭିନ୍ନତା ବିଭେଦତା ମଧ୍ୟରେ ଐକ୍ୟପୂର୍ଣ୍ଣ ଈଶ୍ୱରସତ୍ତାକୁ ଉପଲବ୍ଧିର ପରିସର ମଧ୍ୟକୁ ଆଣିବାର ଦିବ୍ୟ ଯୋଜନା ସାଇବାବାଙ୍କ ଅବତାର ଓ ଅବତରଣର ମୁଖ୍ୟ ନିର୍ଯ୍ୟାସ ରୂପେ ପ୍ରକଟିତ ହୋଇପାରିଛି ।



# ପ୍ରାର୍ଥନା

ଜୀବନକୁ ଉଚ୍ଚତର ସୋପାନକୁ ନେବା ପାଇଁ ପ୍ରାର୍ଥନା ଏକ ସୁଗମ ପନ୍ଥା । ପ୍ରତ୍ୟେକ ମନୁଷ୍ୟ ମଧ୍ୟରେ ଦିବ୍ୟତ୍ୱ ରହିଛି । କିନ୍ତୁ ମନୁଷ୍ୟ ମାୟା ପରଦାର ଆବରଣ ମଧ୍ୟରେ ରହିଥିବାରୁ ଦିବ୍ୟତ୍ୱକୁ ଅନୁଭବ କରିପାରେ ନାହିଁ । ସୁପ୍ତ ରହି ଦିବ୍ୟତ୍ୱର ଆଲୋକ ଦେଖିପାରେ ନାହିଁ । ପ୍ରାର୍ଥନା ମନୁଷ୍ୟକୁ ଆବରଣମୁକ୍ତ କରେ, ସୁପ୍ତତାକୁ କାଟି ଜାଗୃତି ଆଣିଦିଏ । ଏ ଦୃଷ୍ଟିରୁ ପ୍ରତ୍ୟେକ ଧର୍ମରେ ପ୍ରାର୍ଥନାର ମହତ୍ତ୍ୱକୁ ସ୍ୱୀକାର କରାଯାଇଛି ।

ସଂସାରରେ ମନୁଷ୍ୟର ଜୀବନ ଗୋଟିଏ ଦ୍ରୁତଗାମୀ ରେଳ ପରି । ଏଥିରେ ବହୁ କାମନା ବାସନା ପରିପୂର୍ଣ୍ଣ । ଗତିଶୀଳ ରେଳଗାଡ଼ିଟିକୁ ହଠାତ୍ ସ୍ଥିର ଓ ଗତିହୀନ କରିବା ସହଜ ନୁହେଁ । ଏପରି କଲେ ହୁଏତ ରେଳଗାଡ଼ିଟି କ୍ଷତିଗ୍ରସ୍ତ ହେବ । ସୁତରାଂ ସହଜ ଉପାୟ ହେଉଛି ଦ୍ରୁତଗାମୀ ରେଳଗାଡ଼ିଟିକୁ ଉଚ୍ଚ ପର୍ବତଶିଖରକୁ ନେବାପାଇଁ ପ୍ରୟାସ କରିବା । ଏପରି କଲେ ରେଳଗାଡ଼ିର କ୍ଷିପ୍ରତା ଧୀରେ ଧୀରେ କମିବାକୁ ଲାଗିବ ଏବଂ ଗୋଟିଏ ମୁହୂର୍ତ୍ତରେ ଏହା ସ୍ଥିର ଓ ଗତିହୀନ ହେବ । ଠିକ୍ ସେହିପରି ପ୍ରାର୍ଥନା ମାଧ୍ୟମରେ ଆମର ଅସରନ୍ତି କାମନା ବାସନା ସବୁ ଧୀରେ ଧୀରେ କମିବାକୁ ଆରମ୍ଭ କଲେ । ଏକ ଉଚ୍ଚତର ଶିଖରକୁ ଯାତ୍ରା କରିବାର ସାତ୍ତ୍ୱିକ ଅଭିଳାଷ ତାମସିକ ବାସନାସବୁକୁ କମାଇଦିଏ । ମହତ୍ତର ଅନୁଭବ ଏବଂ ସାଧନାର ଅଙ୍କୁରଣ ଓ ବିକାଶ ଆମ ଜୀବନକୁ ଅନ୍ୟ ଏକ ପର୍ଯ୍ୟାୟକୁ ନେଇଯାଏ ।

ଅନେକଙ୍କର ଧାରଣା ଯେ ବାର୍ଦ୍ଧକ୍ୟ କାଳରେ ଅନ୍ୟାନ୍ୟ କର୍ମବ୍ୟସ୍ତତା କମିଯିବାପରେ ଅବସର ସମୟର ସଦୁପଯୋଗ ପାଇଁ ପ୍ରାର୍ଥନାର ଅଭ୍ୟାସ ଆବଶ୍ୟକ । ଏହା ଏକ ଅବାନ୍ତର ଯୁକ୍ତି । ଜୀବନକୁ ସୌନ୍ଦର୍ଯ୍ୟମଣ୍ଡିତ ଓ ସାଧନା ମୁଖର କରିବା ପାଇଁ ଉଦ୍ୟମ ଯେତେ ଶୀଘ୍ର ଆରମ୍ଭ ହୁଏ ସେତେ ବେଶି ସୁଫଳ ମିଳେ । ସୁତରାଂ ଜୀବନର ପ୍ରାକ୍‌କାଳରୁ ପ୍ରାର୍ଥନାର ଅଭ୍ୟାସ ଦରକାର । ପ୍ରାର୍ଥନା ପାଇଁ ନିର୍ଦ୍ଦିଷ୍ଟ ସ୍ଥାନ ଓ ସମୟର ମଧ୍ୟ ଗୁରୁତ୍ୱ ରହିଛି । ଯେ କୌଣସି ସ୍ଥାନ ଏବଂ ଯେ କୌଣସି ସମୟରେ ପ୍ରାର୍ଥନା କରାଯାଇପାରେ । ମାତ୍ର ନିରୂପିତ ସ୍ଥାନ ଓ ସମୟର

ବ୍ୟବହାର କଲେ ଏକାଗ୍ରତା ଲାଭ ଖୁବ୍ ସହଜ ହୁଏ । ଯେପରି ପଢ଼ା ଟେବୁଲ୍‌ଟି ଅଧ୍ୟୟନ – ଆକର୍ଷଣ ସୃଷ୍ଟି କରେ ଏବଂ ବିଛଣାଟି ଶୋଇବା ପାଇଁ ଆକର୍ଷକ ହୁଏ, ସେହିପରି ବ୍ୟକ୍ତି ପ୍ରାର୍ଥନା ପାଇଁ ଉପଯୋଗ କରୁଥିବା ସ୍ଥାନ ଓ ସମୟ ଏ ଦିଗରେ ପ୍ରବୃତ୍ତ ହେବାର ଆକର୍ଷଣ ସୃଷ୍ଟି କରେ ।

ପ୍ରାର୍ଥନା ସମୟରେ ଭଗବାନଙ୍କର ନାମ କୀର୍ତ୍ତନ କରାଯାଇପାରେ । ଭଗବାନଙ୍କର ଅଜସ୍ର ନାମ ରହିଛି । ପ୍ରତ୍ୟେକଟି ନାମର ତାତ୍ପର୍ଯ୍ୟ ରହିଛି । ନିଜକୁ ଭଲ ଲାଗୁଥିବା ଯେ କୌଣସି ନାମକୁ ଅବଲମ୍ବନ କରି ପ୍ରାର୍ଥନା କରାଯାଇପାରେ । ଅନ୍ୟପକ୍ଷରେ ଭଗବାନଙ୍କର ଗୁଣ ଓ ଯଶ ସ୍ମରଣ କରାଯାଇପାରେ । ଭଗବାନଙ୍କର ଲୀଳା ବିଭିନ୍ନ ଶାସ୍ତ୍ରରେ ବର୍ଣ୍ଣିତ । ତାଙ୍କର ଲୀଳା ବିଭିନ୍ନ ସ୍ୱରରେ ସଙ୍ଗୀତ । ତାଙ୍କର ଯଶ ବହୁ ପ୍ରାର୍ଥନାରେ ରୂପାୟିତ । ସୁତରାଂ ପ୍ରାର୍ଥନା ମାଧ୍ୟମରେ ଭଗବାନଙ୍କର ଯଶ କୀର୍ତ୍ତନ କରାଯାଇପାରେ ।

ନିଜର ଦୁଃଖ ଓ ଯନ୍ତ୍ରଣାର ଉପଶମ ପାଇଁ ଭଗବାନଙ୍କୁ ପ୍ରାର୍ଥନା କରାଯାଇପାରେ । ନିଜର ଅଭିଳାଷ ପୂରଣ ପାଇଁ ମଧ୍ୟ ଭଗବାନଙ୍କୁ ପ୍ରାର୍ଥନା କରାଯାଏ । ସ୍ନେହମୟୀ ଜନନୀ ଶିଶୁର ଆବଶ୍ୟକତା ଠିକ୍ ରୂପେ ଜାଣିଥାନ୍ତି । ଶିଶୁ କ୍ଷୁଧାର୍ତ୍ତ ଥିଲେ ଖାଦ୍ୟ ଦିଅନ୍ତି, ଶୀତ ସମୟରେ ଜାମା ପିନ୍ଧାନ୍ତି ଏବଂ ଗରମ ଅନୁଭବ କରୁଥିଲେ ଶୀତଳତା ଦିଅନ୍ତି । ତଥାପି ଜନନୀ ପ୍ରତ୍ୟାଶା ରଖନ୍ତି ଯେ ଶିଶୁ ନିଜର ଚାହିଦାକୁ ପ୍ରକାଶ କରିବାକୁ ଶିକ୍ଷାକରୁ । ଏ ଦୃଷ୍ଟିରୁ ପ୍ରାର୍ଥନା ସମୟରେ ନିଜର ଆର୍ତ୍ତି ପ୍ରକାଶ କରିବା ଏବଂ ଆର୍ତ୍ତି ହରଣ ଲାଗି ପ୍ରାର୍ଥନା କରିବାରେ ବାଧା ନାହିଁ ।

ଅବଶ୍ୟ ସାଧନାମୟ ଜୀବନର ପରିପୁଷ୍ଟି ଲାଗି କେତେକ ବିଷୟ ବାଧା ସୃଷ୍ଟି କରେ । ଭୋଗ ବିଳାସର ସାମଗ୍ରୀ, ସାଂସାରିକ ବିଷୟ ବସ୍ତୁ ଏବଂ ଅସାରତାପୂର୍ଣ୍ଣ ଜିନିଷସବୁ ପ୍ରାର୍ଥନାର ଅନ୍ତର୍ଭୁକ୍ତ ହେବା ଉଚିତ୍ ନୁହେଁ । ବହୁ ସାତ୍ତ୍ୱିକ ଓ କମନୀୟ ବସ୍ତୁ ପାଇଁ ପ୍ରାର୍ଥନା କରାଯାଇପାରେ । ମାନସିକ ଦୁର୍ବଳତାର ବିନାଶ ଓ ସୁଗୁଣର ଉନ୍ମେଷ ପାଇଁ ପ୍ରାର୍ଥନା କରାଯାଇପାରେ । ଶାନ୍ତି, ପ୍ରୀତି ଓ ସଦ୍‌ଭାବ ପାଇଁ ପ୍ରାର୍ଥନା କରାଯାଇପାରେ । ପରିବେଶର ମଙ୍ଗଳ ଓ ଜଗତର କଲ୍ୟାଣ ପାଇଁ ପ୍ରାର୍ଥନା କରାଯାଇପାରେ । ନିଜର ପ୍ରାର୍ଥନା ଏବଂ ନିଜର ଆଚରଣ ମଧ୍ୟରେ ସମନ୍ୱୟ ରହିବା ବିଧେୟ । ଶାନ୍ତି ପ୍ରୀତି ପାଇଁ ପ୍ରାର୍ଥନା କଲେ ଅନ୍ୟ ପ୍ରତି ସ୍ନେହଶ୍ରଦ୍ଧା ଦର୍ଶାଇବାକୁ ହେବ । ବିନମ୍ରତା ଲାଭ ପାଇଁ ପ୍ରାର୍ଥନା କଲେ ଅନ୍ୟ ପ୍ରତି ଏହି ମନୋଭାବ ପ୍ରଦର୍ଶନ

କରିବାକୁ ହେବ । ଆମର ଆଚରଣ ଓ ପ୍ରାର୍ଥନା ମଧ୍ୟରେ ସାମଞ୍ଜସ୍ୟ ଆମର ପ୍ରାର୍ଥନାକୁ ଶକ୍ତିଶାଳୀ କରିଥାଏ ।

ପ୍ରାର୍ଥନାର କେନ୍ଦ୍ରବିନ୍ଦୁଟି ହେଉଛି ଭାବ ବା ଭକ୍ତି । କୌଣସି ଭାବ ନ ଥାଇ କେଳବ ମୁଖସ୍ଥ ଶବ୍ଦସବୁକୁ କହିଯିବା ପ୍ରାର୍ଥନା ହେବ ନାହିଁ । ପ୍ରାର୍ଥନା ମୁଖ ଓ ଜିହ୍ବା ଦ୍ୱାରା ପ୍ରକାଶିତ ହୋଇପାରେ, ମାତ୍ର ଏହାର ଉତ୍ପତ୍ତିସ୍ଥଳ ହେଉଛି ହୃଦୟ । ଯେଉଁ ପ୍ରାର୍ଥନାରେ ମନ, ହୃଦୟ ଓ ପ୍ରାଣ ଏକୀଭୂତ ହୋଇଥାଏ ତାହା ପ୍ରଭାବଶାଳୀ ପ୍ରାର୍ଟନାର ରୂପ ନିଏ ।

କିପରି ରୀତିରେ ପ୍ରାର୍ଥନା କରିବାକୁ ହେବ, ସେ ବିଷୟରେ କୌଣସି ନିର୍ଦ୍ଦିଷ୍ଟ ରୂପରେଖ ନାହିଁ । ପ୍ରତି ସମାଜ, ସଂସ୍କୃତି ଓ ଧାର୍ମିକ ପରମ୍ପରାରେ ପ୍ରାର୍ଥନା ପାଇଁ କେତେକ ନୀତିନିୟମ ରହିଛି । କିନ୍ତୁ ମୁଖ୍ୟତଃ ଆନ୍ତରିକତାର ସହ ପ୍ରାର୍ଥନା କରିବାକୁ ହେବ । ଏ ପ୍ରସଙ୍ଗରେ ଲିଓ ଟଲ୍‌ଷ୍ଟୟଙ୍କର ଗୋଟିଏ ସୁନ୍ଦର ଗଳ୍ପ ରହିଛି । ଥରେ ଜଣେ ଧର୍ମଯାଜକ ତାଙ୍କର କେତେକ ସେବକମାନଙ୍କ ସହିତ ଜଳଯାତ୍ରାରେ ଦେଶ ଦେଶାନ୍ତର ଯାଉଥିଲେ । ଏହି କ୍ରମରେ ତାଙ୍କର ଜାହାଜଟି ଛୋଟିଆ ଗୋଟିଏ ଦ୍ୱୀପରେ ଲାଗିଲା । ଦ୍ୱୀପଟି ଖୁବ୍ ନିର୍ଜନ । ସେଠାରେ ସଭ୍ୟଲୋକମାନେ ବାସ କରୁଛନ୍ତି ବୋଲି ମନେ ହେଉ ନଥିଲା । ଜାହାଜଟି କୂଳରେ ରହିଲା ପରେ ସେବକମାନେ ଖାଦ୍ୟ ଇତ୍ୟାଦି ସଂଗ୍ରହ ପାଇଁ ଜାହାଜରୁ ବାହାରିଆସି ଦ୍ୱୀପ ଭିତରକୁ ଆଗେଇଲେ ।

କିଛି ସମୟ ପରେ ସେମାନେ ସଂଗୃହୀତ ଦ୍ରବ୍ୟ ସହିତ ଅଳ୍ପ କେତେଜଣ ବଣୁଆ ଲୋକଙ୍କୁ ଧରି ଧର୍ମ ଯାଜକମାନଙ୍କ ପାଖରେ ପହଞ୍ଚିଲେ । ସେମାନେ ଧର୍ମ ଯାଜକମାନଙ୍କୁ କହିଲେ – ''ମହାଶୟ, ଆମେ ପହଞ୍ଚିଥିବା ଦ୍ୱୀପଟିରେ କେବଳ ଅସଭ୍ୟ ଲୋକ ଅଛନ୍ତି । ଏମାନେ ଧର୍ମ କ'ଣ ଜାଣିନାହାନ୍ତି । ପ୍ରାର୍ଥନା କିପରି କରିବାକୁ ହୁଏ, ତାହା ମଧ୍ୟ ଜାଣି ନାହାନ୍ତି । ପ୍ରାର୍ଥନା ଶିଖାଇବା ପାଇଁ ଆମେ କିଛି ଲୋକଙ୍କୁ ଆମ ସଙ୍ଗରେ ନେଇ ଆସିଛୁ । ଆପଣ ଦୟାକରି କିଛି ଶିକ୍ଷା ଦିଅନ୍ତୁ । ପ୍ରାର୍ଥନାର ରୀତିନୀତି ଶିଖାଇଦିଅନ୍ତୁ ।''

ଧର୍ମଯାଜକ ଖୁସିହୋଇ ଅନୁରୋଧ ରକ୍ଷାକଲେ । ସେହି ବଣୁଆ ଲୋକମାନଙ୍କୁ ପ୍ରାର୍ଥନାର ଶୈଳୀ ଶିକ୍ଷା ଦିଆଗଲା । ପରେ ପରେ ସେ ବଣୁଆ ଲୋକମାନେ ଚାଲିଗଲେ । ଅଳ୍ପ କିଛିଦିନ ପରେ ଧର୍ମଯାଜକ ମଧ୍ୟ ସ୍ଥିର କଲେ ଯେ ସେ ଦ୍ୱୀପଟି

ଛାଡ଼ି ଅନ୍ୟତ୍ର ଚାଲିଯିବେ । ଏପରି ନିଷ୍ପତ୍ତି ନେବା ପରେ ଜାହାଜଟି କୂଳ ଛାଡ଼ିଲା । ଜାହାଜଟି କୂଳ ଛାଡ଼ି ସମୁଦ୍ର ମଧ୍ୟରେ ଅଳ୍ପ ଦୂରକୁ ଯାଇଛି ଧର୍ମଯାଜକ ଏବଂ ସେବକମାନେ ଲକ୍ଷ୍ୟ କଲେ ଯେ ପ୍ରାର୍ଥନା ଶିକ୍ଷା କରିଥିବା ଦ୍ୱୀପର ସେଇ ଅଳ୍ପ କେତେଜଣ ଦ୍ରୁତଗତିରେ ତାଙ୍କରି ଆଡ଼କୁ ଆସୁଛନ୍ତି । ସେମାନେ ଧର୍ମଯାଜକଙ୍କୁ ସାକ୍ଷାତ କରିବାକୁ ଆସୁଛନ୍ତି ବୋଲି ମନେହେଲା । କିନ୍ତୁ ଜାହାଜଟି କୂଳ ଛାଡ଼ି ଜଳଯାତ୍ରା ଆରମ୍ଭ କରି ସାରିଥିବାରୁ ଧର୍ମଯାଜକ କ'ଣ କରିବେ, ସେ ବିଷୟ ନେଇ ଚିନ୍ତା କରୁଥିଲେ । ହଠାତ୍ ଦେଖାଗଲା ଯେ ସେହି ବ୍ଣୁଆ ଲୋକମାନେ ତୀରରେ ଅଟକି ନ ଯାଇ ପାଣି ଉପରେ ଚାଲିଚାଲି ଜାହାଜରେ ପହଞ୍ଚିଗଲେ । ସେମାନେ ବିନୀତ ଭାବରେ ଧର୍ମଯାଜକଙ୍କୁ କହିଲେ – ''ଆମେ ଆପଣଙ୍କ ଶିକ୍ଷାମତେ ଠିକ୍ ଠିକ୍ ପ୍ରାର୍ଥନା କରୁଛୁ; ମାତ୍ର ଗୋଟିଏ କଥା ଭୁଲିଯାଇଛୁ । ଦୟା କରି ମନେ ପକାଇଦେଲେ, ଆମେ ମନେ ରଖି ଚାଲିଯିବୁ ।''

ଧର୍ମଯାଜକ ବିସ୍ମୟାଭିଭୂତ । ସେ ଗଭୀର ଭାବେ ଅନୁଭବ କଲେ ଯେ ଏହି ଲୋକମାନଙ୍କର ଧର୍ମବିଶ୍ୱାସ ଅତି ଦୃଢ଼ । ଏମାନେ ନିଷ୍କପଟ ଓ ସରଳ ସତ, ହେଲେ ହୃଦୟର ନିଷ୍ଠା ଗଭୀର । ଧର୍ମଯାଜକ ଧୀର ଭାବରେ କହିଲେ – ''ଭାଇମାନେ, ତୁମ୍ଭେମାନେ ପୂର୍ବରୁ ଯେଉଁ ରୀତିରେ ପ୍ରାର୍ଥନା କରୁଥିଲ ସେହି ରୀତିରେ ହିଁ ପ୍ରାର୍ଥନା କର । ତୁମ୍ଭମାନଙ୍କ ପାଇଁ ନୂତନ ରୀତିର ପ୍ରୟୋଜନ ନାହିଁ ।'' ଏହା କହିବା ପରେ ଲୋକମାନେ ଫେରିଗଲେ । ଧର୍ମଯାଜକ ମଧ୍ୟ ଜୀବନର ଏକ ନୂତନ ଦିଗ ଆବିଷ୍କାର କରିବାର ତୃପ୍ତି ଅଭୁବନ କରି ଆଗେଇଚାଲିଲେ ।

ଗଳ୍ପଟି ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । ପ୍ରାର୍ଥନାର ଶୈଳୀ ଗୁରୁତ୍ୱପୂର୍ଣ୍ଣ ନୁହେଁ, ପ୍ରାର୍ଥନାର ଭାବ ହିଁ ମୂଳ କଥା ।

ପ୍ରାର୍ଥନା ଦୃଢ଼ ଓ ଗଭୀର ହେବା ମୂଳରେ ନିଷ୍ଠାପର ବିଶ୍ୱାସବୋଧ ଯେପରି କାର୍ଯ୍ୟ କରେ ମନରେ ସଂଶୟ ଓ ସନ୍ଦେହ ସେହିପରି ପ୍ରାର୍ଥନାରେ ନକାରାତ୍ମକ କାର୍ଯ୍ୟ କରେ । ଆମର ପ୍ରାର୍ଥନା ପରିପୂରିତ ହେବ ତ ? ବ୍ୟକ୍ତି ମନରେ ଏପରି ପ୍ରଶ୍ନ ସହଜରେ ଆସିଥାଏ । ପ୍ରଥମତଃ ଆମର ଦୃଢ଼ ବିଶ୍ୱାସ ରଖିବା ଉଚିତ୍ ଯେ ସାତ୍ତ୍ୱିକ ପ୍ରାର୍ଥନା ନିଶ୍ଚୟ ଫଳବତୀ ହେବ । ଦ୍ୱିତୀୟତଃ ଆମର ପ୍ରାର୍ଥନା କରାଯାଇଥିବା କେତେକ ଅଭିଳାଷର ପରିପୂରଣ ଆମର କ୍ଷତିକାରକ ହୋଇପାରେ; ଆମର ସାଧନା ପଥର ଅନ୍ତରାୟ ହୋଇପାରେ । ମନୁଷ୍ୟ ହିସାବରେ ଆମର ଦୂରଦୃଷ୍ଟି

ସୀମିତ । ଆମର ମଙ୍ଗଳ ପାଇଁ ଯାହା ପ୍ରୟୋଜନ ତାହା ଈଶ୍ୱର ଠିକ୍ ସମୟରେ ପରିପୂରଣ କରିବେ । ସୁତରାଂ ଆମର ଅଭିଳାଷ ପରିପୂରିତ ନ ହେଲେ ଦୁଃଖରେ ମ୍ରିୟମାଣ ନ ହୋଇ ବିଶ୍ୱକର୍ତ୍ତାଙ୍କ ଉପରେ ଗଭୀର ଆସ୍ଥା ରଖିବା ସମୁଚିତ ହେବ ।

ପ୍ରାର୍ଥନା ଏକ ଆରୋହଣ ପ୍ରକ୍ରିୟା । ଭଗବାନଙ୍କ ସହିତ ସଂଯୋଗ ସ୍ଥାପନ ପାଇଁ ଏହା ଏକ ସୁଗମ ମାର୍ଗ । ବ୍ୟକ୍ତିଗତ ଭାବରେ ଏବଂ ସମଷ୍ଟିଗତ ଭାବରେ ଏହି ପ୍ରକ୍ରିୟାରେ ନିଜକୁ ସାମିଲ କରିପାରିଲେ ଦିବ୍ୟତ୍ୱର ଉପଲବ୍ଧି ସହଜ ହୋଇଥାଏ । ପରିବାର ମଧ୍ୟରେ ଏକ ନିର୍ଦ୍ଦିଷ୍ଟ ସମୟ ଓ ସ୍ଥାନରେ ପ୍ରାର୍ଥନାର ଅଭ୍ୟାସ ଓ ଆଚରଣ ଶିଶୁ ମନରେ ସକାରାତ୍ମକ ମନୋବୃତ୍ତି ସୃଷ୍ଟି କରି ସମାଜ ଓ ବିଶ୍ୱକଲ୍ୟାଣର ସମ୍ଭାବନା ବୃଦ୍ଧି କରେ ।



# ନାମସ୍ମରଣ

ମାନବଜୀବନକୁ ଈଶ୍ୱରାଭିମୁଖୀ କରିବା ପାଇଁ ସଦ୍‌ଗୁରୁ ବ୍ୟକ୍ତିର ପ୍ରାରବ୍ଧ, ରୁଚି ଓ ଦକ୍ଷତା ଅନୁଯାୟୀ ମାର୍ଗଦର୍ଶନ କରାନ୍ତି । ଏହା ସହିତ ଯୁଗ ବା ସମସାମୟିକ ପରିବେଶ ପ୍ରତି ମଧ୍ୟ ଦୃଷ୍ଟି ଦିଅନ୍ତି । ପ୍ରତି ଯୁଗରେ ଏକାଧିକ ସାଧନାର ମାର୍ଗ ଥିଲେ ମଧ୍ୟ ଯୁଗର ପରମ୍ପରା ଓ ପରିବେଶକୁ ଚାହିଁ ଏକ ନିର୍ଦ୍ଦିଷ୍ଟ ମାର୍ଗ ବହୁ-ବ୍ୟବହୃତ ରୂପ ନେଇଛି । ସତ୍ୟ, ତ୍ରେତୟା ଓ ଦ୍ୱାପର ଯୁଗ ତୁଳନାରେ ଏ ଯୁଗର ପରିବେଶ ସଂପୂର୍ଣ୍ଣ ଭିନ୍ନ । ତଥାକଥିତ କାର୍ଯ୍ୟବହୁଳ ଜୀବନ ଏବଂ ସଂଘର୍ଷମୟ ଜୀବନଶୈଳୀ ସୃଷ୍ଟି କରିଛି । ଏ ପରିପ୍ରେକ୍ଷୀରେ ଜାଗଯଜ୍ଞ ତପସ୍ୟା ସାଧନ ବିରଳ । କିନ୍ତୁ ଏହାର ଅର୍ଥ ନୁହେଁ ଯେ ଈଶ୍ୱରଙ୍କ ସହିତ ସଂଯୋଗ ସ୍ଥାପନର ମାର୍ଗ ପୂରାପୂରି ନିଶ୍ଚିହ୍ନ ହୋଇଯାଇଛି । ମାନବ କଲ୍ୟାଣ ପାଇଁ ସମର୍ଥ ସଦ୍‌ଗୁରୁ ଯୁଗୋପଯୋଗୀ ପନ୍ଥା ନିର୍ଦ୍ଦେଶ କରି ମୁକ୍ତିଲାଭର ସମ୍ଭାବନା ଉନ୍‌ମୁକ୍ତ ରଖିଛନ୍ତି । ଅବତାର ପୁରୁଷ ଶିରଡ଼ିର ସାଇବାବା ସେହିପରି ତାଙ୍କର ଅନୁଗତ ଭକ୍ତମାନଙ୍କର କଲ୍ୟାଣ ପାଇଁ ସେମାନଙ୍କର ଦକ୍ଷତା ଅନୁଯାୟୀ ଏକାଧିକ ପଥ ଦର୍ଶାଇଛନ୍ତି । ନାମସ୍ମରଣ ଭଳି ସହଜ ପନ୍ଥା ମଧ୍ୟ ଜୀବନକୁ ସାଧନାମୁଖୀ କରିପାରେ ବୋଲି ନିଜର କଥା ଓ କାର୍ଯ୍ୟ ମାଧ୍ୟମରେ ଦର୍ଶାଇଛନ୍ତି ।

ନାମ ସ୍ମରଣ ଏକ ସହଜ ସରଳ ଆଧ୍ୟାତ୍ମିକ ସାଧନା । କିପରି, କେଉଁଠାରେ ଓ କେତେବେଳେ ବିଭୁ ନାମ ସ୍ମରଣ କରାଯିବ ସେ ସମ୍ପର୍କରେ କିଛିଟା ଭିନ୍ନ ବାର୍ତ୍ତା ଥିଲେ ମଧ୍ୟ ନାମସ୍ମରଣର ଗୁରୁତ୍ୱକୁ ପ୍ରତି ଧର୍ମରେ ସ୍ୱୀକୃତି ଦିଆଯାଇଛି । ବାଇବେଲ୍, କୋରାନ୍, ଗ୍ରନ୍ଥସାହେବ ଏବଂ ଋକ୍‌ବେଦରେ ନାମସ୍ମରଣର ମହତ୍ତ୍ୱ ବର୍ଣ୍ଣିତ ହୋଇଛି । ସୃଷ୍ଟିକର୍ତ୍ତାଙ୍କର ନାମ, ରୂପ, ଲୀଳା ଓ ଯଶର ନିରନ୍ତର ସ୍ମରଣ ପାଇଁ ନିର୍ଦ୍ଦେଶ ଦିଆଯାଇଛି ।

ସାଇ ସତ୍‌ଚରିତର ରଚୟିତା ହିମଦ୍‌ପନ୍ଥ ଦିବ୍ୟନାମ ସ୍ମରଣର ଉପଯୋଗିତା ସଂପର୍କରେ ସୂଚନା ଦେବାକୁ ଯାଇ ସତ୍‌ଚରିତରେ ନାମସ୍ମରଣକୁ ଏକ ପଥପ୍ରଦର୍ଶକ ଆଲୋକ ସହିତ ତୁଳନା କରିଛନ୍ତି । ସେ ଲେଖିଛନ୍ତି ସମୁଦ୍ର ମଧ୍ୟରେ ଲୁକ୍‌କାୟିତ ପାହାଡ଼ ଅଥବା ଅନ୍ୟାନ୍ୟ ବିପଦ ସମ୍ପର୍କରେ ନାବିକମାନଙ୍କୁ ସତର୍କ କରାଇ ଯାତ୍ରା

ନିରାପଦ କରାଇବା ପାଇଁ ବିଭିନ୍ନ ସ୍ଥାନରେ ବତୀଘର କରାଯାଇଥାଏ । ପାର୍ଥିବ ସାଂସାରିକ ଝଂଜାଳ ସାଗରରେ ସାଇନାଥଙ୍କ ନାମ ଓ କାହାଣୀର ସ୍ମରଣ ଆମକୁ ପଥ ଦେଖାଇଥାଏ । ଏହାଦ୍ୱାରା ଅନ୍ତଃକରଣ ଶୁଦ୍ଧ ହୁଏ, ଦୈହିକ ଚେତନାର ଅହଂକାର ଏବଂ ଦ୍ୱୈତ ଭେଦଭାବ ଦୂରୀଭୂତ ହୁଏ । ହିମଦପନ୍ଥ ପୁଣି କହିଛନ୍ତି ଯେ ସତ୍ୟଯୁଗରେ ସମଦମ (ମନ ଓ ଶରୀରର ସ୍ଥିରତା) ଥିଲା ସାଧନାର ପଥ । ତ୍ରେତୟାରେ ସାଧନା ତ୍ୟାଗ ଉପରେ ଏବଂ ଦ୍ୱାପରରେ ପୂଜା ଅର୍ଚ୍ଚନା ଉପରେ ଆଧାରିତ ଥିଲା । ବର୍ତ୍ତମାନ କଳିଯୁଗରେ ପ୍ରଭୁଙ୍କ ଯଶ ଓ ନାମ କୀର୍ତ୍ତନ ମୁକ୍ତିର ସହଜ ଉପାୟ । ଅନ୍ୟାନ୍ୟ ସାଧନା (ଯୋଗ, ଯାଗ, ଧ୍ୟାନ ଓ ଧାରଣା) ଅଭ୍ୟାସ କରିବା କଷ୍ଟ । ମାତ୍ର ପ୍ରଭୁଙ୍କ ନାମ ଓ ଯଶର ସ୍ମରଣ ଓ ମନନ ସହଜ । ଆମେ କେବଳ ସେ ଦିଗରେ ଧ୍ୟାନ ଦେଲେ ହେଲା ।

ଏ ଯୁଗରେ ରଚିତ ବହୁ ପବିତ୍ର ଧର୍ମଗ୍ରନ୍ଥରେ ନାମସ୍ମରଣର ମହତ୍ତ୍ୱ ବର୍ଣ୍ଣିତ । ଗୋସ୍ୱାମୀ ତୁଳସୀ ଦାସ ମହାରାଜଙ୍କ ବିରଚିତ ରାମଚରିତ ମାନସର ଛତ୍ରେ ଛତ୍ରେ ରାମନାମର ମହତ୍ତ୍ୱ ପ୍ରକଟିତ । ଏଠାରେ ମାତ୍ର ଗୋଟିଏ ଘଟଣାର ଅବତାରଣା କରାଯାଇପାରେ । ଲଙ୍କାରେ ସୀତାଙ୍କୁ ଠାବ କଲାପରେ ହନୁମାନ ଲଙ୍କାପୋଡ଼ି ଶ୍ରୀରାମଙ୍କ ପାଖକୁ ଫେରିଆସିଥିଲେ । ହନୁମାନଙ୍କ ବୀରତ୍ୱପୂର୍ଣ୍ଣ କାର୍ଯ୍ୟ ଯୋଗୁଁ ସମସ୍ତେ ତାଙ୍କୁ ସାଧୁବାଦ ଜଣାଇଥିଲେ । ତଥାପି ହନୁମାନ କାହିଁକି ଲଙ୍କାପୋଡ଼ି ପରି 'ମାଙ୍କଡ଼ କାର୍ଯ୍ୟଟିଏ' କରିଦେଲେ ବୋଲି ପ୍ରଶ୍ନ ପଚାରି ହନୁ ପ୍ରତି 'କପି' ଶବ୍ଦଟି ପ୍ରୟୋଗ କରିଥିବାରୁ ହନୁମାନ ସାମାନ୍ୟ ଆହତ ହୋଇଥିଲେ । ସେ ମନଦୁଃଖରେ ଚୁପ୍‌ଚାପ୍ ଗୋଟିଏ ସ୍ଥାନରେ ବସିରହିଥିଲେ । ପ୍ରଭୁ ରାମଚନ୍ଦ୍ର ଭକ୍ତର ମନୋଭାବ ଲକ୍ଷ୍ୟକରି ଲକ୍ଷ୍ମଣଙ୍କୁ ନିର୍ଦ୍ଦେଶ ଦେଲେ ହନୁମାନଙ୍କୁ ଡାକିବା ପାଇଁ । ହନୁମାନ ଲଙ୍କାପୋଡ଼ି ପରି ଗୋଟିଏ କାଣ୍ଡ କାହିଁକି କରିବସିଲେ, ତାହା ପଚାରିବାକୁ ଲକ୍ଷ୍ମଣଙ୍କୁ ସୂଚନା ଦେଲେ ।

ହନୁମାନ ଲକ୍ଷ୍ମଣଙ୍କ ଡାକରାରେ ପ୍ରଭୁଙ୍କ ପାଖକୁ ଆସି ଲଙ୍କାପୋଡ଼ିର କାରଣ ସଂପର୍କରେ ଯେଉଁ ଉତ୍ତର ଦେଇଥିଲେ, ତାହା ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । ହନୁମାନ କହିଲେ – ''ପ୍ରଭୁ ! ଆପଣ ଅଭୟ ଦେବାରୁ ମୁଁ କହୁଛି । ଲଙ୍କା ପୋଡ଼ିବା ବ୍ୟତୀତ ମୋର ଚାରା ନଥିଲା । ସମସ୍ତେ ଜାଣିଥିବେ ଯେ ଶବଟିକୁ ବୋହି ନେଉଥିବା ସମୟରେ ସବୁଲୋକ 'ରାମନାମ ସତ୍ୟ' ବୋଲି ଉଚ୍ଚାରଣ କରନ୍ତି । ଏକମାତ୍ର ଶବ ଏ କଥା ଉଚ୍ଚାରଣ କରି ନଥାଏ । ସେହିପରି ମୁଁ ଲଙ୍କାରେ ଦେଖିଲି ଯେ

କେବଳ ମା' ସୀତା ଏବଂ ବିଭୀଷଣଙ୍କ ବ୍ୟତୀତ ଅନ୍ୟକେହି ରାମନାମ ଉଚ୍ଚାରଣ କରୁନାହାନ୍ତି । ସୁତରାଂ ଏ ସବୁ ଶବ ବ୍ୟତୀତ ଆଉ କ'ଣ ହୋଇପାରନ୍ତି ? ଶବକୁ ଦାହ କରି ତା'ର ସଂସ୍କାର କରା ନଗଲେ ସାରା ବାତାବରଣ କଳୁଷିତ ଓ ଦୁର୍ଗନ୍ଧଯୁକ୍ତ ହୋଇପଡ଼ିବ ନାହିଁକି ? ଏ ଦୃଷ୍ଟିରୁ ଲଙ୍କାକୁ ପୋଡ଼ି ଶବଦହନ କରିବା ବ୍ୟତୀତ ମୋର ବା ଅନ୍ୟ କି ଉପାୟ ଥିଲା ?''

ଏ ଉକ୍ତିର ସାରମର୍ମ ସୁସ୍ପଷ୍ଟ । ଜୀବନଧାରୀ ପ୍ରତ୍ୟେକ ବ୍ୟକ୍ତି ସଦାସର୍ବଦା ନାମସ୍ମରଣ କରୁଛି । କେବଳ ସେ ନାମସ୍ମରଣ କରୁଛି ଏବଂ କରିବା ଉଚିତ ବୋଲି ସଚେତନ ହେବା ନିତାନ୍ତ ପ୍ରୟୋଜନ ।

ଶିରିଡ଼ିର ସାଇବାବା ନାମସ୍ମରଣର ମହତ୍ତ୍ୱକୁ ଲୋକଙ୍କୁ ଶିକ୍ଷା ଦେଉଥିଲେ । ସେ ନିଜେ ସର୍ବଦା 'ଆଲ୍ଲା ମାଲିକ' ବୋଲି ଉଚ୍ଚାରଣ କରୁଥିଲେ ଏବଂ ତାଙ୍କ ନିଜ ଉପସ୍ଥିତିରେ ସାତଦିନ ଧରି ଦିବାରାତ୍ର ଭଗବାନଙ୍କ ନାମକୀର୍ତ୍ତନ କରିବାକୁ ଅନ୍ୟମାନଙ୍କୁ ପ୍ରବର୍ତ୍ତାଉଥିଲେ । ଏହାକୁ 'ନାମ ସପ୍ତାହ' କୁହାଯାଉଥିଲା ।

ଏହି ନାମସପ୍ତାହ ପାଳନ ସହିତ ସଂଶ୍ଳିଷ୍ଟ ଗୋଟିଏ ଘଟଣା ବେଶ୍ କୌତୁହଳପୂର୍ଣ୍ଣ । ଏହି ନାମସପ୍ତାହ ପାଳନ କରିବାକୁ ଥରେ ସେ ଦାସଗଣୁ ମହାରାଜଙ୍କୁ କହିଲେ । ସପ୍ତମଦିନ ଶେଷରେ ପ୍ରିୟଦେବତା ବିଠଲ୍ ଦେଖାଦେବେ ବୋଲି ବାବା ପ୍ରତିଶ୍ରୁତି ଦେଲେ । ଦାସଗଣୁ ନାମସପ୍ତାହ ପାଳନ କରିବେ ବୋଲି କହିଲେ । ବାବା ତାଙ୍କର ହାତକୁ ଛାତିରେ ଛୁଆଁଇ ପ୍ରତିଶ୍ରୁତି ଦେଲେ ଯେ ବିଠଲ ଅବଶ୍ୟ ଦେଖାଦେବେ ।

ନାମ ସପ୍ତାହ ଶେଷରେ ବିଠଲ୍ ଆବିର୍ଭୂତ ହେବାର ସୂଚନା ମିଳିଲା । କାକାସାହେବ ଦୀକ୍ଷିତ ସ୍ନାନସାରି ଧ୍ୟାନରେ ବସିଥିବା ବେଳେ ମାନସ ଚକ୍ଷୁରେ ବିଠଲ୍‌ଙ୍କ ରୂପ ଦର୍ଶନ କଲେ । ତା'ପରେ ମଧ୍ୟାହ୍ନରେ ବାବାଙ୍କ ଦର୍ଶନ ପାଇଁ ମସ୍‌ଜିଦ୍‌କୁ ଆସିବା ପରେ ବାବା ହଠାତ୍ ପଚାରିଲେ – ''ବିଠଲ୍ ପଟିଲ୍ ଆସିଥିଲେ କି ? ତୁମେ ତାଙ୍କୁ ଦେଖିଲ ତ ? ସେ ଭାରି ଚଙ୍ଗଚଙ୍ଗିଆ । ତାକୁ ଦୃଢ଼ ଭାବରେ ଧରିଥାଅ । ଟିକିଏ ଅସାବଧାନ ହେଲେ ସେ ଖସିଯିବେ ।'' ମଧ୍ୟାହ୍ନରେ ପୁଣି ଏକ ବିଠଲ୍ ଦର୍ଶନ ଘଟିଲା । ଗୋଟିଏ ଫେରିବାଲା ବିଠୋବାଙ୍କ ୨୫/୩୦ଟି ଫଟୋ ଧରି ବିକ୍ରୀ କରିବାକୁ ଆସିଲା । କାକାସାହେବ ଦୀକ୍ଷିତ ଧ୍ୟାନରେ ଦେଖିଥିବା ବିଠଲାଙ୍କ ସହିତ ଗୋଟିଏ ଫଟୋର ବେଶ୍ ମେଳ ଥିଲା । ସେ ବିସ୍ମୟାଭିଭୂତ ହୋଇପଡ଼ିଲେ । ଫଟୋଟି କିଣିନେଇ ନିଜ ପୂଜାଘରେ ସାଇତି ରଖିଲେ । ଆଗ୍ରହ ଓ ଭକ୍ତିଭାବ ସହକାରେ

କରଯାଉଥିବା ନାମସ୍ମରଣ ଯେ ଫଳହୀନ ହୁଏ ନାହିଁ, ତାହା ପ୍ରମାଣ କରିବା ପାଇଁ ସମ୍ଭବତଃ ବାବା ଏ ଘଟଣାଟିର ଦିବ୍ୟରଚନା କରିଥିଲେ ।

ବ୍ୟକ୍ତିଗତ ସ୍ତରରେ ନାମସ୍ମରଣ ଯେପରି ଉପଯୋଗୀ, ସମଷ୍ଟିଗତ ଭାବରେ ନାମସ୍ମରଣ ବା କୀର୍ତ୍ତନ ସେପରି ଉପଯୋଗୀ । ବାବା ନିଜେ ଦାସଗଣୁ ମହାରାଜାଙ୍କୁ ନାରଦୀୟ କୀର୍ତ୍ତନ ପଦ୍ଧତି ଶିକ୍ଷା ଦେଇଥିଲେ । ଭଲ ପୋଷାକ ପିନ୍ଧି ଦାସଗଣୁ ମହାରାଜ ଶିରିଡ଼ି ଗ୍ରାମ ମଧ୍ୟରୁ କୀର୍ତ୍ତନ କରି ଯିବା ପୂର୍ବରୁ ବାବାଙ୍କ ଆଶୀର୍ବାଦ ଭିକ୍ଷା କରିବାକୁ ଆସିଲେ । ବାବା ତାଙ୍କ ପୋଷାକକୁ ଚାହିଁ ଥଟ୍ଟାକରି 'ବ୍ରାଇଁପୁଅ' ପୋଷାକ କହିବାରୁ ଦାସଗଣୁ ଇଙ୍ଗିତ ବୁଝିପାରିଲେ । ସେହିଦିନଠାରୁ ଅଣ୍ଟାର ଉପରକୁ ଦେହକୁ ଫୁଙ୍ଗୁଳା କରି ହାତରେ ହଳେ ଗିନି ଓ ଗଳାରେ ଫୁଲମାଳ ପକାଇ କୀର୍ତ୍ତନ କରିବାକୁ ଗଲେ । ନାରଦ ଏହିପରି ଭାବରେ ନାମଗାନ କରୁଥିବାରୁ ଏହା ନାରଦୀୟ ପଦ୍ଧତି । କହିବା ନିଷ୍ପ୍ରୟୋଜନ ଯେ ଦାସଗଣୁ ମହାରାଜାଙ୍କ ସୁଲଳିତ କୀର୍ତ୍ତନ ବାବାଙ୍କ ନାମ ଓ ଯଶକୁ ବହୁଲୋକଙ୍କ ପାଖରେ ପହଞ୍ଚାଇ ପାରିଥିଲା ।

ନାମସ୍ମରଣକୁ ମହତ୍ତ୍ୱ ଦେବା ସଂପର୍କରେ ଆଉ ଦୁଇଟି ଘଟଣା ଉଲ୍ଲେଖଯୋଗ୍ୟ । ବାବାଙ୍କର ପରମ ଅନୁଗତ ଥିଲେ ଶ୍ୟାମ । ଶ୍ୟାମ ସହସ୍ରନାମ ପାଠ କରନ୍ତୁ ବୋଲି ବାବା ଚାହିଁଲେ । ଅବଶ୍ୟ ଶ୍ୟାମଙ୍କ ଏ ପୁସ୍ତକଟି ନଥିଲା । ମସ୍‌ଜିଦ୍‌ରେ ରାମଦାସୀ ନାମକ ବ୍ୟକ୍ତିଜଣକ ପ୍ରତ୍ୟହ ବିଷ୍ଣୁସହସ୍ର ନାମ ପାଠ କରୁଥିଲେ । ମାତ୍ର ସେ ବ୍ୟକ୍ତିଜଣକ ଭିନ୍ନ ପ୍ରକୃତିର ଥିବାରୁ ସ୍ୱଇଚ୍ଛାରେ ସେ ପୁସ୍ତକଟିର ହସ୍ତାନ୍ତର କରିବାର ସମ୍ଭାବନା ନ ଥିଲା । ସୁତରାଂ ବାବା ଏକ ନାଟକର ପରିକଳ୍ପନା କଲେ । ସେ ତାଙ୍କ ପେଟରେ ଗଭୀର ଯନ୍ତ୍ରଣା ଅନୁଭବ କରୁଛନ୍ତି କହି ରାମଦାସୀକୁ ପେଟ ପରିଷ୍କାର କରି ଔଷଧ ସୁନାମୁଖୀ ଆଣିବା ପାଇଁ ବଜାରକୁ ପଠାଇଥିଲେ । ରାମଦାସୀ ଅନୁପସ୍ଥିତ ଥିବା ସମୟରେ ଶ୍ୟାମ ଆସିଲେ । ବାବା ତାଙ୍କୁ 'ବିଷ୍ଣୁ ସହସ୍ରନାମ' ପୁସ୍ତକଟି ଦେଇ ନିୟମିତ ନାମସ୍ମରଣ କରିବା ପାଇଁ ପରାମର୍ଶ ଦେଲେ । ଶ୍ୟାମ ରାମଦାସୀର ପ୍ରକୃତି ଜାଣିଥିବାରୁ ଏବଂ ନିଜେ ସଂସ୍କୃତଭାଷାରେ ଅନଭିଜ୍ଞ ହୋଇଥିବାରୁ ପୁସ୍ତକଟି ନେବା ପାଇଁ ଅନିଚ୍ଛୁକ ଥିଲେ । ମାତ୍ର ବାବା ବାରମ୍ବାର କହିବାରୁ ସେ ନେଲେ । ରାମଦାସୀ ଫେରିବା ପରେ ବାବା ବହିଟିକୁ ଶ୍ୟାମକୁ ଦେଇଛନ୍ତି ଜାଣି ଅସମ୍ଭାଳ ହୋଇ ଉଠିଲେ । ଶ୍ୟାମକୁ ଗାଳି ଗୁଲଜ କଲେ । ମାତ୍ର ବାବା ହସ୍ତକ୍ଷେପ କରି କହିଲେ ଯେ ଦୈନନ୍ଦିନ ନାମଜପ କରିବା ସତ୍ତ୍ୱେ ରାମଦାସୀର ଆଧ୍ୟାତ୍ମିକ ବିକାଶ ଘଟି ନାହିଁ ଏବଂ ସେ ଆତ୍ମସଂଯମ ଜାଣିନାହିଁ । ଏପରି କହିବାପରେ

ରାମଦାସୀ ଶାନ୍ତ ଓ ଅନୁତପ୍ତ ହେଲେ । ସେ ଶ୍ୟାମଙ୍କଠାରୁ ପଞ୍ଚରତ୍ନ ଗୀତା ପାଇଲେ ସମାଧାନ ହୋଇଯିବ ବୋଲି କହିଲେ । ଶ୍ୟାମ ପଞ୍ଚରତ୍ନ ଗୀତା ତାଙ୍କୁ ଦେଇଥିଲେ । ସୁତରାଂ ଶ୍ୟାମଙ୍କ ବିଷ୍ଣୁସହସ୍ରନାମ ଜପ ଓ ରାମଦାସୀର ନାମଜପ ଅବ୍ୟାହତ ଓ ସୁଖପ୍ରଦ ରହିଲା ।

ଅନ୍ୟ ଏକ ସମୟରେ ବାବାଙ୍କର ଅନୁଗତ ଶ୍ରୀମତୀ ଖପର୍‌ଡ଼େ ବାବାଙ୍କୁ ଖାଦ୍ୟ ଦେବାପରେ ବାବା ଭୋଜନ କରିସାରି ପରମ ତୃପ୍ତି ପ୍ରକାଶ କଲେ । ତା'ପରେ ସମବେତ ଅନ୍ୟାନ୍ୟ ଭକ୍ତମାନେ ଦେଖିଲେ ଯେ ବାବା ଶ୍ରୀମତୀ ଖପର୍‌ଡ଼େଙ୍କ ପାଖକୁ ଘୁଞ୍ଚିଯାଇଛନ୍ତି । ଅନ୍ୟମାନଙ୍କ ପାଇଁ ଦୃଶ୍ୟଟି କିଛିମାତ୍ରାରେ ଦୃଷ୍ଟିକଟୁ ଥିଲା । ମାତ୍ର ପରେ ଜଣାଗଲା ଯେ ବାବା ଶ୍ରୀମତୀ ଖପର୍‌ଡ଼େଙ୍କ ଖୁବ୍ ପାଖକୁ ଲାଗିଆସି ତାଙ୍କ କାନରେ 'ରାଜରାମ' କହି ଏହା ଜପ କରିବାକୁ ପରାମର୍ଶ ଦେଉଥିଲେ । ଏହା ପ୍ରକୃତରେ ବାବାଙ୍କର ଭକ୍ତବତ୍ସଳତାର ନିଦର୍ଶନ । କାରଣ ପରବର୍ତ୍ତୀ ସମୟରେ ଶ୍ରୀମତୀ ଖପର୍‌ଡ଼େ କେତେକ ଖରାପ ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ । କହିବା ନିଷ୍ପ୍ରୟୋଜନ ଯେ ଶ୍ରୀମତୀ ଖପର୍‌ଡ଼େଙ୍କ 'ରାଜାରାମ' 'ରାଜାରାମ' ସ୍ମରଣ ତାଙ୍କୁ ବହୁ ଦୁର୍ଗତିରୁ ରକ୍ଷା କରିଥିଲା ।

ଉପର ଦୁଇଟି ଉଦାହରଣରୁ ସ୍ପଷ୍ଟ ସୂଚନା ମିଳେ ଯେ ଆତ୍ମିକ ବିକାଶ ତଥା ସୁରକ୍ଷା ପାଇଁ ସାଇବାବା ନାମସ୍ମରଣ କରିବା ପାଇଁ ପ୍ରୋତ୍ସାହନ ଦେଉଥିଲେ । ସକଳ କର୍ମବ୍ୟସ୍ତତା ମଧ୍ୟରେ ଏହା ଅବ୍ୟାହତ ରଖିବାରେ ବିଶେଷ ଅସୁବିଧା ନ ଥିବାରୁ ଏହା ବହୁଲୋକଙ୍କ ପାଇଁ ସହଜ ସୁଗମ ପନ୍ଥାର ରୂପ ନେଉଥିଲା ।

## ନାମସ୍ମରଣ ଶକ୍ତି ଓ ମହତ୍ତ୍ୱ –

ନାମସ୍ମରଣର ତାତ୍ପର୍ଯ୍ୟ ଏହାର ଶକ୍ତି ଓ ମହତ୍ତ୍ୱରେ ପ୍ରତିଫଳିତ । ଦିବ୍ୟନାମ ସବୁ ଦିବ୍ୟଶକ୍ତି ସହିତ ସଂଯୁକ୍ତ ହୋଇଥିବାରୁ ଏହା ଅପୂର୍ବ ଶକ୍ତି ଆହରଣ କରିଥାଏ । ମନୁଷ୍ୟର ସଦ୍‌ଗୁଣସବୁ ଉପକାରୀ ଦୁଗ୍ଧ-ପ୍ରଦାନକାରୀ ଗାଈ ସଦୃଶ । ମାତ୍ର ଇନ୍ଦ୍ରିୟ-ରୂପକ ବ୍ୟାଘ୍ର ଏହାକୁ ଆକ୍ରମଣ କରି କ୍ଷତବିକ୍ଷତ କରେ । କିନ୍ତୁ ଭଗବାନଙ୍କ ନାମ ସ୍ମରଣ ଯେଉଁ ଦୁର୍ଭେଦ୍ୟ ଦୁର୍ଗ ଓ ପ୍ରାଚୀର ସୃଷ୍ଟି କରେ ତା'ପରେ ଇନ୍ଦ୍ରିୟମାନଙ୍କର ଆକ୍ରମଣ ସଦା ନିଷ୍ଫଳ ହୁଏ । ନାମସ୍ମରଣକାରୀ ମନୁଷ୍ୟର କ୍ଷତିହୁଏ ନାହିଁ କି ତା'ର ସଦ୍‌ଗୁଣ ନଷ୍ଟ ହୁଏ ନାହିଁ ।

ନାମସ୍ମରଣ ଫଳରେ ଚିତ୍ତଶୁଦ୍ଧି ସମ୍ଭବ ହୁଏ, ଜଗତର ଜୀବନଯାତ୍ରା ମଧ୍ୟରେ ବହୁ କଳୁଷିତ ଭାବନା ମନକୁ ଆଚ୍ଛନ୍ନ କରେ । ମାତ୍ର ବାରମ୍ବାର ନାମସ୍ମରଣ କରିବା

ଫଳରେ ମନର ପାତ୍ରଟି ସଦାସର୍ବଦା ପରିଷ୍କାର ହେବାର ଲାଗିଥାଏ । ଏ ଦୃଷ୍ଟିରୁ ନାମସ୍ମରଣକୁ 'ଚିତ୍ତଶୁଦ୍ଧି ଯୋଗ'ର ମର୍ଯ୍ୟାଦା ଦିଆଯାଇପାରେ ।

ନାମସ୍ମରଣ ମନୁଷ୍ୟ ମନର ଅଜ୍ଞତା ନାଶକରେ । ବ୍ୟକ୍ତି ଓ ଶକ୍ତି ମଧ୍ୟରୁ ମାୟା ଏକ ପରଦା ସୃଷ୍ଟିକରି ବ୍ୟକ୍ତିକୁ ବିଶ୍ୱଜାଗତିକ ଶକ୍ତିଙ୍କଠାରୁ ପୃଥକ୍ ରଖିଥାଏ । ନାମସ୍ମରଣର ପୁନରାବୃତ୍ତି ଫଳରେ ଏହି ପରଦା ଦୂରେଇଯାଏ ଏବଂ ବ୍ୟକ୍ତି ଶକ୍ତି ସହିତ ସମ୍ମିଳିତ ହୁଏ । ଗୋସ୍ୱାମୀ ତୁଳସୀଦାସ ଥରେ କହିଥିଲେ – ''ଘର ଭିତରକୁ ଆଲୋକିତ କରିବାକୁ ହେଲେ ଦୀପଟି ଘର ମଧ୍ୟରେ ରଖିବାକୁ ହେବ । ଘରର ବାହାର ଆଲୋକିତ କରିବାକୁ ହେଲେ ଦୀପଟି ଘର ବାହାରେ ରଖିବାକୁ ହେବ । ମାତ୍ର ଘରର ଭିତର ଓ ବାହାର ଆଲୋକିତ କରିବାକୁ ହେଲେ ଦୀପଟି ଦ୍ୱାରଦେଶରେ ରଖିବାକୁ ହେବ । ସେହିପରି ଜିଭ ହେଉଛି ବ୍ୟକ୍ତିତ୍ୱର ଦ୍ୱାରଦେଶ । ଏହି ଜିଭରେ ବିଷ୍ଣୁନାମ ସ୍ଥାପନ କଲେ ତାହା ଅନ୍ତର୍ଜଗତ ଓ ବହିର୍ଜଗତକୁ ଆଲୋକିତ କରିବ ।'' ଏ କଥାଟି ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ, ଜିହ୍ୱାରେ ନୃତ୍ୟାୟିତ ବିଷ୍ଣୁନାମ କେବଳ ମନପ୍ରାଣ ଓ ହୃଦୟରେ ଶାନ୍ତି ଓ ଆନନ୍ଦ ଆଣେ ନାହିଁ, ନାମସ୍ମରଣର ମଧୁରତା ସାମାଜିକ ପରିବେଶକୁ ମଧ୍ୟ ପବିତ୍ର କରେ ।

ବିଷ୍ଣୁକୃପା ଲାଭ ପାଇଁ ନାମସ୍ମରଣ ଏକ ସୁନ୍ଦର ମାଧ୍ୟମ । ଏଥିପାଇଁ ନିର୍ଦ୍ଦିଷ୍ଟ ସମୟ ଓ ସ୍ଥାନର ମଧ୍ୟ ଆବଶ୍ୟକତା ନାହିଁ । ଯେ କୌଣସି ମୁହୂର୍ତ୍ତରେ ଯେ କୌଣସି ସ୍ଥାନରେ ନାମ ସ୍ମରଣ କରାଯାଇ ପାରିବ ।

ନାମସ୍ମରଣର ଶକ୍ତି ଓ ମହତ୍ତ୍ୱ ନାମଦେବ ଓ ଜ୍ଞାନଦେବଙ୍କ ଜୀବନର ଏକ ଘଟଣାରେ ସୁସ୍ପଷ୍ଟ । ନାମଦେବ ଓ ଜ୍ଞାନଦେବ ମହାରାଷ୍ଟ୍ରର ପ୍ରଖ୍ୟାତ ସନ୍ଥଦ୍ୱୟ । ନାମଦେବ ଛୋଟଭାଇ ଓ ଜ୍ଞାନଦେବ ବଡ଼ଭାଇ । ନାମଦେବ 'ନାମ' ବା ଭକ୍ତିର ସ୍ୱରୂପ ଥିବା ସ୍ଥଳେ ଜ୍ଞାନଦେବ 'ଜ୍ଞାନ'ର ପ୍ରତୀକ ଥିଲେ । ଏକଦା ସେମାନେ ଭ୍ରମଣ କରୁଥିବା ସମୟରେ ଦୁଇଜଣ ଭାଇ ତୃଷାର୍ତ୍ତ ହୋଇପଡ଼ିଲେ । ନିକଟରେ ଜନବସତି ନ ଥିଲା । ସେମାନେ ବେଶ୍ କିଛିଦୂର ଅଗ୍ରସର ହେବାପରେ ଗୋଟିଏ କୂପ ଦୃଷ୍ଟିଗୋଚର ହେଲା । ମାତ୍ର କୂପଟିରୁ ଜଳନିଷ୍କାସନ କରିବାର କୌଣସି ଉପାୟ ନଥିଲା । ଦୁଇଭାଇ ତୃଷାର୍ତ୍ତ ଅବସ୍ଥାରେ କୂପ ନିକଟକୁ ଆସିଲେ । ଜଳପାନ କରି ତୃଷା ନିବାରଣ କରିବାକୁ ହେବ । ସୁତରାଂ ନାମଦେବଙ୍କ ଅନୁରୋଧ କ୍ରମେ ଜ୍ଞାନଦେବ ପ୍ରଥମେ ତାଙ୍କର ଶକ୍ତି ପ୍ରୟୋଗ କଲେ । ନିଜର ଜ୍ଞାନବଳରେ ସେ ସୂକ୍ଷ୍ମରୂପ ଧରି କୂପ ମଧ୍ୟକୁ ପ୍ରବେଶ କଲେ ଏବଂ ଜଳପାନ କରି ପ୍ରକୃତିସ୍ଥ ହେଲେ ।

ଜ୍ଞାନଦେବ ବର୍ତ୍ତମାନ ନାମଦେବଙ୍କୁ ଇଙ୍ଗିତ ଦେଲେ ନିଜର ଶକ୍ତିବଳରେ ପିପାସା ମେଣ୍ଟାଇବା ପାଇଁ । ନାମଦେବ ଦୁଇହସ୍ତ ଯୋଡ଼ି ଈଶ୍ୱରଙ୍କୁ ସ୍ମରଣ କଲେ । ବିଷ୍ଣୁନାମ ସ୍ମରଣ ଓ ଭକ୍ତିବଳରେ କୂପଜଳ ଉପରକୁ ଉଠିଆସିଲା । ଏହା ନାମଦେବଙ୍କୁ ଜଳପାନର ସୁଯୋଗ ଦେବା ସଂଗେ ସଂଗେ କୂପ ସନ୍ନିକଟସ୍ଥ ରୁକ୍ଷଶୁଷ୍କ ଦୁର୍ବାଦଳ ଓ ତୃଣରାଜିକୁ ମଧ୍ୟ ଜଳସିକ୍ତ କଲା । ଏପରି ଦୃଶ୍ୟଦେଖି ଜ୍ଞାନଦେବ ଆନନ୍ଦରେ ବିହ୍ୱଳିତ ହୋଉ ଉଠିଲେ । ସେ ନାମଦେବଙ୍କୁ କହିଲେ – ''ମୋର ଜ୍ଞାନବଳରେ ମୋର ପିପାସା ମେଣ୍ଟିଲା ସତ । ମାତ୍ର ତୁମର ଭକ୍ତି ଓ ନାମସ୍ମରଣର ଫଳ ଅନିର୍ବଚନୀୟ । ଏହା କେବଳ ତୁମକୁ ଜଳପାନର ସୁଯୋଗ ଦେଇ ତୁମର ତୃଷ୍ଣା ନିବାରଣ କରିନାହିଁ, ତୁମର ଭକ୍ତି ଫଳରେ ବୃକ୍ଷଲତା ଓ ଅନ୍ୟାନ୍ୟ କ୍ଷୁଦ୍ର ଜୀବସବୁ ଉପକୃତ ହୋଇଛନ୍ତି । ରୁକ୍ଷଶୁଷ୍କ ଭୂମି ଜଳସିକ୍ତ ହୋଇଛି, ତରୁଲତା ପଲ୍ଲବିତ ହେବାର ସୁଯୋଗ ପାଇଛନ୍ତି । ତୁମର ସାଧନା ପ୍ରକୃତରେ ମହତ୍ତର ।'' ଏହା କହିସାରିବା ପରେ ନାମଦେବ ବୟସରେ ଛୋଟ ହୋଇଥିଲେ ମଧ୍ୟ ଜ୍ଞାନଦେବ ତାଙ୍କୁ ଗୁରୁ ରୂପେ ଗ୍ରହଣ କରିଛନ୍ତି । ଏହି ଘଟଣା ନାମ ଓ ଭକ୍ତିର ମହତ୍ତ୍ୱକୁ ସୁନ୍ଦର ଭାବେ ପ୍ରକଟିତ କରିଥାଏ ।

## ରୂପ, ଅର୍ଥ ଓ ଭାବ –

ନାମସ୍ମରଣ ସହିତ ରୂପ, ଅର୍ଥ ଓ ଭାବ ଗଭୀର ଭାବେ ସଂଶ୍ଳିଷ୍ଟ । ପ୍ରତ୍ୟେକ ଦିବ୍ୟନାମ ସହିତ ଦିବ୍ୟରୂପ ଜଡ଼ିତ । ସାଇବାବା କୌଣସି ନିର୍ଦ୍ଦିଷ୍ଟ ନାମ ବା ରୂପକୁ ଗୁରୁତ୍ୱ ଦେଇ ଅନ୍ୟସବୁକୁ ଗୌଣ କରୁ ନଥିଲେ । ବ୍ୟକ୍ତିର ଅତୀତ ଅନୁଭୂତି, ରୁଚି ଓ ପରିପ୍ରେକ୍ଷୀକୁ ଚାହିଁ ଯେଉଁ ନାମଟି ଭଗବାନଙ୍କ ସହିତ ସଂଯୋଗ ସ୍ଥାପନରେ ସହାୟକ ହେବ, ସେପରି ନାମସ୍ମରଣ ପାଇଁ ବ୍ୟକ୍ତିକୁ ପରାମର୍ଶ ଦେଉଥିଲେ । ଯେଉଁ ଦିବ୍ୟନାମର ସ୍ମରଣ କଲେ ମଧ୍ୟ ଭାବନା ଓ ବିଶ୍ୱାସର ଦୃଢ଼ତା ଅନୁଯାୟୀ ସେ ସେହି ରୂପରେ ଭକ୍ତକୁ ଦେଖା ଦେଉଥିଲେ । ସାଇ ସତ୍‌ଚରିତରେ ଗୋଟିଏ ଘଟଣାର ମନୋଜ୍ଞ ବର୍ଣ୍ଣନା ଏହି ନାମ ଓ ରୂପର ବ୍ୟାପକତା ସଂପର୍କରେ ସୂଚନା ଦିଏ ।

୧୯୧୬ ମସିହାରେ ଏକ ମାନ୍ଦ୍ରାଜୀ ଭଜନଦଳ ତାଙ୍କର ଭ୍ରମଣ ପର୍ଯ୍ୟାୟରେ ଶିରିଡ଼ି ଆସିଲେ । ଏହି ଦଳର ଗୀତ ଭଜନ ଶିରିଡ଼ିର ଲୋକମାନଙ୍କୁ ମୁଗ୍ଧ କରିଥିଲା । ଏହି ଦଳର ମୁଖ୍ୟ ନାୟିକା ବା କର୍ତ୍ତୀ ଭଲ ସ୍ୱଭାବର ମହିଳା ଥିଲେ ଏବଂ ବାବାଙ୍କ ପ୍ରତି ତାଙ୍କର ଗଭୀର ସ୍ନେହ ଶ୍ରଦ୍ଧା ଥିଲା । ଦିନେ ମଧ୍ୟାହ୍ନ ଆରତି ହେଉଥିବା ସମୟରେ ବାବା ତାଙ୍କ ଭକ୍ତିରେ ମୁଗ୍ଧ ହୋଇ ତାଙ୍କର ଇଷ୍ଟଦେବ ରୂପେ ତାଙ୍କୁ ଦର୍ଶନ ଦେଲେ ।

ବାବା 'ସୀତାନାଥ' (ରାମ) ଭାବରେ ଦେଖାଦେଉଥିବା ସ୍ଥଳେ ଅନ୍ୟମାନଙ୍କୁ ସାଇନାଥ ରୂପେ ଦୃଶ୍ୟ ହୋଇଥିଲେ । ତାଙ୍କର ପ୍ରିୟ ପ୍ରଭୁଙ୍କୁ ଦର୍ଶନ କରି ମହିଳାଜଣକ ବିମୁଗ୍ଧ ହୋଇପଡ଼ିଲେ । ତାଙ୍କ ଚକ୍ଷୁରେ ଆନନ୍ଦାଶ୍ରୁ ଭରିଗଲା ଏବଂ ସେ କରତାଳି ଦେଇ ନାଚିବାକୁ ଆରମ୍ଭ କଲେ । ତାଙ୍କର ଏପରି ବ୍ୟବହାର ଅନ୍ୟମାନଙ୍କୁ ବିସ୍ମୟରେ ପକାଇଲେ ମଧ୍ୟ ତାଙ୍କ ପାଇଁ ଏହା ବାସ୍ତବ ଥିଲା ।

ପରେ ଏହି ଧର୍ମପ୍ରାଣା ମହିଳା ନିଜର ସ୍ୱାମୀକୁ ଶ୍ରୀରାମ ଦର୍ଶନ ବିଷୟରେ କହିବାରୁ ତାଙ୍କର ସ୍ୱାମୀ ବିଶ୍ୱାସ କଲେ ନାହିଁ । ମହିଳା ଜଣକ ସରଳ ଏବଂ ଭାବାପ୍ଲୁତ ହୋଇପଡ଼ିଥିବାରୁ ତାଙ୍କର ଏପରି ମାନସିକ ବିକାର ଘଟିଛି ବୋଲ ତାଙ୍କ ସ୍ୱାମୀ ମତବ୍ୟକ୍ତ କଲେ । କିନ୍ତୁ ପରେ ପରେ ଏକ ବିଚିତ୍ର ଘଟଣା ଘଟିଲା । ବ୍ୟକ୍ତି ଜଣକ ଏକ ଅଦ୍‌ଭୁତ ସ୍ୱପ୍ନ ଦେଖିଲେ । ସେ ସ୍ୱପ୍ନରେ ବନ୍ଦୀ ହୋଇ କାରାଗୃହରେ ରହିଥିବାର ଦୁଃଖଦ ଘଟଣା ଦେଖିଲେ । ସେହି ସ୍ୱପ୍ନ ଅବସ୍ଥାରେ ନିଜର ଦୟନୀୟ ଅବସ୍ଥାରୁ ତ୍ରାହି ପାଇବା ପାଇଁ ବାବାଙ୍କୁ ସ୍ମରଣ କରି ସେ ଦେଖିଲେ ଯେ ସେ କାରାମୁକ୍ତ ହୋଇଛନ୍ତି । ଅଧିକ ଆଶ୍ଚର୍ଯ୍ୟର ବିଷୟ ଯେ ଭଦ୍ରବ୍ୟକ୍ତି ଜଣକ ପୁନଶ୍ଚ ଗୁରୁଙ୍କୁ ଦେଖିବାର ଅଭିଳାଷ ବ୍ୟକ୍ତକରି ସ୍ୱପ୍ନରେ ନିଜର ଗୁରୁ ରାମଦାସଙ୍କୁ ଦେଖିଲେ । ସ୍ୱପ୍ନ ଭଙ୍ଗ ହେବାପରେ ବାବାଙ୍କ ମହିମା ସଂପର୍କରେ ତାଙ୍କର କୌଣସି ସନ୍ଦେହ ରହିଲା ନାହିଁ । ଅନୁଗତ ଭକ୍ତ ନିଜର ବିଶ୍ୱାସର ଦୃଢ଼ତା ନେଇ ଯେଉଁ ରୂପକୁ ପ୍ରାର୍ଥନା କଲେ ମଧ୍ୟ ବାବା ଅଭିଳାଷ ପୂରଣ କରିବେ ବୋଲି ପ୍ରମାଣ ମିଳିଲା ।

ସେହିପରି ମେଘାଙ୍କ ଜୀବନରେ ମଧ୍ୟ ବିସ୍ମୟକର ଘଟଣାଟିଏ ଘଟିଲା । ରାଓ ବାହାଦୂର ଏଚ୍.ଭି. ସାଠେଙ୍କ ଘରେ ଏହି ଅପାଠୁଆ ବ୍ରାହ୍ମଣ ପାଚକ ହିସାବରେ କାର୍ଯ୍ୟ କରୁଥିଲେ । ସେ ଶିବଭକ୍ତ ଥିଲେ ଏବଂ ସଦାସର୍ବଦା 'ନମଃ ଶିବାୟ' ଜପ କରୁଥିଲେ । ଶିରିଡ଼ି ସାଇବାବା ଶିବଙ୍କ ଅବତାର ବୋଲି ସାଠେ ମହାଶୟ ତାଙ୍କୁ କହିଲେ ଏବଂ ସେ ଶିରିଡ଼ି ଯିବାପାଇଁ ପ୍ରବର୍ତ୍ତଇଲେ । ସେ ଶିରିଡ଼ି ଅଭିମୁଖେ ଅଗ୍ରସର ହୋଇ ନିକଟବର୍ତ୍ତୀ ଗ୍ରାମରେ ଶିରିଡ଼ି ବାବା ଜଣେ ମୁସଲମାନ୍ ବୋଲି ଶୁଣିବାକୁ ପାଇ ବାବାଙ୍କ ପାଖକୁ ଆସିବାକୁ ଦ୍ୱିଧା ପ୍ରକାଶ କଲେ । ତଥାପି ସାଠେଙ୍କ ପ୍ରରୋଚନାରେ ବାବାଙ୍କ ପାଖେ ପହଞ୍ଚିବା ପରେ ଜଣେ ମୁସଲମାନ୍‌ଙ୍କୁ ଦେଖା କରିବାକୁ ମେଘା କାହିଁକି ଆସିଛି ବୋଲି ବାବା ପଚାରିବା ମାତ୍ରେ ମେଘାର ଭାବାନ୍ତର ଆସିଲା । ବାବା ଅନ୍ତର୍ଯ୍ୟାମୀ ବୋଲି ମେଘା ଅନୁଭବ କଲେ ।

ଧୀରେ ଧୀରେ ମେଘାଙ୍କର ପରିବର୍ତ୍ତନ ଘଟିଥିଲା । ସେ ସାଇବାବାଙ୍କୁ ଶିବ ରୂପେ ପୂଜା କରୁଥିଲେ । ଶିବ ବେଲପତ୍ର ପ୍ରିୟ ହୋଇଥିବାରୁ ମେଘା ଦୂର ଦୂରାନ୍ତ ବୁଲି ବେଲପତ୍ର ସଂଗ୍ରହ କରୁଥିଲେ ଏବଂ ବେଲପତ୍ରରେ ପୂଜା କରୁଥିଲେ । ଏକଦା ମକର ସଂକ୍ରାନ୍ତି ଦିନ ମେଘା ବାବାଙ୍କୁ ପବିତ୍ର ଗଙ୍ଗାଜଳରେ ସ୍ନାନ କରାଇବାକୁ ଇଚ୍ଛା କଲେ । ସେ ଆଠକୋଶ ଦୂରରୁ ଗୋମତୀ ନଦୀର ଜଳ ଆଣିଲେ । ଶିବ ଗଙ୍ଗାଜଳରେ ସ୍ନାନ କରିବାକୁ ଭଲ ପାଆନ୍ତି ବୋଲି ମେଘା ଆଣିଥିବା ଜଳ ବାବାଙ୍କ ଉପରେ ଢାଳିବାକୁ ଲାଗିଲେ । ମସ୍ତକରେ ଜଳପଡ଼ିଲେ ସମଗ୍ର ଶରୀରଟି ସ୍ନାନ କରାହେଲା ବୋଲି ଧରାଯିବ କହି ବାବା ମୁଣ୍ଡ ଦେଖାଇଲେ । ଭାବବିହ୍ୱଳିତ ମେଘା ବାବାଙ୍କ ସମଗ୍ର ଶରୀର ଉପରେ ଗୋମତୀ ନଦୀଜଳ ଢାଳିବାକୁ ଲାଗିଲେ । ମେଘା ତନ୍ମୟଭାବରେ ''ହର ହର ଗଙ୍ଗେ'' ବୋଲି ଉଚ୍ଚାରଣ କରୁଥିଲେ । ଜଳପାତ୍ରଟି ଖାଲିହେବା ପରେ ମେଘା ବାବାଙ୍କୁ ଚାହିଁଲେ । ବାବାଙ୍କ ମସ୍ତକ ବ୍ୟତୀତ ଶରୀର ଶୁଖିଲା ଦେଖିଲେ । ମେଘାଙ୍କ ବିସ୍ମୟର ସୀମା ରହିଲା ନାହିଁ ।

ବ୍ୟକ୍ତିଗତ ଭାବରେ ନାମସ୍ମରଣ ହେଉ ବା ସମଷ୍ଟିଗତ ଭାବରେ ସଂକୀର୍ତ୍ତନ ହେଉ, ବିଷ୍ଣୁନାମ ସ୍ମରଣ ଚାରୋଟି ରୂପରେଖ ଗ୍ରହଣ କରିପାରେ : ନାମସ୍ମରଣ, ଗୁଣ ସ୍ମରଣ, ଲୀଳାସ୍ମରଣ ଓ ଭାବସ୍ମରଣ । ରାମ, କୃଷ୍ଣ, ଶିବ, ଦୁର୍ଗା ପ୍ରଭୃତି କେବଳ ଦିବ୍ୟ ନାମର ସ୍ମରଣ କରାଯାଇପାରେ । ଭଗବାନ ଯେଉଁସବୁ ଦିବ୍ୟଗୁଣରେ ବିଭୂଷିତ ସେସବୁ ଗୁଣର ମଧ୍ୟ ସ୍ମରଣ କରାଯାଇପାରେ । ବିଭିନ୍ନ ଯୁଗରେ ଅବତାର ଗ୍ରହଣ କରି ଭଗବାନ ଯେଉଁସବୁ ଲୀଳା ରଚନା କରି ଯାଇଛନ୍ତି, ସେସବୁ ଦିବ୍ୟଲୀଳାର ମଧ୍ୟ ସ୍ମରଣ କରାଯାଇପାରେ । ଭଗବାନଙ୍କର ନାମସ୍ମରଣ ଭାବାଶ୍ରୟୀ ହୋଇପାରେ । ଭୀଷ୍ମଙ୍କ ପରି ଶାନ୍ତଭାବ ନେଇ ଭଗବାନଙ୍କୁ ସ୍ମରଣ କରିବା କିମ୍ବା ହନୁମାନଙ୍କ ପରି ଦାସ ଭାବ ନେଇ ବିଷ୍ଣୁନାମର ସ୍ମରଣ କରାଯାଇପାରେ । ଯଶୋଦାଙ୍କ ପରି ବାତ୍ସଲ୍ୟ ଭାବରେ, ଅଥବା ଅର୍ଜ୍ଜୁନଙ୍କ ପରି ସଖା ଭାବରେ ମଧ୍ୟ ନାମ ସ୍ମରଣ କରାଯାଇପାରେ । ଗୋପୀମାନଙ୍କ ପରି ଅନୁରାଗ ଭାବ ଅଥବା ରାଧାଙ୍କ ପରି ମଧୁର ଭାବ ନାମସ୍ମରଣକୁ ଶକ୍ତିଶାଳୀ କରେ ।

ନାମସ୍ମରଣ କରିବା ସମୟରେ ଯେଉଁ ନାମ ଓ ରୂପକୁ ମାଧ୍ୟମ କରାଯାଉନା କାହିଁକି, ସେ ନାମର ଅର୍ଥ ଓ ତାତ୍ପର୍ଯ୍ୟକୁ ଚେତନା ମଧ୍ୟକୁ ଆଣିବା ଫଳରେ ନାମସ୍ମରଣର ପ୍ରଭାବ ଗଭୀର ହୁଏ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ 'ଗୋପାଳ' ଶବ୍ଦଟି ସ୍ମରଣ କରିବା ସମୟରେ 'ଗୋ'ର ଅର୍ଥ 'ଇନ୍ଦ୍ରିୟ' ଓ 'ପାଳ'ର

ଅର୍ଥ ପାଳନକର୍ତ୍ତାଙ୍କ ନିୟନ୍ତ୍ରଣ ଚିନ୍ତାକରି ପ୍ରଭୁଙ୍କୁ ଇନ୍ଦ୍ରିୟସବୁର ନିୟନ୍ତକ ରୂପେ ଚିନ୍ତା କରାଯାଇପାରେ । ସେହିପରି 'ମାନବ' ଶବ୍ଦ ଚିନ୍ତା କଲାମାତ୍ରେ 'ମାୟା'ର 'ଧବ' ବା ସ୍ୱାମୀ ରୂପେ ଭାବନା କରି ଈଶ୍ୱରଙ୍କୁ ମାୟାର ନିୟନ୍ତ୍ରକ ରୂପେ ଚିନ୍ତା କରାଯାଇଥାଏ । 'ଶିବ' ଚିନ୍ତା କଲାବେଳେ ଶୁଦ୍ଧ ଓ ମଙ୍ଗଳକାରୀ ଚୈତନ୍ୟର ଚିନ୍ତା କରାଯାଏ । 'ବିଷ୍ଣୁ' ଶବ୍ଦର ତାତ୍ପର୍ଯ୍ୟ ସର୍ବବ୍ୟାପକ । ସୁତରାଂ ଭଗବାନଙ୍କୁ ସେପରି କଳ୍ପନା କରାଯାଏ ।

'ରାମ' ଶବ୍ଦକୁ 'ରା' 'ଆ' ଓ 'ମ'ର ସମାହାର କଳ୍ପନା କରାଯାଇ ସୁନ୍ଦର ସାତ୍ତ୍ୱିକ ଚିନ୍ତା ଅଣାଯାଇପାରେ । 'ରା' ହେଉଛି ଅଗ୍ନିର ସୂଚକ । ସୁତରାଂ ଅଗ୍ନିପରି ଏହା ପାପ ବିନାଶକାରୀ । 'ଆ' ହେଉଛି ସୂର୍ଯ୍ୟର ସୂଚକ, ସୁତରାଂ ଅଜ୍ଞାନ ଅନ୍ଧକାର ନାଶକାରୀ ଆଲୋକ । 'ମ' ହେଉଛି ଚନ୍ଦ୍ରର ସୂଚକ ସୁତରାଂ ପାପତାପ ଦୂରେଇ ଶୀତଳତା ପ୍ରଦାନକାରୀ ଶକ୍ତି । ଏ ଦୃଷ୍ଟିରୁ 'ରାମ' ଶବ୍ଦଟି ପାପ ନଷ୍ଟକାରୀ, ଅଜ୍ଞାନତା ବିଧ୍ୱଂସୀ ଓ ମାନସିକ ଶୀତଳତା ପ୍ରଦାନକାରୀ ଶକ୍ତି । ବେଦାନ୍ତ ବ୍ୟାଖ୍ୟା କରୁଥିବା ପଣ୍ଡିତମାନେ 'ରା' କୁ 'ତତ୍' ବା 'ବ୍ରହ୍ମ'ଙ୍କ ସହିତ ଏବଂ 'ମ'କୁ 'ତ୍ୱମ୍' ବା 'ଜୀବ' ସହିତ ସମାନ କରି 'ରାମ' ଶବ୍ଦର ଅର୍ଥ 'ତତ୍ ତ୍ୱମ୍' ବା ଜୀବ ବ୍ରହ୍ମର ସମ୍ମୀଳନ ବୋଲି ଗ୍ରହଣ କରନ୍ତି । ମୋଟ ଉପରେ ନାମସ୍ମରଣ ସମୟରେ ତତ୍ ସଂଲଗ୍ନ ଅର୍ଥ ବା ଭଗବାନଙ୍କଠାରେ ଲୀନ ହେବାର ଉଦ୍ୟମ ଓ ମନନଶୀଳତା ନାମସ୍ମରଣକୁ ଉତ୍ତୁଙ୍ଗ ଶିଖରକୁ ନେଇଯାଏ । ଯନ୍ତ୍ରବତ୍ ଆରମ୍ଭ କରାଯାଇଥିବା ନାମସ୍ମରଣ ଏକ ପ୍ରଭାବଶାଳୀ ସାଧନା ରୂପେ ବ୍ୟକ୍ତିକୁ ମୁକ୍ତି ପଥରେ ନେଇଯାଏ ।

ନାମସ୍ମରଣ କେବଳ ଜିଭର ବ୍ୟବହାର ମଧ୍ୟରେ ସୀମିତ ରହିବା କଥା ନୁହେଁ । ଭଗବାନଙ୍କ ନାମ ସ୍ମରଣ ପାଇଁ ବ୍ୟାକୁଳତା ହୃଦୟର ଗଭୀରତମ ପ୍ରଦେଶରୁ ଆସିଲେ ଏବଂ ଏହା ପ୍ରେମଭାବସିକ୍ତ ହେଲେ ତାହା ନିଶ୍ଚିତଭାବରେ ଦିବ୍ୟତ୍ୱପ୍ରାପ୍ତି ଆଣି ଦେଇଥାଏ । ରାମକୃଷ୍ଣ ପରମହଂସ ଏହାର ନିଛକ ଉଦାହରଣ ।



# ବାକ୍‌ସଂଯମ : କାହିଁକି ଓ କିପରି

ଆତ୍ମସଂଯମ ଆମ ସାଧନାର ଏକ ବିଶେଷ ମାର୍ଗ ହେଲେ ବାକ୍ ସଂଯମ ହେଉଛି ଆତ୍ମସଂଯମର ଏକ ମୁଖ୍ୟ ବିଭାବ । ମନୁଷ୍ୟ ପ୍ରାର୍ଥନା, ଧ୍ୟାନ, ଧାରଣା ଓ ଅନ୍ୟାନ୍ୟ ଯୋଗ ସାଧନା ମାଧ୍ୟମରେ ପରମାତ୍ମାଙ୍କ ସହ ସଂଯୋଗ ସ୍ଥାପନ କରେ ଏବଂ ଆଧ୍ୟାତ୍ମିକ ଶକ୍ତି ଆହରଣ କରେ । ଏହି ଆଧ୍ୟାତ୍ମିକ ଶକ୍ତି ଆହରଣ କରିବା ଯେପରି ଗୁରୁତ୍ୱପୂର୍ଣ୍ଣ, ଶକ୍ତିକୁ ନିଜ ମଧ୍ୟରେ ଅକ୍ଷୁର୍ଣ୍ଣ ରଖି ତାହାର ବିକାଶ ଘଟାଇବା ମଧ୍ୟ ସେହିପରି ତାତ୍ପର୍ଯ୍ୟପୂର୍ଣ୍ଣ । ସ୍ୱତନ୍ତ୍ରଭାବରେ ଯତ୍ନଶୀଳ ନ ହେଲେ ଆହରଣ କରାଯାଇଥିବା ଶକ୍ତିର ଅପଚୟ ମଧ୍ୟ ଘଟିପାରେ । ବାକ୍‌ସଂଯମର ଅଭାବ ବହୁ ସମୟରେ ଶକ୍ତିକୁ ହ୍ରାସ କରିଥାଏ ।

ବାକ୍‌ସଂଯମର ଅଭାବ ବିଭିନ୍ନ ପ୍ରକାରେ ପ୍ରକାଶ ପାଉଥିଲେ ମଧ୍ୟ ରୁକ୍ଷ କର୍କଶ ଭାଷାରେ କଥାବାର୍ତ୍ତା କରିବା ଏବଂ ଅନ୍ୟର କୁତ୍ସା ରଟନା କରିବା ପରି ବ୍ୟବହାରରେ ସଂଯମହୀନତାର ସ୍ପଷ୍ଟ ପରିପ୍ରକାଶ ଘଟିଥାଏ । ଏପରି ସଂଯମହୀନତା ବ୍ୟକ୍ତିର ସଞ୍ଚିତ ଶକ୍ତିକୁ ହ୍ରାସ କରି ତାଙ୍କୁ ନଷ୍ଟମୁଖୀ କରାଏ । ସୁତରାଂ ଏ ଦିଗରେ ସତର୍କ ଦୃଷ୍ଟିଦେବା ପ୍ରତ୍ୟେକ ସାଧନାମୁଖୀ ବ୍ୟକ୍ତିର ପରମ କର୍ତ୍ତବ୍ୟ ।

ପ୍ରଥମେ ରୁକ୍ଷ ଓ କର୍କଶ ଭାଷାରେ କଥାବାର୍ତ୍ତା କରିବାର କୁଅଭ୍ୟାସ କଥା ବିଚାର କରାଯାଉ । ମୃଦୁ ସ୍ୱରରେ କଥାବାର୍ତ୍ତା କରିବା ଉଚିତ ବୋଲି ଅନେକ ସ୍ୱୀକାର କଲେ ମଧ୍ୟ ବ୍ୟବହାରିକ ଜୀବନରେ ଏହାକୁ ପାଳନ କରନ୍ତି ନାହିଁ । ସ୍ୱଭାବଟି ଏପରି ଗଠିତ ହୋଇଥାଏ ଯେ କଥା କହିବାକୁ ଆରମ୍ଭ କଲାମାତ୍ରେ ମୃଦୁସ୍ୱର ପରିବର୍ତ୍ତେ କର୍କଶସ୍ୱର ବାହାରି ଆସେ ।

ମୃଦୁସ୍ୱର କାହିଁକି ସହଜ ସ୍ୱଭାବ ରୂପେ ପ୍ରକାଶ ପାଏ ନାହିଁ, ତାହା ଜାଣିବା କଷ୍ଟ ନୁହେଁ । ରାଗର ସ୍ୱର ସବୁବେଳେ କର୍କଶ, ଅନୁରାଗର ସ୍ୱର ସବୁବେଳେ କୋମଳ । ଅନ୍ୟକୁ ଶାସନ କରିବାର ଭାଷା ଉଚ୍ଚବାଚ, ମାତ୍ର ନିଜର ଅନୁଶାସନ ପାଇଁ ଆବଶ୍ୟକ ଭାଷା ଧୀର । ସେହିପରି ନିଜ ଭିତରେ ଥିବା ଆତ୍ମଶକ୍ତିର ବିକାଶ ପାଇଁ ଆବଶ୍ୟକ ଭାଷା ମୃଦୁ, କିନ୍ତୁ ନିଜର ବାହ୍ୟରୂପ ବା ଶରୀରର ବିଜ୍ଞାପନ

ପାଇଁ ଅନ୍ୟକୁ ଆକର୍ଷଣ କରିବାର ସ୍ୱର ଉଚ୍ଚ । ମୋଟ ଉପରେ ଆମର ହୃଦୟରେ ରାଗ ପରିବର୍ତ୍ତେ ପ୍ରୀତି, ପରକୁ ନିୟନ୍ତ୍ରଣ ବା ଶାସନ କରିବା ପରିବର୍ତ୍ତେ ନିଜକୁ ନିୟନ୍ତ୍ରଣ କରିବାର ଭାବନା ଏବଂ ନିଜର ବିଜ୍ଞାପନର ଆଶା ବଦଳରେ ଆତ୍ମାନୁଭୂତିର ଅଭୀପ୍ସା ରହିଲେ ଆମର ସ୍ୱର ଓ ଆମର କଥାବାର୍ତ୍ତା ସ୍ୱାଭାବିକ ଭାବରେ ମୃଦୁ ଓ କୋମଳ ହୋଇଯିବ ।

ଏ ଦିଗରେ ଆକସ୍ମିକ ପରିବର୍ତ୍ତନ ସମ୍ଭବ ନୁହେଁ । କ୍ରମାଗତ ଭାବରେ ପରିବାର ମଧ୍ୟରେ ଏପରି ଅଭ୍ୟାସ ଆରମ୍ଭ କରିବାକୁ ହେବ । ଗୃହସ୍ୱାମୀ ବିଶୃଙ୍ଖଳିତ ହୋଇ ବାକ୍‌ସଂଯମ ହରାଉଥିଲେ ସ୍ତ୍ରୀ ଏ ଦିଗରେ ତାଙ୍କୁ ସଚେତନ କରାଇବେ । ସେହିପରି ପତ୍ନୀଙ୍କର ବିଚ୍ୟୁତି ସମୟରେ ସ୍ୱାମୀ ସତର୍କ କରାଇଦେବେ । ପିଲାମାନଙ୍କର ବାକ୍‌ସଂଯମର ଅଭାବ ଦେଖିଲେ ପିତାମାତା ଏ ଦିଗରେ ସ୍ପଷ୍ଟ ସଂକେତ ଦେବେ । ସେହିପରି ପିତାମାତାଙ୍କର ବିଚ୍ୟୁତି ପିଲାମାନେ ଏଡ଼ାଇ ନ ଯାଇ ସେମାନଙ୍କର ଦୃଷ୍ଟି ଆକର୍ଷଣ କରିବେ । ପରିବାରର ପରିପ୍ରେକ୍ଷୀ ମଧ୍ୟରେ ପରସ୍ପରକୁ ଏପରି ଚେତାଇଦେବା ଏବଂ ନିୟନ୍ତ୍ରଣ କରିବାର ଅଭ୍ୟାସ ଏକ ଉପଯୋଗୀ ପାରିବାରିକ ପରିବେଶ ସୃଷ୍ଟି କରିବ । ଧୀରେ ଧୀରେ ଏହା ପ୍ରସାରିତ ହୋଇ ବାହ୍ୟ ପରିବେଶରେ ମଧ୍ୟ ପ୍ରକାଶ ପାଇବ ।

ରୁକ୍ଷ ଓ କର୍କଶ ସ୍ୱରରେ କଥାବାର୍ତ୍ତା କରିବା ତୁଳନାରେ ଅନ୍ୟର କୁତ୍ସା ବା ନିନ୍ଦା କରିବାର କୁଅଭ୍ୟାସଟି ଘଟିବା ଅଧିକ ଭୟଙ୍କର । ବିଶେଷ କରି ବହୁଲୋକ ଅନ୍ୟର ଅନୁପସ୍ଥିତିରେ ତା'ର ନିନ୍ଦା କରନ୍ତି । ଏହା ତୀବ୍ର ଭାବରେ ସାଧନା ବିରୋଧୀ । ଥରେ ଜଣେ ବ୍ୟକ୍ତି ଅନ୍ୟର ନିନ୍ଦା କରୁଥିବା ସମୟରେ ଅବତାର ପୁରୁଷ ଶିରିଡ଼ିର ସାଇବାବା ଅଦୂରରେ ଥିବା ମଇଳା ଖାଉଥିବା ଗୋଟିଏ ଘୁଷୁରୀକୁ ଦେଖାଇ ଲୋକଟିର କାମ ସହିତ ତାହାର ସାଦୃଶ୍ୟ ଦର୍ଶାଇଥିଲେ । ପ୍ରକୃତରେ ଅନ୍ୟର ନିନ୍ଦା ଓ ଅବିଗୁଣ ଗାଇବା ଏକ ନୀଚ କାମ ।

ଏପରି କୁଅଭ୍ୟାସର ପରିବର୍ତ୍ତନ ପାଇଁ କେତୋଟି ବିଷୟରେ ସତର୍କ ଦୃଷ୍ଟି ଦେବାକୁ ହେବ । କେଉଁ କେଉଁ ସମୟରେ ଏବଂ କେଉଁ କେଉଁ ଅବସ୍ଥାରେ ଆମର ଏପରି ସ୍ଖଳନ ଘଟେ, ତାହା ଜାଣିବାକୁ ହେବ ।

ପ୍ରଥମତଃ ବୁଝିବାକୁ ହେବ ଯେ ଅଳ୍ପଭାଷୀ ବ୍ୟକ୍ତିମାନେ କମ୍‌ମାତ୍ରାରେ ଏପରି ଦୋଷର ଶରବ୍ୟ ହୁଅନ୍ତି । ଅନାବଶ୍ୟକ ଭାବରେ ଏଣୁତେଣୁ ଗୁଡ଼ାଏକଥା କହିବା ଫଳରେ ଆମର କଥୋପକଥନରେ ଆମେ ବହୁ ଖଳନାୟକର ଚରିତ୍ର ସୃଷ୍ଟି କରୁ ।

ଆମ କଥାକୁ ସୁବିସ୍ତୃତ ଓ ଆକର୍ଷଣୀୟ କରିବା ପାଇଁ ଯେଉଁ ନାଟକୀୟତାର ପ୍ରୟୋଜନ ହୁଏ, ସେଠାରେ ସାଧୁର ଚରିତ୍ର ଅପେକ୍ଷା ସଇତାନର ଚରିତ୍ର ସୃଷ୍ଟି ଅଧିକ ପ୍ରୟୋଜନ ମନେହୁଏ । ଅନ୍ୟପକ୍ଷରେ ସ୍ୱଳ୍ପଭାଷୀ ବ୍ୟକ୍ତିମାନେ ପ୍ରୟୋଜନ ଅନୁଯାୟୀ ନିଜର ସଂଳାପ ନିର୍ମାଣ କରୁଥିବାରୁ ଅନ୍ୟର ନିନ୍ଦା ଅପନିନ୍ଦା ସେଥିରେ କମ୍ ସ୍ଥାନ ପାଇଥାଏ ।

ଅନ୍ୟର ଅନୁପସ୍ଥିତିରେ ତା'ର କୁତ୍ସା ରଟନାରୁ ନିବୃତ୍ତ ହେବା ପାଇଁ କେତୋଟି ଦିଗପ୍ରତି ସଚେତନ ହେବାକୁ ପଡ଼ିବ । ପ୍ରଥମେ ଜାଣିରଖିବା ଉଚିତ ଯେ ମନୁଷ୍ୟ ସାଧାରଣତଃ ବସ୍ତୁ, ଘଟଣା, ବ୍ୟକ୍ତି ଓ କୌଣସି ଭାବନା ସଂପର୍କରେ କଥାବାର୍ତ୍ତା କରିଥାଏ ।

ଆମେ କଥାବାର୍ତ୍ତା କରୁଥିବା ବସ୍ତୁସବୁ ନିହାତି ମାମୁଲି ହୋଇପାରନ୍ତି କିମ୍ବା ଖୁବ୍ ମୂଲ୍ୟବାନ୍ ଓ ଦରକାରୀ ବସ୍ତୁ ହୋଇପାରେ । ଉଦାହରଣ ସ୍ୱରୂପ, ଆମେ ଖାଦ୍ୟ, ପାନୀୟ ବାସଗୃହ, ଖେଳ ସାମଗ୍ରୀ, ଉପଭୋଗ ସାମଗ୍ରୀ ବିଷୟରେ କଥାବାର୍ତ୍ତା କରିପାରୁ । ସେହିପରି ମନ୍ଦିର, ପୂଜା ସାମଗ୍ରୀ ଓ ଅନ୍ୟାନ୍ୟ ବସ୍ତୁ ସଂପର୍କରେ ମଧ କଥାବାର୍ତ୍ତା କରିପାରୁ । ଏଠାରେ ଲକ୍ଷ୍ୟ କରିବାର କଥା ଯେ ଆମ କଥୋପକଥନର କେନ୍ଦ୍ରବିନ୍ଦୁ ନିହାତି ମାମୁଲି ହୋଇପାରେ କିମ୍ବା ଅତି ଦରକାରୀ ବସ୍ତୁ ହୋଇପାରେ । ମାତ୍ର ଏପରି କଥୋପକଥନ ସମୟରେ ଅନ୍ୟ ବ୍ୟକ୍ତିର ନିନ୍ଦା ବା କୁତ୍ସା ଆଲୋଚନା କରିବାର ସମ୍ଭାବନା କମ୍ ଥାଏ । ଦୈନନ୍ଦିନ ଜୀବନରେ ରନ୍ଧନ ପ୍ରଣାଳୀ, ବଗିଚା କାମ, ପ୍ରିୟ ପୁସ୍ତକ ବା ଦର୍ଶନୀୟ ସ୍ଥାନ ସଂପର୍କରେ ଆଲୋଚନା କଲାବେଳେ ବ୍ୟକ୍ତିବିଶେଷଙ୍କର ଖରାପ ଦିଗର ଆଲୋଚନା କରିବା ସମ୍ଭାବନାକୁ ଏଡ଼ାଇ ଦିଆଯାଇପାରେ ।

ଦ୍ୱିତୀୟ କେନ୍ଦ୍ରବିନ୍ଦୁଟି ହେଲା ଘଟଣା । ଘଟଣା ସଂପର୍କରେ ଆଲୋଚନା କଲାବେଳେ ବ୍ୟକ୍ତିବିଶେଷକୁ ନିନ୍ଦା କରିବା ଏଡ଼ାଇ ଦିଆଯାଇପାରେ, ମାତ୍ର ଏଥିପାଇଁ ସତର୍କ ପ୍ରଚେଷ୍ଟା ଦରକାର । ଘଟଣାଟି ଦୁଃଖଦ କିମ୍ବା ଅପ୍ରୀତିକର ହୋଇଥିଲେ ଏହାର କାରଣ ସୂଚାଇବାକୁ ଯାଇ ବର୍ଣ୍ଣନାକାରୀ କେତେକ ବ୍ୟକ୍ତିବିଶେଷଙ୍କର ନିନ୍ଦା କରିପାରନ୍ତି । ଏ କ୍ଷେତ୍ରରେ ଦୁଇଟି ମନୋବୃତ୍ତି ସୁସ୍ଥ ପରିବେଶ ସୃଷ୍ଟି କରିପାରିବ । ପ୍ରଥମତଃ ବର୍ଣ୍ଣନାକାରୀ କୌଣସି ବ୍ୟକ୍ତିକୁ ନିନ୍ଦା କଲାବେଳେ ନିଜକୁ ପଚାରିବା ଉଚିତ୍ ହେବ – ଅଘଟଣ ପାଇଁ ପରିବେଷ୍ଟନୀଗତ କାରଣ ନାହିଁକି ? ଅନ୍ୟ ଭାଷାରେ କହିଲେ ବାହ୍ୟକରଣରୁ ଅପ୍ରୀତିକର ଅବସ୍ଥା ସୃଷ୍ଟି ହୋଇଥିଲେ କୌଣସି ବ୍ୟକ୍ତିକୁ

ଦୋଷାରୋପ କରିବା ସୀମୀଚୀନ ହେବ ନାହିଁ । ଦ୍ୱିତୀୟତଃ ବିଶ୍ଳେଷଣ ଅନୁଯାୟୀ କୌଣସି ବ୍ୟକ୍ତିଙ୍କର ଦୋଷ ଥିଲେ ତାହା ତାଙ୍କ ସମ୍ମୁଖରେ ଉପସ୍ଥାପନ କରି ତାଙ୍କର ମତାମତ ଲୋଡ଼ିବା ଯୁକ୍ତିଯୁକ୍ତ ହେବ । ନିଜର ସପକ୍ଷରେ କିଛି କହିବାର ସୁଯୋଗ ନଥିବା ସମୟରେ ବ୍ୟକ୍ତିକୁ ତା'ର ଅନୁପସ୍ଥିତିରେ ଦୋଷାରୋପ କରିବା କାପୁରୁଷତାର ଚିହ୍ନ ବୋଲି ଧରାଯିବ ।

ବାକ୍ ସଂଯମର ସର୍ବାଧିକ ଅଭାବ ଘଟିଥାଏ ବ୍ୟକ୍ତି ସଂପର୍କରେ ଆଲୋଚନା କରିବା ସମୟରେ । ଏଠାରେ ସ୍ଖଳନର ସମ୍ଭାବନା ସର୍ବାଧିକ । ପୁଣି ଲକ୍ଷ୍ୟ କଲେ ଦେଖାଯିବ ଯେ ଆମର କଥାବାର୍ତ୍ତାର କେନ୍ଦ୍ରବିନ୍ଦୁ ଜୀବିତ ବ୍ୟକ୍ତି ହୋଇଥିଲେ କୁତ୍ସା ରଟନାର ସମ୍ଭାବନା ଅଧିକ । କଥାବାର୍ତ୍ତାର କେନ୍ଦ୍ରବିନ୍ଦୁ ଆଉ ଇହଲୋକରେ ନଥିଲେ ତାଙ୍କର ଅବିଗୁଣ ଗାଇବାର ସମ୍ଭାବନା କ୍ଷୀଣ । ସେହିପରି ଅତି ନିକଟସ୍ଥ ବ୍ୟକ୍ତି (ଆମର ପୁତ୍ରକନ୍ୟା, ପିତାମାତା ବା ପରିବାର ସଦସ୍ୟ) କିମ୍ବା ଅତି ଦୂରସ୍ଥ ବ୍ୟକ୍ତି (ଆମେରିକାର ରାଷ୍ଟ୍ରପତି କିମ୍ବା ରୁଷିଆର ପ୍ରଧାନମନ୍ତ୍ରୀ) ସଂପର୍କରେ ଆମେ କମ୍ ପରିମାଣର ଅବିଗୁଣ କହିଥାଉ । ଅନ୍ୟପକ୍ଷରେ ଆମର ନିକଟସ୍ଥ ବ୍ୟକ୍ତି (ପ୍ରତିବେଶୀ ସହକର୍ମୀ) ସଂପର୍କରେ ବେଶୀ ସମୟରେ ନିନ୍ଦା ରଟନା କରୁ । ଏହା କହିବାର ତାତ୍ପର୍ଯ୍ୟ ହେଉଛି ଯେ ଆଗେ ଆମର ନିକଟସ୍ଥ ବ୍ୟକ୍ତିମାନଙ୍କ ସଂପର୍କରେ ଆଲୋଚନା କଲାବେଳେ ଅଳ୍ପଭାଷୀ ହେଲେ ଏବଂ ନିଜର ଜିହ୍ୱା ଉପରେ ସତର୍କ ଦୃଷ୍ଟି ରଖିଲେ ବହୁ ପରିମାଣରେ ସଂଯମହୀନତା କମିଯିବ ।

ପରିଶେଷରେ ଆମର କଥାବାର୍ତ୍ତାର ବିଭିନ୍ନ ଧାରଣା ବିଭିନ୍ନ ଭାବଗତ ବିଷୟ ସ୍ଥାନ ପାଇଲେ ଉତ୍ତମ । ଆମେ ଈଶ୍ୱର ସାଧନା, ଧର୍ମ ବିଶ୍ୱାସ, ଗଣତନ୍ତ୍ର ଓ ସମାଜନୀତି ସଂପର୍କରେ ଆଲୋଚନା କରିବା ସମୟରେ ଅନ୍ୟର କୁତ୍ସା ବର୍ଣ୍ଣନାର ସମ୍ଭାବନା କ୍ଷୀଣ ରହିଥାଏ । ଅନେକଙ୍କର ଧାରଣା ଯେ କେବଳ ଜ୍ଞାନୀ ଓ ପଣ୍ଡିତ ଲୋକମାନେ ଏପରିସବୁ ଭାବନା ସଂପର୍କରେ କଥାବାର୍ତ୍ତା ହୋଇପାରିବେ । ଏହା ପ୍ରକୃତରେ ସତ ନୁହେଁ । ପ୍ରତିଟି ମଣିଷର ଭାବନା ଶକ୍ତି ରହିଛି । ନିଜର ଭଲ ରୁଚି, ଅଭ୍ୟାସ, ପଠନ ସାମଗ୍ରୀ ଏବଂ ଅନୁଭବକୁ କେନ୍ଦ୍ରକରି ବ୍ୟକ୍ତି ବେଶ୍ କିଛି ଭାବ ବ୍ୟକ୍ତ କରିପାରିବ । ଏଥିପାଇଁ ଦୁଇଟି ଜିନିଷ ଆବଶ୍ୟକ । ପ୍ରଥମତଃ ବ୍ୟକ୍ତି ନିଜର ଜୀବନ ପରିସରକୁ ପରିବ୍ୟାପ୍ତ କରୁଥିବା କୌଣସି ନା କୌଣସି ବିଷୟରେ ରୁଚି ଓ ଆଗ୍ରହ ଥିବ । ଏପରି ଆଗ୍ରହ ରୋଷାଇ ବା ବଗିଚା କାମ କରିବା ହୋଇପାରେ କିମ୍ବା କଳା, କ୍ରୀଡ଼ା ଓ ସାହିତ୍ୟ ହୋଇପାରେ । ରୁଚିଥିବା ବିଷୟ ସଂପର୍କରେ

କଥାବାର୍ତ୍ତା କଲେ ଅନ୍ୟବ୍ୟକ୍ତିର ବ୍ୟକ୍ତିଗତ ଦୋଷତ୍ରୁଟି ଆଲୋଚନା କରିବାର ସମ୍ଭାବନା ନଥିବ ।

ଦ୍ୱିତୀୟତଃ ଅନ୍ୟ ବ୍ୟକ୍ତିର ଦୋଷତ୍ରୁଟି ଓ ଅବିଗୁଣ ଆଲୋଚନା କଲାବେଳେ ମନେରଖିବାକୁ ହେବ ଯେ ନିଜର ମୂଲ୍ୟାୟନ ପାଇଁ ବ୍ୟକ୍ତି ଯେଉଁ ମାପକାଠି ବ୍ୟବହାର କରୁଛି, ଅନ୍ୟର ମୂଲ୍ୟାଙ୍କନ କଲାବେଳେ ଭିନ୍ନ ମାପଦଣ୍ଡ ଗ୍ରହଣ ନ କରୁ । ସାଧାରଣତଃ ଦେଖାଯାଏ ଯେ ବ୍ୟକ୍ତି ନିଜର ସଫଳତା ବିଚାର କଲାବେଳେ ଗୁଣାଶ୍ରୟୀ ବା ଆଭ୍ୟନ୍ତରୀଣ ମାନଦଣ୍ଡ ନିଏ । କାର୍ଯ୍ୟଟି ସଫଳ ହୋଇଥିଲେ ତାହା ନିଜର ସୁଗୁଣ (ପରିଶ୍ରମଶୀଳତା ବା କାର୍ଯ୍ୟଦକ୍ଷତା) ଯୋଗୁଁ ସମ୍ଭବ ହୋଇଛି ବୋଲି ଭାବିଥାଏ । ମାତ୍ର ବିଫଳ ହୋଇଥିଲେ ପରିବେଷ୍ଟନୀଗତ ବା ବାହ୍ୟିକ ମାନଦଣ୍ଡ ବିଚାରକୁ ନିଏ । ଅନ୍ୟମାନଙ୍କର ସହଯୋଗର ଅଭାବ, ଅର୍ଥାଭାବ ବା ସମ୍ବଳହୀନତା ଯୋଗୁଁ ଏପରି ଘଟିଲା ବୋଲି ବିଚାର କରେ ।

କୌତୂହଳର ବିଷୟ ଯେ ବ୍ୟକ୍ତି ଅନ୍ୟର ସଫଳତା ବିଫଳତା ବିଚାର କଲାବେଳେ ଭିନ୍ନ ଧରଣର ସମୀକ୍ଷା କରେ । ଅନ୍ୟ ବ୍ୟକ୍ତିଟି ସଫଳ ହୋଇଥିଲେ ତାହା ପରିବେଶର ଦାନ ବୋଲି ଧରିନିଏ । ସାହାଯ୍ୟ ସୁଯୋଗ ମିଳିଥିବାରୁ ଏପରି ଘଟିଲା ବୋଲି ଧରିନିଏ । ମାତ୍ର ଅନ୍ୟ ବ୍ୟକ୍ତିଟି ବିଫଳ ହୋଇଥିଲେ ବ୍ୟକ୍ତିର ଅବିଗୁଣ ଦୋଷଦୁର୍ବଳତା କାରଣ ବୋଲି ବିଚାର କରେ । ଏପରି ଓଲଟା ମାନଦଣ୍ଡ ନେବା ଫଳରେ ଅନ୍ୟକୁ ସମାଲୋଚନା କରିବାର ସମ୍ଭାବନା ବୃଦ୍ଧି ପାଏ । ସୁତରାଂ ଅନ୍ୟର ଦୋଷତ୍ରୁଟି କଥା ଭାବିବା ସମୟରେ ଅନ୍ୟବ୍ୟକ୍ତିର ପରିପାର୍ଶ୍ୱରେ ଥିବା ପ୍ରତିବଂଧକସବୁର ବିଚାର କଲେ ଏକ ସମ୍ବେଦନଶୀଳ ମନୋଭାବ ସୃଷ୍ଟି ହେବ ଏବଂ ନିଷ୍ଠୁର ଭାବେ ତାକୁ ନିନ୍ଦା କରିବାର ପ୍ରବୃତ୍ତି ରହିବ ନାହିଁ ।

ସ୍ଥୂଳତଃ ହୃଦୟରେ ସମତାଭାବ, ପ୍ରୀତି ଓ ଅନୁରାଗର ଭାବନା ନେଇ କୋମଳ ଓ ମୃଦୁ ସ୍ୱରରେ କଥାବାର୍ତ୍ତା କରିବା ଯେପରି ଏକ ଭାବସମ୍ପଦ, ସେହିପରି ଅଳ୍ପଭାଷୀ ଓ ଗୁଣଦର୍ଶୀ ହୋଇ ଅନ୍ୟର ଅନୁପସ୍ଥିତିରେ ତାର ନିନ୍ଦା ନ କରିବା ଏକ ସାଧନାଲବ୍ଧ ସଂସ୍କାର । କହିବା ଅନାବଶ୍ୟକ ଯେ ଏପରି ଆତ୍ମସଂଯମ ଆମର ଦିବ୍ୟତ୍ୱଲାଭର ସହାୟକ ।



# ଆତ୍ମସଂଯମ

ପରିବାରରେ ବସବାସ କରୁଥିବା ଲୋକମାନଙ୍କର ରୁଚି, ବୟସ ଓ ଶରୀର ଗଠନ ଉପରେ ନିର୍ଭର କରି ଚାଲିଚଳଣ ବେଶଭୂଷାରେ ପାର୍ଥକ୍ୟ ଥାଇପାରେ; ମାତ୍ର ସମସ୍ତଙ୍କ ମଧ୍ୟରେ ଥିବା ସ୍ନେହଶ୍ରଦ୍ଧା ଏକକର ବଂଧନରେ ସମସ୍ତଙ୍କୁ ବାନ୍ଧି ରଖିଥାଏ । ଠିକ୍ ସେହିପରି ବିଶ୍ୱରେ ପରିଲକ୍ଷିତ ବିଭିନ୍ନ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ବାହ୍ୟିକ ରୀତିନୀତିରେ ପ୍ରଭେଦ ଥାଇପାରେ । କିନ୍ତୁ କେତେକ ମୂଲ୍ୟବୋଧର ଗୁରୁତ୍ୱ ଓ ଉଦ୍‌ଘୋଷଣ ପ୍ରତି ଧର୍ମବିଶ୍ୱାସରେ ସ୍ପଷ୍ଟ । ଆତ୍ମସଂଯମ ଏହିପରି ଏକ ମୌଳିକ ମୂଲ୍ୟବୋଧ ।

ଜନଜୀବନକୁ ଉନ୍ନତ, ସୁଖମୟ ଓ ସାଧନାମୟ କରିବା ପାଇଁ ଆତ୍ମସଂଯମକୁ ସବୁ ଧର୍ମରେ ପ୍ରାଧାନ୍ୟ ଦିଆଯାଇଥିଲେ ମଧ୍ୟ ବର୍ତ୍ତମାନର ଘଟଣା ପ୍ରବାହ ପରିପ୍ରେକ୍ଷୀରେ ଏହାର ତାତ୍ପର୍ଯ୍ୟ ଅଧିକ ବୋଲି ମନେହୁଏ । ବର୍ତ୍ତମାନର ମନୁଷ୍ୟ ଦ୍ରୁତଗତିରେ ଇନ୍ଦ୍ରିୟସର୍ବସ୍ୱ ହେବାରେ ଲାଗିଛି । ଇନ୍ଦ୍ରିୟାନୁଭୂତି ମାଧ୍ୟମରେ ଭୌତିକ ଜଗତରୁ ମନୋରଂଜନ ଧର୍ମୀ ସମ୍ବେଦନ ଗ୍ରହଣ କରିବାର ବ୍ୟଗ୍ରତା ଜୀବନକୁ ଏକ ଅସ୍ଥିର ରୂପ ଦେଇଛି । ମଣିଷ ଭିତରେ ଲୁଚି ରହିଥିବା ପଶୁ ପ୍ରବୃତ୍ତିକୁ ଅଧିକ ଜାଗ୍ରତ ଓ ସକ୍ରିୟ କରିବା ପାଇଁ ଅଶ୍ଳୀଳ ପୁସ୍ତକ, ଅନିୟନ୍ତ୍ରିତ ଦୂରଦର୍ଶନ କାର୍ଯ୍ୟକ୍ରମ ଏବଂ ମନୋରଂଜନମୁଖୀ ଶିଳ୍ପସବୁର ଦ୍ରୁତ ପ୍ରସାର ବୃଦ୍ଧି ପାଇବାରେ ଲାଗିଛି । ଇନ୍ଦ୍ରିୟସୁଖର ବ୍ୟବସାୟିକ ପରିସର ସୀମାବିସ୍ତାର କରିବାରେ ଲାଗିଛି । ଏପରି ଏକ ପଟ୍ଟଭୂମି ଉପରେ ଆତ୍ମସଂଯମ କଥାଟି ନିହାତି ଜୀବନ-ବିରୋଧୀ ମନେହୋଇପାରେ । ବିଶେଷତଃ ବର୍ତ୍ତମାନର ଯୁବ ସଂପ୍ରଦାୟ ଯୁକ୍ତି କରିପାରନ୍ତି ଯେ ପ୍ରକୃତି ମନୁଷ୍ୟକୁ ଯେଉଁ ସମସ୍ତ ଅନୁଭବର ମାଧ୍ୟମ (ଯଥା– ଚକ୍ଷୁ, କର୍ଣ୍ଣ ଇତ୍ୟାଦି) ଦେଇଛି, ସେସବୁର ପୂର୍ଣ୍ଣ ଉପଯୋଗ କିଛି ଅବାନ୍ତର ନୁହେଁ ।

ଏ ପ୍ରଶ୍ନର ଉତ୍ତର ଦେଇ ଜଣେ ସାଧକ କହିଥିଲେ ଯେ ମତ୍ସ୍ୟସବୁ ଜଳରେ ପହଁରୁଥିଲେ ଏବଂ ଏବେ ମଧ୍ୟ ପହଁରୁଛନ୍ତି । କେବଳ ବିବର୍ତ୍ତିତ ହେବାକୁ ଇଚ୍ଛା କରିଥିବା ମତ୍ସ୍ୟ ନିଜର ପରିସର ମଧ୍ୟରୁ ବାହାରି ଆସିଲେ ଏବଂ ବିବର୍ତ୍ତିତ ରୂପ

ନେଲେ । ବିବର୍ତ୍ତନର ସୋପାନରେ ସେ ଉଭୟଚର ପ୍ରାଣୀର ରୂପ ନେଲେ ଏବଂ ପରେ ପୁନର୍ବାର ବିବର୍ତ୍ତିତ ହୋଇ ପକ୍ଷୀ ହେଲେ । ବିବର୍ତ୍ତନ ଫଳ ସ୍ୱରୂପ ସ୍ତନ୍ୟପାୟୀ ପ୍ରାଣୀ ପଦକୁ ଉନ୍ନୀତ ହେଲେ । ଏ ରୂପକର ତାତ୍ପର୍ଯ୍ୟ ହେଉଛି ଯେ ମନୁଷ୍ୟ ତା'ର ପ୍ରକୃତିଦତ୍ତ କଳାକୌଶଳ ମଧ୍ୟରେ ଆବଦ୍ଧ ରହିବା ଅନୁଚିତ । ଇନ୍ଦ୍ରିୟସୁଖ ମଧ୍ୟରେ ବାନ୍ଧି ହୋଇ ରହିବା ବିକାଶର ଧାରାକୁ ବାଧା ଦେବ ଏବଂ ବିବର୍ତ୍ତନର ସମ୍ଭାବନା ହ୍ରାସ ପାଇବ ।

ଇନ୍ଦ୍ରିୟବଦ୍ଧ ହେବାଫଳରେ ଯେଉଁସବୁ କୁପରିଣତି ସୃଷ୍ଟି ହୁଏ, ତାହା ଭଗବଦ୍ ଗୀତାରେ ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରାଯାଇଛି । କୁହାଯାଇଛି ଯେ –

**''ଧ୍ୟାୟତୋବିଷୟାନ୍ ପୁଂସଃ, ସଙ୍ଗସ୍ତେଷୂପଜାୟ ତେ ।**
**ସଙ୍ଗାତ୍ ସଞ୍ଜାୟତେ କାମଃ, କାମାତ୍‌କ୍ରୋଧୋଽଭିଜାୟତେ ।।**
**କ୍ରୋଧାତ୍ ଭବତି ସମ୍ମୋହଃ, ସମ୍ମୋହାତ୍ ସ୍ମୃତିବିଭ୍ରମଃ ।**
**ସ୍ମୃତିଭ୍ରଂଶାତ୍ ବୁଦ୍ଧିନାଶୋ, ବୁଦ୍ଧିନାଶାତ୍ ପ୍ରଣଶ୍ୟତି ।।''**

ଇନ୍ଦ୍ରିୟ ଚାଳିତ ହୋଇ କୌଣସି ଜାଗତିକ ବସ୍ତୁ ବା ଘଟଣା ସଂପର୍କରେ ଅଧିକ ଚିନ୍ତା କରିବା ଫଳରେ 'ଆସକ୍ତି' ସୃଷ୍ଟି ହୁଏ । ଏପରି ଆସକ୍ତି ଫଳରେ ବସ୍ତୁଟିକୁ ଲାଭ କରିବାର ଇଚ୍ଛା ବଳବତୀ ହୁଏ । ପୁଣି ଆକାଂକ୍ଷିତ ବସ୍ତୁ ତୁଳନାରେ ବସ୍ତୁର କାମନା କରୁଥିବା ବ୍ୟକ୍ତିଙ୍କ ସଂଖ୍ୟା ବେଶୀ ହୋଇଥିବାରୁ ବସ୍ତୁଟି ଲାଭ କରିବାରେ ବିଫଳତାର ସମ୍ଭାବନା ଖୁବ୍ ଅଧିକ । ଫଳତଃ ବିଫଳତାରୁ 'କ୍ରୋଧ' ଜନ୍ମେ । କ୍ରୋଧ ଜନ୍ମିବା ଫଳରେ ବସ୍ତୁଟିକୁ ଲାଭ ବା ଉପଭୋଗ କରାଯିବାରେ ଯେଉଁମାନଙ୍କୁ ପ୍ରତିବଂଧକ ବୋଲି ବିଚାର କରାଯାଏ, ସେମାନଙ୍କ ପ୍ରତି ଭ୍ରମ ଧାରଣା ସୃଷ୍ଟି ହୁଏ । ବିଫଳତା ସହିତ ସଂପୃକ୍ତ ନଥିବା ବ୍ୟକ୍ତିବିଶେଷଙ୍କ ପ୍ରତି ମଧ୍ୟ ଅବିଚାର ଭାବ ପ୍ରକାଶ ପାଏ । ଭଲମନ୍ଦକୁ ବୁଝି ନ ପାରିବାର ସାମର୍ଥ୍ୟ ବୁଦ୍ଧିହୀନତାର ପରିଚାୟକ । ବୌଦ୍ଧିକ ଶକ୍ତିର ଏପରି ଅବକ୍ଷୟ ମନୁଷ୍ୟର ଅଧୋପତନର କାରଣ ହୁଏ ।

ଅବତାର ପୁରୁଷ ଶିରିଡ଼ିର ସାଇବାବା ମଧ୍ୟ ନିଜସ୍ୱ ଶୈଳୀରେ ଇନ୍ଦ୍ରିୟ ନିଗ୍ରହ ବିଷୟରେ ଭକ୍ତମାନଙ୍କୁ ସଚେତନ କରାଉଥିଲେ । ଉପଦେଶ ଅପେକ୍ଷା ଘଟଣା ସୃଷ୍ଟି ମାଧ୍ୟମରେ ଲୋକ ଉପଲବ୍ଧି ଅଧିକ ଫଳପ୍ରଦ ହେଉଥିବାରୁ ସେ ଲୋକଶିକ୍ଷା ପାଇଁ ଏକ ପରିବେଶ ସୃଷ୍ଟି କରୁଥିଲେ । ଥରେ ଜଣେ ଧନୀବ୍ୟକ୍ତି ବ୍ରହ୍ମଜ୍ଞାନ ଲାଭ ଆଶାରେ ଶିରିଡ଼ି ଆସିଥିଲେ । ଏହି ବ୍ୟକ୍ତିଜଣକର କୌଣସି ଅଭାବ ନଥିଲା । ଧନ

ସଂପଦର ପ୍ରାଚୁର୍ଯ୍ୟ ତାଙ୍କ ଜୀବନର ଏକ ସାଧାରଣ କଥା ଥିଲା । ଥରେ ବ୍ରହ୍ମଜ୍ଞାନ ଲାଭ ପାଇଁ ତାଙ୍କର ଇଚ୍ଛା ଜାଗ୍ରତ ହେଲା । ସେ ଶୁଣିଥିଲେ ଯେ ଶିରିଡ଼ିର ସାଇବାବା ଅବିଳମ୍ବେ ଲୋକମାନଙ୍କର ଅଭୀଷ୍ଟ ପୂରଣ କରନ୍ତି । ସୁତରାଂ କାଳବିଳମ୍ବ ନ କରି ଗୋଟିଏ ଗାଡ଼ି ଭଡ଼ା କରି ସେ ଶିରିଡ଼ି ଆସିଲେ ।

ଶିରିଡ଼ିରେ ପହଞ୍ଚି ସେ ବାବାଙ୍କୁ ଦର୍ଶନ କଲେ । ନିଜର ମନୋଭାବ ବ୍ୟକ୍ତ କରି ସେ ବାବାଙ୍କୁ ଜଣାଇଲେ ଯେ ସେ ବ୍ରହ୍ମଜ୍ଞାନ ଲାଭ ପାଇଁ ଶିରିଡ଼ି ଆସିଛନ୍ତି । ବାବା ସମସ୍ତଙ୍କ ମନୋବାଞ୍ଛା ଖୁବ୍‌ଶୀଘ୍ର ପୂରଣ କରନ୍ତି ବୋଲି ସେ ଶୁଣିଥିବାରୁ ସେ ଶିରିଡ଼ି ଧାଇଁ ଆସିଛନ୍ତି । ବାବା ସିଧାସଳଖ କିଛି ଉତ୍ତରଦେବା ପୂର୍ବରୁ ଏକ ନାଟକ ସୃଷ୍ଟି କଲେ । ତାଙ୍କର ପାଞ୍ଚଟଙ୍କା ଦରକାର ଏବଂ ଏହା ଆଣିବା ପାଇଁ ପିଲାଟିକୁ ଗ୍ରାମ ମଧ୍ୟକୁ ପଠାଇଲେ । କିଛି ସମୟ ପରେ ପିଲାଟି ବିଫଳ ମନୋରଥ ହୋଇ ଫେରି ଆସିଲା ଏବଂ ନିର୍ଦ୍ଦିଷ୍ଟ ଘରେ ଚାବି ପଡ଼ିଛି ବୋଲି କହିଲା । ସାଇବାବା ପୁନଶ୍ଚ ତାକୁ ପଠାଇଲେ ଗୋଟିଏ ଦୋକାନୀ ପାଖକୁ । ସେଠାରୁ ମଧ୍ୟ ସେ ଟଙ୍କା ନ ପାଇ ଫେରିଆସିଲା । ବାବା ଏପରି ନିର୍ଦ୍ଦେଶର ପୁନରାବୃତ୍ତି କରି ଚାଲିଥିଲେ । ବ୍ରହ୍ମଜ୍ଞାନ ଲାଭ ପାଇଁ ସେଠାରେ ଉପସ୍ଥିତ ଥିବା ଧନୀକ ଜଣକ ପାଖରେ ଟଙ୍କାର ବିଡ଼ା ଥିଲା । ଅଥଚ ସେ ସ୍ୱତଃସ୍ଫୂର୍ତ୍ତ ଭାବରେ ଏ ବିଷୟରେ କିଛି ପ୍ରକାଶ କରି ନଥିଲା ।

ଅଭିନୟର ଦୃଶ୍ୟ କିଛି ସମୟ ଚାଲିଲା ପରେ ବାବା ସ୍ପଷ୍ଟ ସଂକେତ ଦେଇ ଧନୀକକୁ କହିଲେ ଯେ ତା' ପକେଟରେ ଦୁଇଶହ ପଚାଶ ଟଂକା ରହିଛି । ବାସ୍ତବରେ ସେ ବ୍ୟକ୍ତିପାଖରେ ସେତିକି ଟଂକା ଥିଲା । ଅବଶ୍ୟ ଆଗନ୍ତୁକଙ୍କଠାରୁ ଟଂକା ଆଦାୟ କରିବା ବାବାଙ୍କର ଉଦ୍ଦେଶ୍ୟ ନଥିଲା । ଏପରି ନାଟକ ମାଧ୍ୟମରେ ସେ ଧନୀକକୁ ଉଚିତ ଶିକ୍ଷା ଦେବାକୁ ଚାହୁଁଥିଲେ । ସୁତରାଂ ପରିହାସ କରି ସେ ଧନୀକଙ୍କୁ କହିଲେ ଯେ ସେ ତା' ପକେଟରେ ଥିବା ବ୍ରହ୍ମନେଇ ବ୍ୟସ୍ତ । ଏପରି କଥା ଶୁଣି ଏବଂ ବାବାଙ୍କୁ ସର୍ବଜ୍ଞ ସର୍ବଦ୍ରଷ୍ଟା ଅନୁଭବ କରି ସେ ନୋଟ୍ ବିଡ଼ାଟି ପାଦତଳେ ରଖିଲେ ମଧ୍ୟ ବାବା ଗ୍ରହଣ କରି ନଥିଲେ । ଉପଦେଶ ଛଳରେ କହିଲେ ଯେ ବ୍ରହ୍ମଜ୍ଞାନ ଲାଭ ପାଇଁ ବେଶ୍ କିଛି ଯୋଗ୍ୟତା ଆବଶ୍ୟକ । ଏହାର ମୂଳ ଯୋଗ୍ୟତା ହେଉଛି ଆତ୍ମସଂଯମ । ବିଷୟ ବାସନାରୁ ନିବୃତ୍ତ ନହେବା ପର୍ଯ୍ୟନ୍ତ ବ୍ରହ୍ମଜ୍ଞାନର ଉପଲବ୍ଧି ସମ୍ଭବ ନୁହେଁ । ଆଗନ୍ତୁକଟି ଯେ ନିଜ ପକେଟରେ ଥିବା ଟଂକା ପ୍ରତି କେତେ ବେଶୀ ଆସକ୍ତ, ତାହା ସେ ପ୍ରମାଣ କରାଇଦେଲେ । ତାକୁ ଭଲରୂପେ ବୁଝାଇଦେଲେ

ଯେ ବ୍ରହ୍ମଜ୍ଞାନ ଲାଭ ପାଇଁ ଏକପ୍ରକାର ମାନସିକ ପ୍ରସ୍ତୁତି ଆବଶ୍ୟକ । ଏହି ମାନସିକ ପ୍ରସ୍ତୁତି ହେଉଛି ଆତ୍ମସଂଯମ ।

ଆତ୍ମସଂଯମର ଅଭାବରେ ଯେଉଁସବୁ ତ୍ରୁଟିବିଚ୍ୟୁତି ପରିଲକ୍ଷିତ ହୁଏ, ତାହାର ଏକ ଦୀର୍ଘ ତାଲିକା ଦିଆଯାଇପାରେ । ସେ ସବୁର ବିସ୍ତୃତ ବିଚାର ପରିବର୍ତ୍ତେ ଆତ୍ମ ସଂଯମର ସୁଫଳର ଆଲୋଚନା ଅଧିକ ଉପଯୋଗୀ ।

ଆତ୍ମସଂଯମର ସବୁଠାରୁ ଉଲ୍ଲେଖଯୋଗ୍ୟ ସୁଫଳ ହେଉଛି ଦୃଢ଼ ମାନସିକ ଶକ୍ତି । ଆମେ ଜାଣୁ ଯେ ବିକ୍ଷପ୍ତି ସୂର୍ଯ୍ୟରଶ୍ମିରେ ଅଧିକ ତେଜ ନ ଥାଏ । ମାତ୍ର ସୂର୍ଯ୍ୟରଶ୍ମିର ଆଭାସବୁ ଲେନ୍‌ସ ମଧ ଦେଇ ଗତି କଲେ ବିକ୍ଷିପ୍ତ ରଶ୍ମିସବୁ ଏକତ୍ରିତ ହୋଇ ଅଗ୍ନିର ଦାହିକା ଶକ୍ତି ଲାଭ କରେ । ଠିକ୍ ସେହିପରି ସଂଯମବିହୀନ ମାନସିକ ଶକ୍ତି ବିକ୍ଷିପ୍ତ, ନିଷ୍ଫଳ ଓ ଶକ୍ତିହୀନ । ମାତ୍ର ଆତ୍ମସଂଯମ ବଳରେ ମାନସିକ ଶକ୍ତି ଏକୀଭୂତ ହୋଇ ପ୍ରଚୁର ଶକ୍ତି ଲାଭ କରେ ଏବଂ ଅଭୀଷ୍ଟ ସାଧନରେ ସହାୟକ ହୁଏ ।

ଆତ୍ମସଂଯମ ଫଳରେ ଯେଉଁ ମାନସିକ ସ୍ଥିରତା ପ୍ରତିଷ୍ଠିତ ହୁଏ ତାହା ମନୁଷ୍ୟର ସ୍ମୃତିଶକ୍ତିକୁ ଗଭୀର କରେ । କେବଳ ସ୍ମୃତିଶକ୍ତି ନୁହେଁ, ବୁଦ୍ଧିମତ୍ତା ମଧ ଗଭୀର ହୁଏ । ଏହା ସହଜରେ ଅନୁମେୟ ଯେ ମଣିଷର ବୌଦ୍ଧିକ ଶକ୍ତି ଶୃଙ୍ଖଳିତ ନ ହେବା ପର୍ଯ୍ୟନ୍ତ ଏହା ଇତଃସ୍ତତଃ ଭିନ୍ନଭିନ୍ନ ଦିଗରେ ଗତିକରି କୁପରିଣତି ସୃଷ୍ଟି କରେ । ଅନ୍ୟପକ୍ଷରେ ଆତ୍ମସଂଯମ ଫଳରେ ସୃଷ୍ଟି ହୋଇଥିବା ସ୍ଥିରବୁଦ୍ଧି ଲକ୍ଷ୍ୟାଭିମୁଖୀ ହୁଏ । ଭ୍ରମାତ୍ମକ ବିଚାରଧାରାରେ ବଶବର୍ତ୍ତୀ ହୋଇ କେହି କେହି ସ୍ଥିରବୁଦ୍ଧିକୁ ବ୍ୟକ୍ତିଗତ ଉଦ୍ୟମହୀନତାର ଆଖ୍ୟା ଦିଅନ୍ତି । ମାତ୍ର ପ୍ରକୃତରେ ବୁଦ୍ଧିର ସ୍ଥିରତା ଜ୍ଞାନର ସ୍ଥିତି ଓ ବିସ୍ତୃତିକୁ ପରିବ୍ୟାପ୍ତ କରେ ।

ଶ୍ରୀମଦ୍ ଭଗବଦ୍ ଗୀତାରେ କୁହାଯାଇଛି ଯେ –

**''ପ୍ରସାଦେ ସର୍ବଦୁଃଖାନାଂ, ହାନିରସ୍ୟୋପଜାୟତେ ।**
**ପ୍ରସନ୍ନଚେତସୋ ହ୍ୟାଶୁ, ବୁଦ୍ଧିଃ ପର୍ଯ୍ୟବତିଷ୍ଠତେ ।।''**

ଆତ୍ମସଂଯମ ଓ ମାନସିକ ସ୍ଥିରତା ସଂପର୍କରେ ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରଶ୍ନଟି ହେଉଛି – ଏହାକୁ ହାସଲ କରାଯାଇପାରିବ କିପରି ? ଏହା ନିଶ୍ଚିତଭାବରେ ସାଧନାସାପେକ୍ଷ, ମାତ୍ର ଅସମ୍ଭବ ନୁହେଁ । ମନ ଯେ କେତେ ଅସ୍ଥିର ଏବଂ ଶୃଙ୍ଖଳା-ଭୀରୁ ତାହାର ବହୁଳ ଉଦାହରଣ ରହିଛି । ଭାରତୀୟ ଦର୍ଶନରେ ଆତ୍ମସଂଯମ ପାଇଁ

ବିବିଧ ପନ୍ଥାର ଅବତାରଣା କରାଯାଇଛି । ସେସବୁ ବିସ୍ତୃତ ବିଚାର ଏଠାରେ ସମ୍ଭବ ନ ହେଲେ ମଧ୍ୟ ଗୋଟିଏ ବିଷୟରେ ଉପଯୋଗୀ ସୂଚନା ଦିଆଯାଇପାରେ । ବହୁ ଲକ୍ଷ୍ୟର ଆକର୍ଷଣ ଓ ଆସକ୍ତି ଆମକୁ ଦିଗଭ୍ରଷ୍ଟ କରିବାର ସମ୍ଭାବନା ଥାଏ । ଅନ୍ୟପକ୍ଷରେ ଆମର ମନପ୍ରାଣରେ ଗୋଟିଏ ଲକ୍ଷ୍ୟର ଦିଗବାରେଣୀ ଆମର ଯାତ୍ରାପଥକୁ ଶୃଙ୍ଖଳିତ କରେ ।

ପୁଣି କେଉଁ ଲକ୍ଷ୍ୟଟି ଆମକୁ ସଦାଜାଗ୍ରତ ଏବଂ ସଦାନିବିଷ୍ଟ ରଖିପାରିବ ? ବୋଧହୁଏ ଏପରି ଏକ ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରଶ୍ନର ଆଶଙ୍କା କରି ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ସମାଧାନର ବାଟ ବତାଇଥିଲେ । ସମଗ୍ର ମନପ୍ରାଣ ଚେତନାରେ ଭଗବାନଙ୍କୁ ସଂସ୍ଥାପନ କଲେ ଅଣାୟତ୍ତ ମନ ଧୀରେ ଧୀରେ ତାହାର ସମସ୍ତ ଚଞ୍ଚଳତା ହରାଇ ଏକାଗ୍ରତାର ବଂଧନରେ ବାନ୍ଧିହୋଇଯିବ ।



# ସେବା ସାଧନା

ସେବା ଆଧ୍ୟାତ୍ମିକ ସାଧନାର ଏକ ପ୍ରକୃଷ୍ଟ ମାର୍ଗ । ସାଧନା ସହିତ ସଂଶ୍ଳିଷ୍ଟ ମାଧ୍ୟମଗୁଡ଼ିକର କଥା କହିଲା ବେଳେ ସାଧାରଣତଃ ସତ୍‌ସଂଗ, ସ୍ୱାଧ୍ୟାୟ, ଧ୍ୟାନ ଓ ଧାରଣାର ବିଷୟ ମନକୁ ଆସିଥାଏ । ଏ ଦୃଷ୍ଟିରୁ 'ସେବା' ଏକ ସମପର୍ଯ୍ୟାୟଭୁକ୍ତ ସାଧନା କୌଶଳ ବୋଲି ଅନୁଭବ ଆସି ନ ଥାଇପାରେ । ମାତ୍ର ଗଭୀରଭାବେ ଅନୁଶୀଳନ କଲେ ଉପଲବ୍ଧି ହୁଏ ଯେ ଈଶ୍ୱରଙ୍କ ସହିତ ଅଭେଦତ୍ୱ ଅନୁଭବ କରିବା ପାଇଁ ସେବା ଏକ ସୁନ୍ଦର ମାଧ୍ୟମ ।

ବାହ୍ୟଦୃଷ୍ଟିକୋଣରୁ ବିଚାର କଲେ ଦେଖାଯିବ ଯେ ସେବାକାରୀ ବ୍ୟକ୍ତି ଅନ୍ୟର କାର୍ଯ୍ୟ ବା ଅନ୍ୟର ସେବା କରୁଛି । କିନ୍ତୁ ସୂକ୍ଷ୍ମଭାବରେ ଦେଖିଲେ ଜାଣିହେବ ଯେ ସେବାକାରୀ ବ୍ୟକ୍ତି ନିଜର ଆତ୍ମିକ ବିକାଶ ପାଇଁ ହିଁ କାର୍ଯ୍ୟ କରୁଛି । ଏପରି କାର୍ଯ୍ୟ ଗୋଟିଏ ସ୍ଥପତିଶିଳ୍ପୀର କାର୍ଯ୍ୟ ସହିତ ତୁଳନୀୟ । ପଥରରେ ଖୋଦେଇ କରି ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ ମୂର୍ତ୍ତି ତିଆରି କରୁଥିବା ଶିଳ୍ପୀର କାର୍ଯ୍ୟ ଦେଖି କେହି କେହି ହୁଏତ କହିପାରନ୍ତି ଯେ ଅନ୍ୟମାନଙ୍କୁ ଆନନ୍ଦ ଦେବାପାଇଁ ସେ ଏପରି କରୁଛି । ଏହା କିଛିମାତ୍ରାରେ ସତ । କିନ୍ତୁ ପଥରରୁ ଅଳ୍ପ ଅଳ୍ପ କରି ଅଦରକାରୀ ଅଂଶ ବାହାର କରି ଦେଉଥିବା ସମୟରେ ଶିଳ୍ପୀ ନିଜେ ମଧ୍ୟ ଏପରି ଅପରୂପ ସୌନ୍ଦର୍ଯ୍ୟଧାରୀ ମୂର୍ତ୍ତିଟି ଲୁକ୍କାୟିତ ରହିଥିଲା ବୋଲି ଆବିଷ୍କାର କରି ଗଭୀର ଆତ୍ମତୃପ୍ତି ଲାଭ କରେ । ଠିକ୍ ସେହିପରି ସେବାକାରୀର ଯତ୍ନ ଫଳରେ ହୁଏତ ଅନ୍ୟମାନେ କିଛି ପରିମାଣରେ ଉପକୃତ ହୁଅନ୍ତି, କିନ୍ତୁ ସେବାକାରୀ ନିଜେ ମଧ୍ୟ ଅଜସ୍ର ଆତ୍ମପ୍ରସାଦ ଅନୁଭବ କରେ ।

ସେବା ମାଧ୍ୟମରେ ବ୍ୟକ୍ତି ଜୀବାତ୍ମା ଓ ପରମାତ୍ମାଙ୍କ ମଧ୍ୟରେ ଅଭେଦତ୍ୱ ଅନୁଭବ କରେ । କହିବା ଅନାବଶ୍ୟକ ଯେ ମାନବ ହୃଦୟରେ ଅଧିଷ୍ଠିତ ଈଶ୍ୱରଙ୍କୁ ଅନୁଭବ କରିବା ହିଁ ଆଧ୍ୟାତ୍ମିକ ସାଧନାର ମୌଳିକ ଲକ୍ଷ୍ୟ । କେନ ଉପନିଷଦରେ କୁହାଯାଇଛି ଯେ ଭଗବାନ୍ ଖୁବ୍ ଦୂରରେ, ଅଥଚ ଖୁବ୍ ପାଖରେ । ମନୁଷ୍ୟର ହୃଦୟ କନ୍ଦର ହିଁ ତାଙ୍କର ବିଶ୍ରାମସ୍ଥଳୀ । ଏପରି ଆଧ୍ୟାତ୍ମିକ ଅନୁଭୂତିକୁ ସାକାର ରୂପ ଦେବାପାଇଁ ସାଧକ ବହୁ ପ୍ରୟାସ କରିଥାଏ । ସେବା ମାଧ୍ୟମରେ ଏହି ଆଧ୍ୟାତ୍ମିକ ଅନୁଭୂତି ପରିପକ୍ୱ

ହୁଏ । 'ଶିବ' ଭାବି 'ଜୀବ'ର ସେବା କରୁ କରୁ ଜୀବ ଓ ଶିବର ଏକତ୍ୱ ତା' ହୃଦୟରେ ଅଂକୁରିତ, ବିକଶିତ ଏବଂ ଦୃଢ଼ୀଭୂତ ହୋଇଥାଏ ।

ଈଶ୍ୱରପ୍ରୀତିର ଏକ ବାସ୍ତବ ପରିପ୍ରକାଶ ହେଉଛି ମାନବ ପ୍ରୀତି । ମନୁଷ୍ୟକୁ ଈଶ୍ୱରଙ୍କଠାରୁ ପୃଥକ୍ କରି ରଖିଥିବା 'ମାୟା' ବିଭେଦତ୍ୱର ଓ ବିଭିନ୍ନତାର ଅନୁଭୂତି ସୃଷ୍ଟି କରିଥାଏ । ମାତ୍ର ଜଗତର ଦୁଃଖ ଏବଂ ଅନ୍ୟର ଆର୍ତ୍ତି ଦେଖି ବ୍ୟକ୍ତି ଅନ୍ୟଆଡ଼କୁ ସେବା ମନୋଭାବ ନେଇ ଯେତିକି ଅଗ୍ରସର ହୁଏ ମାୟାର ଜାଲ ସେତିକି ଦ୍ରୁତ ଗତିରେ ଛିଡ଼ିବାକୁ ଲାଗେ । ଫଳରେ ସେବକ ମନୁଷ୍ୟ ମନୁଷ୍ୟ ମଧ୍ୟରେ ଥିବା ସଂପର୍କକୁ ଗଭୀରତାର ସହିତ ଉପଲବ୍ଧି କରେ । ମନୁଷ୍ୟ ଜାତି ପ୍ରତି ଏପରି ଭ୍ରାତୃଭାବ ହିଁ ଆଧ୍ୟାତ୍ମିକ ପ୍ରଗତିର ସ୍ପଷ୍ଟ ସୂଚକ । ଈଶ୍ୱରଙ୍କ ସହିତ ଅଭେଦତ୍ୱ ଅନୁଭବ କରିବାର ସୁଗମ ଉପାୟ ।

ସ୍ଥପତି ଶିଳ୍ପୀ ନିଜର ନିହାଣ ମୁନରେ ପଥରରୁ ଅଦରକାରୀ ଅଂଶସବୁ କାଢ଼ିନେଲା ପରି ସେବାକାରୀ ସେବା ମାଧ୍ୟମରେ ବହୁ ଅବାଂଛିତ ପ୍ରତିବଂଧକସବୁ ଦୂର କରେ । ସାଧକର ପ୍ରଥମ ଶତ୍ରୁ ହେଉଛି ତାହାର ଅହଂକାର । ମଣିଷର ଅହଂକେନ୍ଦ୍ରୀ ମନ ଭାବରାଜିରେ ସୀମାରେଖା ଟାଣିଥାଏ । ବ୍ୟକ୍ତି ନିଜର ଜନ୍ମ, ପ୍ରତିପତ୍ତି, ସମ୍ମାନ ଓ କୃତ୍ରିମ ପଦବୀସବୁକୁ ବିରାଟ ବିରାଟ ସମ୍ବଳ ମନେକରି ଅହଂଭାବପନ୍ନ ହୋଇଥାଏ । ଏହା ନିଶ୍ଚିତ ଭାବରେ ଈଶ୍ୱର ଉପଲବ୍ଧିର ସମ୍ଭାବନାକୁ ନଷ୍ଟ କରେ । ଅନ୍ୟପକ୍ଷରେ ଅନ୍ୟର ଦୁଃଖଦୁର୍ଦ୍ଦଶାରେ ସହାନୁଭୂତି ଓ ସମାନାଭୂତି (Empathy) ନେଇ ସେବାକାର୍ଯ୍ୟରେ ଆଗେଇ ଆସୁଥିବା ବ୍ୟକ୍ତିର ଅହମିକା ଧୀରେ ଧୀରେ ମିଳେଇବାକୁ ଲାଭ କରିବାକୁ ସମର୍ଥ ହୁଏ ।

ସେବା ପଥରେ ବ୍ରତୀ ହେଉଥିବା ବ୍ୟକ୍ତିର ଆତ୍ମସଂଯମ ମଧ୍ୟ ବୃଦ୍ଧି ପାଏ । ଅନ୍ୟର ଦୁଃଖରେ ବିଗଳିତ ହେଉଥିବା ବ୍ୟକ୍ତି ନିଜର ବ୍ୟକ୍ତିଗତ ସୁଖର ଯୋଜନା କରିବ କେତେବେଳେ ? ଅନ୍ୟର ଆର୍ତ୍ତିରେ ସମଦୁଃଖୀ ହେଉଥିବା ମଣିଷ ନିଜର ଇନ୍ଦ୍ରିୟ ତୃପ୍ତି ପାଇଁ ଯତ୍ନଶୀଳ ହେବ କେଉଁ ସମୟରେ ? ଅନ୍ୟର ଦୁଃଖହରଣ ପାଇଁ ଚିର ସକ୍ରିୟ ଥିବା ବ୍ୟକ୍ତି ନିଜର ସ୍ୱାର୍ଥସାଧନ ପାଇଁ କର୍ମତତ୍ପର ହେବ କେଉଁ ଯୁକ୍ତିରେ ? ସୁତରାଂ ନିଜର ଭୋଗ ଲାଳସାକୁ କମାଇବା ପାଇଁ ଯୋଜନା କରିବା ପରିବର୍ତ୍ତେ ସେବା ସାଧନା ପଥର ପଥିକ ହୋଇ ଇନ୍ଦ୍ରିୟ ବାସନାକୁ ପ୍ରତିରୋଧ କରିବା ସହଜ ହୁଏ । ବ୍ୟକ୍ତିଗତ କାମନାର ସୀମାଙ୍କନ କରି ବୈରାଗ୍ୟଭାବର ଅନୁଗତ ହେବା ସମ୍ଭବ ହୁଏ । ଇନ୍ଦ୍ରିୟ ଆସକ୍ତିକୁ ପ୍ରତିହତ କରି ଈଶ୍ୱର ଅନୁରକ୍ତି ବୃଦ୍ଧି କରିବା ସହଜ ହୁଏ ।

ପ୍ରକୃଷ୍ଟ ସେବା ପାଇଁ ଅନୁକୂଳ ମାନସିକତା ପ୍ରୟୋଜନ । ବ୍ୟକ୍ତିଗତ ସ୍ୱାର୍ଥ ଏବଂ ଅର୍ଥକାରୀ ଉଦ୍ଦେଶ୍ୟ ରଖି ଅନ୍ୟର ଉପକାର କରିବା ସେବା ପଦବାଚ୍ୟ ନୁହେଁ । ପୁଣି ସେବା କଲାବେଳେ କାର୍ଯ୍ୟର ପରିମାଣ ଅପେକ୍ଷା ସେବାକାର୍ଯ୍ୟରେ ଅନ୍ତରାଳରେ ଥିବା ମନୋବୃତ୍ତି ଗୁରୁତ୍ୱପୂର୍ଣ୍ଣ । ସେବାର ପରିମାଣାତ୍ମକ ଦିଗ ଅପେକ୍ଷା ଏହାର ଗୁଣାତ୍ମକ ଦିଗ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ । ମନର ନିର୍ମଳତା, ହୃଦୟର ଶୁଦ୍ଧତା ଏବଂ ଲକ୍ଷ୍ୟର ପବିତ୍ରତା ହିଁ ସେବାକୁ 'ଆଧ୍ୟାତ୍ମିକ ଶୃଙ୍ଖଳା'ର ମର୍ଯ୍ୟାଦା ଦେଇଥାଏ ।

ଅନ୍ୟ ଭାଷାରେ କହିଲେ ସେବା ଏକ ପ୍ରକାଶ୍ୟ ରୂପ ହେଲେ ତାହାର ପ୍ରଚ୍ଛନ୍ନ ପ୍ରେରକ ହେଉଛି ପ୍ରେମ । ଅନ୍ୟ ପ୍ରତି ପ୍ରେମଭାବ ପ୍ରକଟିତ କରିବାର ଗଭୀର ଇଚ୍ଛାରୁ ହିଁ ସେବା ରୂପ ନିଏ । ପ୍ରକୃତ ସେବକ କେବଳ ଦେଇଚାଲେ । ପାଇବାର ଇଚ୍ଛା ତାକୁ କବଳିତ କରି ନଥାଏ ।

ଏ କ୍ଷେତ୍ରରେ ଶିରିଡ଼ି ସାଇବାବା ନିଜ ଜୀବନ ଇତିହାସ ମଧ୍ୟରେ ଲୋକଶିକ୍ଷା ଦେଇଚାଲିଥିଲେ । ଆର୍ତ୍ତର ଦୁଃଖ ହରଣ ପାଇଁ ନିଜର ଶରୀରରେ କଷ୍ଟକୁ ଗ୍ରହଣ କରିନେବା ଅନ୍ୟର ମନଦୁଃଖ ନାଶିବା ପାଇଁ ସଚେଷ୍ଟ ରହିବା ଏବଂ ଅନ୍ୟ ମନରେ ସୁଖ ସଂଚାର ପାଇଁ ଅନୁରୂପ ଉପାୟ କରିବା ତାଙ୍କ ଦୈନନ୍ଦିନ ଜୀବନର ଏକ ଅଂଶ ଥିଲା । ସେ ସେବା କେବଳ ମନୁଷ୍ୟ ଜଗତ ମଧ୍ୟରେ ସୀମିତ ନ ରହି ପ୍ରାଣୀଜଗତ ପ୍ରତି ପ୍ରସାରିତ ହୋଇଥିଲା । ସଦାପ୍ରବାହିତ ନିର୍ଝରଣୀ ଅନ୍ୟକୁ ଜଳପ୍ରଦାନ କରି ନିଜକୁ ଶୁଭ୍ରସତେଜ ରଖିଲା ପରି ଅନ୍ୟର ଆବଶ୍ୟକତା ପୂରଣ କରିବା ମାଧ୍ୟମରେ ମାନବ ଜୀବନର ସାର୍ଥକତାକୁ ଅନୁଭବ କରିବାର ଶିକ୍ଷା ଅବତାର ପୁରୁଷ ଶିରିଡ଼ି ସାଇବାବା ଦେଇଯାଇଛନ୍ତି । ଅନ୍ୟଠାରୁ କୌଣସି ପ୍ରତିଦାନର ଆଶା ନ ରଖି ଜଗତର କଲ୍ୟାଣ ପାଇଁ କାର୍ଯ୍ୟକରି ଯିବାର ଅନନ୍ୟ ଦୃଷ୍ଟାନ୍ତ ସେ ଆମ ପାଖରେ ରଖିଯାଇଛନ୍ତି ।

ଭଗବଦ୍ କୃପା ଲାଭ ପାଇଁ ସେବା ଏକ ଅମୋଘ ଆୟୁଧ । ଆମେ ଭଗବାନଙ୍କୁ କେତେ ଭଲପାଉଛୁ, ତା'ଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ହେଉଛି ଭଗବାନ ଆମକୁ କେତେ ଭଲ ପାଉଛନ୍ତି । ପୁଣି ଭଗବାନଙ୍କର ପ୍ରୀତିଲାଭ ପାଇଁ ଆବଶ୍ୟକ ହେଉଛି ତାଙ୍କର ପ୍ରୀତିପଦ କାର୍ଯ୍ୟ କରିବା । ଭଗବାନଙ୍କ ନିର୍ଦ୍ଦେଶିତ ଓ ପ୍ରଦର୍ଶିତ ପନ୍ଥାରେ କାର୍ଯ୍ୟ ନ କରି ଆମେ ବିଭୁକୃପା ଲାଭ କରିବୁ ବା କିପରି ? ସୁତରାଂ ଭଗବାନଙ୍କର କୃପା ଲାଭ କରିବାକୁ ହେଲେ ତାଙ୍କ ସୃଷ୍ଟ ଜଗତ ଓ ଜୀବ ଜଗତର ମଙ୍ଗଳ କରିବାରେ ନିଜକୁ ଉତ୍ସର୍ଗ କରିବା ହିଁ ଯୁକ୍ତିଯୁକ୍ତ ।

ପୁଣି ସେବାକୁ ସାଧନାର ମର୍ଯ୍ୟାଦା ଦେବ । ଏ ପରିପ୍ରେକ୍ଷୀରେ ମନେ ରଖିବା ଉଚିତ୍ ଯେ ଅନ୍ୟାନ୍ୟ ସାଧନା ମାର୍ଗ ପରି ସେବା କ୍ଷେତ୍ରରେ ମଧ୍ୟ ପ୍ରତିବଂଧକ ରହିଛି । ସେବାର ସଂକଳ୍ପ ନେଇ କାର୍ଯ୍ୟ କଲାବେଳେ ବ୍ୟର୍ଥତା ଆସିପାରେ, ଅନ୍ୟର କଟୂ ସମାଲୋଚନାର ଶରବ୍ୟ ହୋଇପାରୁ, ନିଜର ଶାରୀରିକ ଓ ମାନସିକ ଯନ୍ତ୍ରଣା ମଧ୍ୟ ସୃଷ୍ଟି ହୋଇପାରେ । ମାତ୍ର ହୃଦୟ ମଧ୍ୟରେ ସେବା ମନୋଭାବକୁ ପ୍ରତିଷ୍ଠା କରିନଥିବା ଦୁର୍ବଳମନା ବ୍ୟକ୍ତି ସବୁକ୍ଷେତ୍ରରେ ସାଧନା ପଥରୁ ବିଚ୍ୟୁତ ହୁଏ । ସେବାକାର୍ଯ୍ୟ ପରିତ୍ୟାଗ କରି ଅନ୍ୟତ୍ର ଲାଭଜନକ ପନ୍ଥା ଖୋଜେ । ମାତ୍ର ପ୍ରକୃତ ସାଧକ ସେବାପଥରୁ ବିଚ୍ୟୁତ ହୁଏ ନାହିଁ । ଅନ୍ୟର ସମାଲୋଚନା ସାଧକର ଅମହିକାକୁ ନଷ୍ଟ କରି ଜୀବନକୁ ସାଧନାଦୀପ୍ତ କରେ । ସାମୟିକ ବିଫଳତା ତା'ମନରେ ଅଧ୍ୟବସାୟ ମନୋଭାବ ଆଣେ, ଶାରୀରିକ ମାନସିକ ପୀଡ଼ା ବ୍ୟକ୍ତିର ସଂକଳ୍ପକୁ ଦୃଢ଼ତର କରାଏ । ମନର ଦୁର୍ବଳତା କାଟି ମାନସିକ ଶକ୍ତିଗଠନ ପାଇଁ ସେବା ପ୍ରସ୍ତୁତିପର୍ବର ସହାୟକ ହୁଏ ।

ପରିଶେଷରେ କୁହାଯାଇପାରେ ଯେ ସେବାପାଇଁ ବ୍ୟକ୍ତି ନିଜର ସେବାର କ୍ଷେତ୍ର ଅନ୍ୱେଷଣ କଲାବେଳେ ନିଜର ଶକ୍ତି ସାମର୍ଥ୍ୟର ମୂଲ୍ୟାୟନ କରିବା ବିଧେୟ । ସେବାପାଇଁ ଉତ୍ସାହ ଯେପରି ଆବଶ୍ୟକ ବୁଦ୍ଧିମତ୍ତା ମଧ୍ୟ ସେପରି ପ୍ରୟୋଜନ । ବ୍ୟକ୍ତିର ଶକ୍ତି, ସାମର୍ଥ୍ୟ ଓ କାର୍ଯ୍ୟକୁଶଳତା ଯେଉଁ କ୍ଷେତ୍ରରେ ରୂପ ନେଇଛି, ସେ କ୍ଷେତ୍ରରେ ବ୍ୟକ୍ତି ନିଜ ସାମର୍ଥ୍ୟର ଉପଯୋଗ କରିବା ଉଚିତ ହେବ । ମାତ୍ରାଧିକ ଉତ୍ସାହ ନେଇ ସଂପୂର୍ଣ୍ଣ ଅପରିଚିତ କ୍ଷେତ୍ରରେ ସେବାକାର୍ଯ୍ୟ କଲେ ଅନୁରୂପ ସାର୍ଥକତା ନ ମିଳିପାରେ । ସୁତରାଂ ଆତ୍ମସମୀକ୍ଷା କରି ନିଜର ସେବାର କ୍ଷେତ୍ର ବାଛିନେବା ଶ୍ରେୟସ୍କର ।

ସେବା ମାଧ୍ୟମରେ ଈଶ୍ୱରଙ୍କୁ ସନ୍ତୁଷ୍ଟ କରିବାର ଅଧିକ ସୁଯୋଗ ମିଳେ । ପୂଜାର୍ଚ୍ଚନା ଦ୍ୱାରା ଯାହା ସମ୍ଭବ ନୁହେଁ, ସେବା ଫଳରେ ତାହା ସହଜସାଧ୍ୟ ହୁଏ । ସେବାର କଷଟିପଥରେ ପବିତ୍ରୀଭୂତ ହେଇଥିବା ମଣିଷ ଭଗବାନଙ୍କ ଆଡ଼କୁ ଅଗ୍ରସର ହୁଏ । ନିଃସ୍ୱାର୍ଥ ସେବା ଶୀର୍ଷ ବିନ୍ଦୁରେ ପହଞ୍ଚିଲେ ମନୁଷ୍ୟ ଭଗବାନଙ୍କ ସହିତ ଅଭେଦତ୍ୱ ଉପଲବ୍ଧି କରି ମୁକ୍ତିର ଆନନ୍ଦ ଅନୁଭବ କରେ ।



# ସାଇବାବାଙ୍କ ପ୍ରଖ୍ୟାପିତ ଜ୍ଞାନମାର୍ଗ

ଅନାପେକ୍ଷିକ ସତ୍ୟର ଉପଲବ୍ଧି ପାଇଁ ଯେଉଁ ସବୁ ମାର୍ଗ ଉନ୍ମୁକ୍ତ; ସମୟର ଦୀର୍ଘ ପ୍ରବାହ ସେ ସବୁ ମାର୍ଗରେ ବାଲିର ଆସ୍ତରଣ ସୃଷ୍ଟିକରି ପଥସବୁକୁ ଅସ୍ପଷ୍ଟ କରିପକାଏ । ମାନବୀୟ ଦୁଷ୍କୃତି ଓ ଦୁର୍ବଳତାର କଣ୍ଟାଝଣ୍ଟା ଦୁର୍ଗମତାର ସଙ୍କେତ ଦିଏ । କେତେକ ସ୍ୱାର୍ଥାନ୍ୱେଷୀ ବ୍ୟକ୍ତି ସେମାନଙ୍କର ସ୍ୱାର୍ଥସାଧନ ପାଇଁ ମରୀଚିକା ସୃଷ୍ଟି କରି ପଥିକକୁ ଅଧିକ ବିଭ୍ରାନ୍ତ କରନ୍ତି । ଏ ସବୁ ପ୍ରତିବନ୍ଧକ ସାଧନାମୁଖୀ ମନୁଷ୍ୟକୁ ନିରୁତ୍ସାହିତ କରୁଥିଲାବେଳେ ପରମ କାରୁଣିକ ଈଶ୍ୱର ଧରାଧାମରେ ଅବତାର ଗ୍ରହଣ କରନ୍ତି ଏହିସବୁ ସାଧନାପଥକୁ ସୁସ୍ପଷ୍ଟ ଓ ଆବର୍ଜନାମୁକ୍ତ କରିବା ପାଇଁ । ଶିରିଡ଼ିର ଶ୍ରୀ ସାଇବାବା ଅବତାର ପୁରୁଷ ରୂପେ ସାଧନାପ୍ରିୟ ମନୁଷ୍ୟ ପାଇଁ ଈଶ୍ୱର ପ୍ରାପ୍ତିର ସୁସ୍ପଷ୍ଟ ମାର୍ଗ ନିର୍ଦ୍ଦେଶ କରିଛନ୍ତି ।

ମନୁଷ୍ୟର ପ୍ରାରବ୍‌ଧ ଓ ପରିବେଶ ଭିନ୍ନ ହୋଇଥିବାରୁ ପ୍ରତି ମନୁଷ୍ୟ ପାଇଁ ଉପଯୋଗୀ ପନ୍ଥା ମଧ୍ୟ ଭିନ୍ନ ହୋଇଥାଏ । ସୁଦକ୍ଷ ଚିକିତ୍ସକ ରୋଗୀର ବ୍ୟକ୍ତିତ୍ୱ ଓ ବିଶେଷତ୍ୱକୁ ଲକ୍ଷ୍ୟକରି ଔଷଧ ନିର୍ବାଚନ କଲାପରି ମାନବ ହିତୈଷୀ ଭଗବାନ ପ୍ରତ୍ୟେକ ମନୁଷ୍ୟର ଉପଯୋଗୀ ହେଲାପରି ସାଧନାର ପଥ ନିର୍ଦ୍ଦେଶ କରନ୍ତି । ଅବଶ୍ୟ ସାଧନା ପାଇଁ ବ୍ୟକ୍ତିର ବ୍ୟାକୁଳତା ଥିବା ପ୍ରାଥମିକ ଯୋଗ୍ୟତା । ଏ ଦୃଷ୍ଟିରୁ ଭଗବାନ କୌଣସି କୌଣସି ବ୍ୟକ୍ତିଙ୍କ ପାଇଁ ଜ୍ଞାନର ମାର୍ଗ ଦର୍ଶାଇବା ସ୍ଥଳେ ଅନ୍ୟ ପାଇଁ ଭକ୍ତିର ପଥ ନିର୍ଦ୍ଦେଶ କରିପାରନ୍ତି ।

ଭଗବାନ ଶ୍ରୀକୃଷ୍ଣ ମୋହଗ୍ରସ୍ତ ଅର୍ଜୁନର ଶିକ୍ଷାଲାଭ ପାଇଁ ସଂଖ୍ୟାଧିକ ଯୋଗର ପ୍ରଖ୍ୟାପନ କଲାଭଳି ଅବତାର ପୁରୁଷ ଶ୍ରୀ ଶିରିଡ଼ି ସାଇ ଆମ ସମସ୍ତଙ୍କ ପାଇଁ ଏକାଧିକ ମାର୍ଗ ଦର୍ଶନ କରାଇଛନ୍ତି । ମନୁଷ୍ୟ ନିଜର ସତ୍ତା ସଂପର୍କରେ ସଚେତନ ହୋଇ ଭଗବଦ୍ ଉପଲବ୍ଧି କରିବାର ଲକ୍ଷ୍ୟ ପୂରଣ ପାଇଁ ଶ୍ରୀ ସାଇବାବା ଜ୍ଞାନମାର୍ଗ ପ୍ରଖ୍ୟାପନ କରିଥିଲେ । ଜ୍ଞାନମାର୍ଗ ଭାରତୀୟ ଦର୍ଶନ ଓ ବେଦବେଦାନ୍ତ ଉପରେ ପ୍ରତିଷ୍ଠିତ, ତଥାପି ନିଜସ୍ୱ ପ୍ରତୀକ ଜୀବନଧର୍ମୀ ଉଦାହରଣ ଓ ଆଚରଣ ମାଧ୍ୟମରେ ସାଇବାବା ତାଙ୍କର ଅନୁଗତମାନଙ୍କୁ ଯେପରି ବୁଝାଉଥିଲେ, ତାହା ବିଶେଷ ପ୍ରଣିଧାନ ଯୋଗ୍ୟ ।

'ଜ୍ଞାନ' ଶବ୍ଦଟି ମୂଳଧାତୁ ରୂପ 'ଜ୍ଞାନ'ରୁ ସୃଷ୍ଟ ହୋଇଥିବାରୁ ଜ୍ଞାନ କହିଲେ ଜାଣିବା, ବୁଝିବା, ଅନୁଶୀଳନ କରିବା, ଅନୁଭବ କରିବା ଏବଂ ଉପଲବ୍ଧି କରିବାକୁ ବୁଝାଏ । ଆଧ୍ୟାତ୍ମିକ ଅନ୍ତର୍ଦୃଷ୍ଟି ହିଁ ଜ୍ଞାନର ମୂଳକଥା । ଅସତ୍ୟ ଓ ସତ୍ୟପରି ପ୍ରତୀୟମାନ ହେଉଥିବା ବସ୍ତୁଠାରୁ ପ୍ରକୃତ ସତ୍ୟକୁ ଚିହ୍ନିବା ଏବଂ ଅନୁଭବ କରିବା ଜ୍ଞାନଲାଭ ପ୍ରକ୍ରିୟାର ବିଶେଷତ୍ୱ ।

ଜ୍ଞାନ ସହିତ ଯଜ୍ଞର ଏକ ସମୀକରଣ ରହିଛି । ଯଜ୍ଞରେ ଆହୁତି ଦିଆଗଲା ପରି ଜ୍ଞାନଲାଭ ପ୍ରକ୍ରିୟାରେ 'ମୁଁତ୍ୱ' କୁ ବଳି ଦିଆଯାଏ । ସତ୍ୟର ଉପଲବ୍ଧି ପାଇଁ ଅହମିକାକୁ ବଳିଦେଇ ସାଧନାପଥରେ ଅଗ୍ରସର ହେବାକୁ ପଡ଼େ । ଅନ୍ୟ ଏକ ଦୃଷ୍ଟିକୋଣରୁ ବିଚାର କଲେ ଜ୍ଞାନ ଧୀରେ ଧୀରେ ଆସି ବ୍ୟକ୍ତି ସମକ୍ଷରେ ଉପସ୍ଥିତ ହୁଏ ନାହିଁ । ଏହି ଜ୍ଞାନ ବ୍ୟକ୍ତି ସହିତ ରହିଥାଏ । ମାତ୍ର ଅଜ୍ଞାନର ଆବରଣ ଭେଦକରି ବ୍ୟକ୍ତି ଏହି ନିରାଟ ଓ ଅନାପେକ୍ଷିକ ସତ୍ୟକୁ ଦେଖିପାରେ ନାହିଁ । ସାଧନା ବଳରେ ଅବିଦ୍ୟା ଅନ୍ଧକାର ଦୂର ହୋଇଗଲେ ଏବଂ ଅମହିକାର ବଂଧନ ଖୋଲିଗଲେ ବ୍ୟକ୍ତି ଚିରନ୍ତନ ସତ୍ୟକୁ ଉପଲବ୍ଧି କରେ । ଏହା ହିଁ ଜ୍ଞାନମାର୍ଗର ଲକ୍ଷ୍ୟବିନ୍ଦୁ ।

## ସାଧନାର ମାର୍ଗ

ଜ୍ଞାନଲାଭ ମାଧ୍ୟମରେ ଭଗବାନଙ୍କ ସହିତ ସଂଯୋଗ ସ୍ଥାପନ କରିବା ପାଇଁ ସାଧକଙ୍କୁ ଯେଉଁ ସମସ୍ତ ଯୋଗ୍ୟତା ହାସଲ କରିବାକୁ ହୁଏ, ସେ ସଂପର୍କରେ ସାଇ ବାବା ସୂଚନା ଦେଉଥିଲେ । ବ୍ରହ୍ମସୂତ୍ରର ଟୀକାରେ ଆଦି ଶଙ୍କର ଯେଉଁ ସାଧନା ଚତୁଷ୍ଟୟର ଉଲ୍ଲେଖ କରିଛନ୍ତି ଥରେ ବାବା ସେ ସବୁର ଗୁରୁତ୍ୱ ଶ୍ରୀ ଏନ୍.ଜି. ଚନ୍ଦ୍ରକର୍‌ଙ୍କୁ ବୁଝାଇଥିଲେ ।

ବାବା କହିଥିଲେ ଜ୍ଞାନଲାଭ ପାଇଁ ନିତ୍ୟ-ଅନିତ୍ୟ ବିଚାର, ବୈରାଗ୍ୟ, ସମ ଓ ମୁମୁକ୍ଷୁତ୍ୱ ଆବଶ୍ୟକ । ପ୍ରଥମ ହେଉଛି ମୁମୁକ୍ଷତ୍ୱ । ମୋକ୍ଷ ବା ମୁକ୍ତିଲାଭ ପାଇଁ ପ୍ରାଣୀମାନଙ୍କଠାରେ ବ୍ୟାକୁଳତା ଥିବା ପ୍ରୟୋଜନ । ଏହା ଏକ କାମନା ହେଲେ ମଧ୍ୟ ଏହା ଏକ ସାତ୍ତ୍ୱିକ କାମନା । ଏପରି ସାତ୍ତ୍ୱିକ ଅଭିଳାଷ ନଥିଲେ ପ୍ରାଣୀ ସାଧନା ପଥରେ ଅଗ୍ରସର ହେବାପାଇଁ ମାନସିକ ବଳ ପାଇବ ନାହିଁ । ବ୍ରହ୍ମଜ୍ଞାନ ଲାଭ ପାଇଁ ମନୁଷ୍ୟ ସଚେଷ୍ଟ ହେବ, ବ୍ୟାକୁଳ ହେବ ଏବଂ ତତ୍‌ପରତା ପ୍ରକାଶ କରିବ । ଏପରି ଅଭିପ୍ରେରଣା ସାଧନା ପାଇଁ ପ୍ରଥମେ ଆବଶ୍ୟକ ।

ଦ୍ୱିତୀୟ ସୋପାନରେ ଜ୍ଞାନପିପାସୁ ବ୍ୟକ୍ତି ନିତ୍ୟ-ଅନିତ୍ୟ ବିଚାରରେ ପ୍ରଯତ୍ନଶୀଳ ହେବା ଦରକାର । ଜଗତରେ ଯେଉଁସବୁ ବସ୍ତୁ ଦୃଶ୍ୟମାନ ସେଥିରୁ

ଚିରସ୍ଥାୟୀ ଓ କ୍ଷଣସ୍ଥାୟୀ ବସ୍ତୁ ବାଛିବାକୁ ହେବ । ଜୀବନରେ କ'ଣ ନିତ୍ୟ ଓ ଶାଶ୍ୱତ, ତା'ର ଅନୁଶୀଳନ କରିବାକୁ ହେବ । ମିଥ୍ୟା ଓ ଅନିତ୍ୟ ବସ୍ତୁ ଓ ଘଟଣାକୁ ଚିହ୍ନଟ କରିବାକୁ ହେବ । କେବଳ ବହିର୍ମୁଖୀ ଭାବନା ଦ୍ୱାରା ଏପରି ସଫଳ ବିଚାର ସମ୍ଭବ ନୁହେଁ । ସୁତରାଂ ମନକୁ ଅନ୍ତର୍ମୁଖୀ କରାଇ ନିତ୍ୟ ଅନିତ୍ୟର ବିଶ୍ଳେଷଣ କରିବାକୁ ହେବ । ସ୍ଥାୟୀ, ଶାଶ୍ୱତ ଓ ଚିରନ୍ତନ ବସ୍ତୁର ଉପଲବ୍ଧି ପାଇଁ ସକ୍ରିୟ ହେବାକୁ ପଡ଼ିବ । ପାର୍ଥିବ ଓ ସାଂସାରିକ ପରିବେଶକୁ ଚିହ୍ନି ସେଥିରୁ ନିଜକୁ ନିବୃତ୍ତ କରି ଦିବ୍ୟତ୍ୱ ପଥରେ ଅଗ୍ରସର ହେବାର ସଂକଳ୍ପ ଏ ସାଧନାର ମୁଖ୍ୟ ଉପାଦାନ ।

ସାଧନାର ତୃତୀୟ ସୋପାନଟି ହେଉଛି ବୈରାଗ୍ୟ । କର୍ମଫଳ ଜନିତ ଆନନ୍ଦ ଓ ନିରାନନ୍ଦରୁ ନିଜକୁ ମୁକ୍ତ ରଖିବା ହିଁ ବୈରାଗ୍ୟ । ଅନାସକ୍ତ ଭାବରେ ସାଧନକକୁ ଅଗ୍ରସର ହେବାକୁ ହେବ । ପୁରସ୍କାର ପ୍ରାପ୍ତି ବା ଆଶାରେ ଉଲ୍ଲସିତ ହେବା ଏବଂ ଶାସ୍ତିଲାଭ ଆଶଙ୍କାରେ ଦୁଃଖିତ ହେବା ସାଧନା ବିରୋଧୀ । କୌଣସି ପୁରସ୍କାର ବା ଆନନ୍ଦ ପ୍ରାପ୍ତି ଆଶାରେ ନୁହେଁ, ସତ୍ୟର ଅନ୍ୱେଷଣ ପାଇଁ ସତ୍ୟର ସନ୍ଧାନ କରିବାକୁ ହେବ । ଏପରି ମନୋବୃତ୍ତିର ସାଧକର ବୈରାଗ୍ୟଭାବ ପ୍ରତିଫଳିତ ହେବ ।

ଚତୁର୍ଥ ସୋପାନଟି ହେଉଛି ସମ । ସମତ୍ୱ ଭାବାପନ୍ନ ହେବା ସାଧକ ପାଇଁ ନିତାନ୍ତ ପ୍ରୟୋଜନ । ମନ ଓ ଶରୀର ଅସ୍ଥିରତାର କାରଣ ହୋଇଥିବାରୁ ମାନସିକ ସଂଯମ ପ୍ରତିଷ୍ଠା କରି 'ସମ' ହାସଲ କରିବାକୁ ହେବ । ଏହି ସମତ୍ୱଭାବକୁ ପୂର୍ଣ୍ଣାଙ୍ଗ ରୂପ ଦେବାକୁ ହେଲେ ଶରୀରର ଇନ୍ଦ୍ରିୟସବୁର ସଂଯମ ପ୍ରତିଷ୍ଠା କରି 'ଦମ' ମଧ୍ୟ ହାସଲ କରିବାକୁ ହେବ । ସୁତରାଂ ମାନସିକ ସଂଯମ ଓ ଇନ୍ଦ୍ରିୟନିଗ୍ରହ ପରି ଦୁଇଟି ପରସ୍ପର ପରିପୂରକ ପ୍ରକ୍ରିୟା ଦ୍ୱାରା ସମତ୍ୱବୋଧ ହାସଲ କରିବାକୁ ହେବ ।

ବାବାଙ୍କ ଉପଦେଶ ଅନୁସାରେ ଏସବୁ ସୋପାନ ଅତିକ୍ରମ କରିବାକୁ ପ୍ରତ୍ୟେକ ବ୍ୟକ୍ତି ଉଦ୍ୟମ କରିବା ଆବଶ୍ୟକ । ମାତ୍ର ସାଧନାରେ ଆରମ୍ଭ କାଳରେ ଜ୍ଞାନର ଅଙ୍କୁରଣ ପାଇଁ "ମୁଁ କିଏ ?" "ମୁଁ କିଏ ?" ଏ ପ୍ରଶ୍ନ ଅବାରିତ ଭାବରେ ପଚାରିବାକୁ ହେବ । ମୋର ପ୍ରକୃତି କ'ଣ ? ମୁଁ କେଉଁଠାରୁ ଆସିଛି ? ମୋର ଗନ୍ତବ୍ୟସ୍ଥଳ କେଉଁଠି ? ନିରବଚ୍ଛିନ୍ନ ଭାବରେ ଏ ପ୍ରଶ୍ନସବୁ ପଚାରିବା ଦ୍ୱାରା ଜ୍ଞାନପାଇଁ ବ୍ୟାକୁଳତା ବୃଦ୍ଧିପାଇବ । ଏପରି ମୌଳିକ ପ୍ରଶ୍ନ ଉପରେ ଗୁରୁତ୍ୱ ଦେବା ପାଇଁ ଆଦିଶଙ୍କର ଓ ରମଣ ମହର୍ଷି ପରାମର୍ଶ ଦେଇଥିବା କଥା ପୂର୍ବ ଏକ ପ୍ରବଂଧରେ ଆଲୋଚନା କରାଯାଇଛି ।

ସାଧନାର ଚତୁର୍ଥ ସୋପାନାରେ – ମନର ନିୟନ୍ତ୍ରଣ ସଂପର୍କରେ ବାବା ଦେଇଥିବା ଉପଦେଶ ସାଧାରଣ ମନୁଷ୍ୟ ପକ୍ଷେ କଷ୍ଟସାଧ ବୋଲି ଦିବ୍ୟଦ୍ରଷ୍ଟା ବାବା ବୁଝିଥିଲେ । ସୁତରାଂ ମାନସିକ ସଂଯମର ଦୃଢ଼ତା ପାଇଁ ସସ୍ନେହ ପରାମର୍ଶ ଦେଇ କହୁଥିଲେ ଯେ ମନ ସ୍ୱଭାବତଃ ଅସ୍ଥିର । ସେ କହୁଥିଲେ ଯେ ମନ ମାଛିପରି ଅସ୍ଥିର । ମାଛି ଗୋଟିଏ ବସ୍ତୁ ଉପରେ ଅଳ୍ପକ୍ଷଣ ରହି ଅନ୍ୟ ଗୋଟିଏ ବସ୍ତୁ ଉପରକୁ ଉଡ଼ିଯାଏ । ବହୁ ଜିନିଷ ତାକୁ ଆକର୍ଷଣ କରେ । ମାତ୍ର ଅଗ୍ନିଠାରୁ ସେ ଦୂରେଇଯାଏ । ସେହିପରି ମନର ମଧ ବ୍ରହ୍ମ ଉପଲବ୍ଧି ନ ହେବା ପର୍ଯ୍ୟନ୍ତ ଅସ୍ଥିର ହୋଇ ବୁଲୁଥାଏ । ସତ୍ୟର ଉପଲବ୍ଧି ହେଲାପରେ ମନର ବିଚଳନ ରହେ ନାହିଁ ।

ମନର ସ୍ଥିରତା ସହିତ ସାକାର ଓ ନିରାକାର ଉପାସନା କଥା ଜଡ଼ିତ । ବାବା ସ୍ଥିର ମୂର୍ତ୍ତିପୂଜା ସପକ୍ଷରେ ମତଦେଇ କହନ୍ତି ଯେ ମନକୁ ଏକନିଷ୍ଠ କରିବା ପାଇଁ ମୂର୍ତ୍ତିପୂଜା ଏକ ସୁନ୍ଦର ମାଧମ । ମୂର୍ତ୍ତି ପୂଜାକୁ ଦୀର୍ଘ ମନେକରିବା ଅସଙ୍ଗତ । ଗଭୀର ଭକ୍ତି ସହକାରେ ମୂର୍ତ୍ତି ସ୍ଥାପନ କରି ହୃଦୟର ନୈବେଦ୍ୟ ଦେଇ ପୂଜାକଲେ ମନର ନିଷ୍ଠା ଓ ଏକାଗ୍ରତା ବୃଦ୍ଧିପାଏ । ମନର ଏକାଗ୍ରତା ବ୍ୟତୀତ ବ୍ରହ୍ମଜ୍ଞାନ ଲାଭ ସମ୍ଭବ ନୁହେଁ ।

ଅବଶ୍ୟ ବାବା ନିଜର ଅନୁଗତମାନଙ୍କୁ ବୁଝାଇଛନ୍ତି ଯେ ମୂର୍ତ୍ତି ବା ସାକାର ଉପାସନା ଦ୍ୱାରା ଲାଭ କରାଯାଇଥିବା ମାନସିକ ସ୍ଥିରତାକୁ ବୃହତ୍ତର ଲକ୍ଷ୍ୟରେ ପ୍ରୟୋଗ କରିବାକୁ ହେବ । ପରବର୍ତ୍ତୀ ସୋପାନରେ ଧ୍ୟାନ ଅବଲମ୍ବନ କରିବା ସମୁଚିତ ହେବ । ବାହ୍ୟବସ୍ତୁ ଓ ବାହ୍ୟସତ୍ତାର ଅନ୍ତରାଳରେ ଯେଉଁ ଆତ୍ମସତ୍ତା ବିଦ୍ୟମାନ ଓ ସର୍ବପ୍ରସାରିତ ସେ ବିଷୟରେ ନିରବଚ୍ଛିନ୍ନ ଭାବରେ ଧ୍ୟାନ କରିବା ଫଳରେ ଆତ୍ମବିଦ୍ୟାର ବିକାଶ ଘଟିବ, ବ୍ୟକ୍ତି ବ୍ରହ୍ମଜ୍ଞାନର ଅଧିକାରୀ ହେବ ।

ବାବାଙ୍କ ମତରେ ବ୍ରହ୍ମଜ୍ଞାନ ଲାଭପାଇଁ ଧ୍ୟାନ ନିତାନ୍ତ ଆବଶ୍ୟକ । କୌଣସି ରୂପକୁ ଦୃଷ୍ଟି ସମକ୍ଷରେ ସଂସ୍ଥାପନ କରି ସାକାର ଧ୍ୟାନ ଏବଂ ଆକାରହୀନ ନିରାକର ଧ୍ୟାନ ମଧ୍ୟରେ କୌଣସି ବିରୋଧ ନାହିଁ । କେବଳ ପ୍ରାଥମିକ ସ୍ତରରେ ରୂପହୀନ ଆନନ୍ଦର ଚିନ୍ତା ଓ ଧ୍ୟାନ କଷ୍ଟସାପେକ୍ଷ ହୋଇଥିବାରୁ ସାକାରଧ୍ୟାନ ବ୍ୟବହାରିକ ଦୃଷ୍ଟିକୋଣରୁ ଅଧିକ ଉପଯୋଗୀ ହୋଇଥାଏ । କ୍ରମାଗତ ଧ୍ୟାନ ଫଳରେ ସାଧକ ସମାଧି ଅବସ୍ଥାରେ ଉପନୀତ ହୁଏ । ଧ୍ୟେୟ ବସ୍ତୁ ଓ ଧ୍ୟାନକାରୀ ମଧ୍ୟରେ ବିଭେଦ ଲୋପପାଏ । ସେହିପରି ଧ୍ୟାନକାରୀ ଓ ଧ୍ୟାନ ମଧ ଏକୀଭୂତ ହୋଇପଡ଼ନ୍ତି । ପରିଣାମ ସ୍ୱରୂପ ''ଚେତନା ଚୈତନ୍ୟ'' ଉପଲବ୍ଧି ହୁଏ ।

ଧ୍ୟାନର ଗୁରୁତ୍ୱ ବୁଝାଉ ବୁଝାଉ ବାବା ବେଳେବେଳେ ବିହ୍ୱଳିତ ଅବସ୍ଥାରେ ମସ୍‌ଜିଦ୍‌ର ମିଶ୍ରି ପ୍ରସାଦ ଲୋକମାନଙ୍କୁ ମଧ୍ୟରେ ବିତରଣ କରି କହନ୍ତି – ''ଧ୍ୟାନ କରିବାରେ ତୁମ୍ଭମାନଙ୍କର ଆନନ୍ଦ ଉତ୍ସାହ ଜନ୍ମିଲେ ତୁମ୍ଭମାନଙ୍କର ମନପ୍ରାଣ ହୃଦୟ ଏହି ମିଶ୍ରିପରି ମଧୁମୟ ହେବ ।''

ଧ୍ୟାନର ସର୍ବୋଚ୍ଚ ସୋପାନଟିକୁ ବାବା ଆନନ୍ଦଧ୍ୟାନ ବୋଲି କହୁଥିଲେ । ବେଦାନ୍ତର ପରାମର୍ଶ ପରି ଶ୍ରବଣ, ମନନ ଓ ନିଧିଧ୍ୟାସନ ଏହି ଆନନ୍ଦ ଧ୍ୟାନର ତିନୋଟି ସୋପାନ ବୋଲି କହୁଥିଲେ । ଈଶ୍ୱରଙ୍କ ବିଷୟରେ ଆଧ୍ୟାତ୍ମିକ ଶ୍ରବଣ ମନକୁ ବିଭୁମୁଖୀ କରାଏ । ଏପରି ଶ୍ରବଣ ଭଗବାନଙ୍କର ନାମ ଶ୍ରବଣ, ଗୁଣ ଶ୍ରବଣ ବା ଲୀଳାର ଶ୍ରବଣ ହୋଇପାରେ । ଶାସ୍ତ୍ରର କଥା ଶୁଣିବା ମଧ୍ୟ ଏହି ଆଧ୍ୟାତ୍ମିକ ଶ୍ରବଣର ଅନ୍ତର୍ଭୁକ୍ତ । ଶ୍ରବଣ ପରେ ସେ ବିଷୟରେ ଚିନ୍ତା କରିବା ସାଧନାକୁ ଅଧିକ ଦୃଢ଼କରେ । ନିଧିଧ୍ୟାସନର ଅର୍ଥ ହେଉଛି ଗଭୀର ଏବଂ ପୁନଃପୁନଃ ଧ୍ୟାନସ୍ଥ ହୋଇ ଏକାଗ୍ର ଚିତ୍ତରେ ଉପାସନା କରିବା ।

## ଜ୍ଞାନର ସାରବତ୍ତା

ଶ୍ରୀ ଶିରିଡ଼ି ସାଇବାବା ଜ୍ଞାନର ଯେଉଁ ସାରବତ୍ତା ସଂପର୍କରେ ଲୋକଙ୍କୁ ସଚେତନ କରିବାକୁ ଚାହୁଁଥିଲେ, ତାହା ବେଦାନ୍ତର ଦର୍ଶନଠାରୁ ଭିନ୍ନ ନୁହେଁ । ମାତ୍ର ବାବା ସେ ପରମାର୍ଥିକ ସତ୍ୟକୁ ମନୋଜ୍ଞ ରୂପରେ ପ୍ରକାଶ କରୁଥିଲେ ।

ବାବା କହୁଥିଲେ ଧ୍ୟାନପରି ଉଚ୍ଚାଙ୍ଗ ସାଧନାର ଲକ୍ଷ୍ୟବିନ୍ଦୁ ହେଉଛି ବ୍ରହ୍ମୋପଲବ୍ଧି । ଏହି ବ୍ରହ୍ମ ସମସ୍ତ ଚେତନ ଓ ଅଚେତନ ବସ୍ତୁ ମଧ୍ୟରେ ବିଭାଜିତ, ଜୀବାତ୍ମା ଓ ପରମାତ୍ମା ମଧ୍ୟରେ ଅଭେଦତ୍ୱ ଉପଲବ୍ଧି କରିବା ହିଁ ଜ୍ଞାନର ଶୀର୍ଷବିନ୍ଦୁ । ପ୍ରକୃତ ଜ୍ଞାନଲାଭ ପୂର୍ବରୁ ଲୋକମାନେ ନିଜ ଓ ଅନ୍ୟମଧ୍ୟରେ ଏକ ବିଭେଦର ରେଖା ଟାଣନ୍ତି । ନିଜକୁ ଅନ୍ୟଠାରୁ ପୃଥକ୍ ବିଚାର କରନ୍ତି । ଏପରି ବିଭେଦକାରୀ ମନୋବୃତ୍ତିକୁ ଭାଙ୍ଗିବା ପାଇଁ ବାବା କହୁଥିଲେ – ''ମୁଁ ହେଉଛି ତୁମେ । ତୁମେ ହେଉଛ ମୁଁ । ତୁମ ଓ ମୋ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଯେଉଁ ସବୁ ପଦାର୍ଥ ମୋତେ ଗଠନ କରିଛି, ସେହିସବୁ ବସ୍ତୁ ହିଁ ତୁମକୁ ନିର୍ମାଣ କରିଛି ।'' ବାବା ପୁଣି କହୁଥିଲେ ଯେ ଲୋକେ ଅଜ୍ଞାତବଶତଃ ନିଜ ଓ ଅନ୍ୟମାନଙ୍କୁ ପୃଥକ୍ ପୃଥକ୍ ବିଚାର କରନ୍ତି । ବାବା କହୁଥିଲେ – ''ମୁଁ ତୁମ୍ଭମାନଙ୍କ ଭିତରେ ଅଛି ଏବଂ ତୁମ୍ଭେମାନେ ମୋ ଭିତରେ ରହିଛ । ମୁଁ ମସ୍‌ଜିଦ୍‌ର ଏପଟେ ଥାଇ ତୁମ୍ଭେମାନେ କାନ୍ଥର ସେପଟେ

ଥିବା ପର୍ଯ୍ୟନ୍ତ ମୋତେ ଦେଖିପାରିବ ନାହିଁ । କିନ୍ତୁ କାନ୍ଥସବୁ ଟାଣି ଭାଙ୍ଗିଦିଅ । ମୋର ଆପାଦ ମସ୍ତକ ତୁମ୍ଭମାନଙ୍କୁ ଦେଖାଯିବ । ମୁନିଋଷିମାନେ ଏସବୁ ବିଭେଦ ଦେଖୁ ନଥିଲେ । ତୁମ୍ଭେମାନେ ମଧ୍ୟ ଏପରି ବିରୋଧଭାବ ରଖନାହିଁ । ଭଗବାନଙ୍କର ଅସ୍ତିତ୍ୱ ସବୁଠାରେ ଉପଲବ୍ଧି କର । ଏକ ଏବଂ ଅଭିନ୍ନ ବ୍ରହ୍ମ ବିଭିନ୍ନ ବସ୍ତୁ ଓ ପ୍ରାଣୀ ମଧ୍ୟରେ ପ୍ରତିଫଳିତ ବୋଲି ଉପଲବ୍ଧି କର । ଏହା ହିଁ ଜ୍ଞାନର ସାରମର୍ମ ।''

ଏହି ଏକତ୍ୱର ଅନୁଭବ ନ ଆସିବା ପର୍ଯ୍ୟନ୍ତ ବ୍ୟକ୍ତି ସବୁପ୍ରାଣୀଙ୍କୁ ଏବଂ ସକଳ ବସ୍ତୁକୁ ପୃଥକ୍ ପୃଥକ୍ ବିଚାର କରୁଥାଏ । ମାତ୍ର ଏକତ୍ୱ ଅନୁଭବ କଲାପରେ ବ୍ରହ୍ମ ଏକମାତ୍ର ମୌଳିକ ଓ ଅପରିବର୍ତ୍ତିତ ଉପାଦାନ ବୋଲି ଗୃହୀତ ହେବା ସଂଗେ ସଂଗେ ଏହା ଏକମାତ୍ର ସତ୍ୟ ବୋଲି ଉପଲବ୍ଧି ହୁଏ । ଏପରି ଉପଲବ୍ଧି ଫଳରେ ପୂର୍ବର ଅନୁମାନ, ପ୍ରତ୍ୟକ୍ଷ ଓ ବିଚାରସବୁ ପରଦା ଢଙ୍କା ଅସତ୍ୟ ବୋଲି ବୁଝାପଡ଼େ । ଏଠରେ ସ୍ମରଣ କରାଇ ଦିଆଯାଇପାରେ ଯେ ବାବା କେଉଁଠାରେ ଶ୍ୱାନରୂପରେ ପ୍ରିୟଭକ୍ତଠାରୁ ଖାଦ୍ୟ ଗ୍ରହଣ କରିଥିବା ସ୍ଥଳେ ଅନ୍ୟ କେଉଁଠାରେ ଜନ୍ଦା ହୋଇ ମିଷ୍ଟାନ୍ନ ଗ୍ରହଣର ପ୍ରସନ୍ନତା ପ୍ରକାଶ କରିଛନ୍ତି । କେତେବେଳେ ଅପରିଚିତ ବ୍ୟକ୍ତି ହୋଇ ନିମନ୍ତ୍ରଣ ରକ୍ଷା କରିବା ସ୍ଥଳେ ଅନ୍ୟତ୍ର ପ୍ରାଣୀରୂପେ ଦ୍ୱାରସ୍ଥ ହୋଇଛନ୍ତି – ଭକ୍ତ ହୃଦୟରେ ବିଶ୍ୱାସ ଦୃଢ଼ କରାଇବା ଏସବୁ ଲୀଳାର ଏକମାତ୍ର ଉଦ୍ଦେଶ୍ୟ ନ ଥିଲା । ଭଗବାନଙ୍କର ସର୍ବବ୍ୟାପକତ୍ୱ ଓ 'ବ୍ରହ୍ମ'ଙ୍କ ଏକତ୍ୱ ସୂଚାଇବା ଏସବୁ ଲୀଳାର ଆଭିମୁଖ୍ୟ ଥିଲା । ଶାସ୍ତ୍ରପୁରାଣରୁ ବିଦ୍ୟାବତ୍ତା ପରିବର୍ତ୍ତେ ଜୀବନଧର୍ମୀ ସହଜ ସରଳ ଘଟଣାସୃଷ୍ଟି ମାଧ୍ୟମରେ ସାଇବାବା ଜ୍ଞାନର ସାରବତ୍ତାଟିକୁ ଲୋକମାନଙ୍କ ପାଖରେ ପହଞ୍ଚାଇ ପାରିଥିଲେ ।

ବାହ୍ୟ ପରିବେଶରେ ପରିବ୍ୟାପ୍ତ ତଥା ମନୁଷ୍ୟ ହୃଦୟରେ ଅଧିଷ୍ଠିତ ଈଶ୍ୱରଙ୍କ ଉପଲବ୍ଧି ଉପରେ ବାବା ଗୁରୁତ୍ୱ ଆରୋପ କରିଥିଲେ ମଧ୍ୟ ସାଧନାର ଅଭ୍ୟାସକୁ ଗୌଣ ମନେକରୁ ନଥିଲେ । ଧାରାବାହିକ ଭାବରେ ଧ୍ୟାନର ଅଭ୍ୟାସ ପାଇଁ ବାବା ପରାମର୍ଶ ଦେଉଥିଲେ । ଧ୍ୟାନ ଦ୍ୱାରା ସାଧକ ଓ ସାଧନାର ବସ୍ତୁ ମଧ୍ୟରେ ଦୂରତ୍ୱ ହ୍ରାସ ପାଇ ସମୀପତ୍ୱ ବୃଦ୍ଧି ହୁଏ ବୋଲି ବାବା କହୁଥିଲେ । ପରିଶେଷରେ ଧ୍ୟାନର ଗଭୀରତା ବୃଦ୍ଧିପାଇ ଧ୍ୟାନକାରୀ, ଧ୍ୟାନ ଓ ଧ୍ୟେୟ ମଧ୍ୟରେ କୌଣସି ବିଭେଦ ରହେନାହିଁ ।

ବ୍ୟକ୍ତିର ଅମହିକା ମିଳାଇଯାଏ । ସେ ଇଚ୍ଛାକରି ଧ୍ୟାନକରୁଛି ବୋଲି ଧ୍ୟାରଣା ହୁଏନାହିଁ । ଧ୍ୟାନର ପ୍ରକ୍ରିୟା ସହିତ ବ୍ୟକ୍ତି ଏକୀଭୂତ ହେବା ଫଳରେ ଧ୍ୟାନ ଇଚ୍ଛାବୃତ

ବୋଲି ଜାଣିବାର କୌଣସି ଅବକାଶ ରହେନାହିଁ । ସମଗ୍ର ପ୍ରକ୍ରିୟାଟି ବ୍ୟକ୍ତିକୁ ଆଚ୍ଛନ୍ନ ରଖେ । ଅଭ୍ୟାସକୁ ଦୃଢ଼ କରିବା ଉଦ୍ଦେଶ୍ୟରେ ବାବା କହୁଥିଲେ – ସ୍ୱର୍ଗରେ ମୋକ୍ଷ ନାହିଁ । ସ୍ୱର୍ଗ ଓ ନରକ କେଉଁ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ନାହିଁ । ସ୍ୱର୍ଗ ଓ ନରକ ସ୍ଥୂଳ ନୁହେଁ, ଏସବୁ ସୂକ୍ଷ୍ମ । ଏ ସବୁ ତୁମର ଭାବାନାରେ ଓ ଉପଲବ୍ଧିରେ ରହିଛି । ଶୁଦ୍ଧ ଚୈତନ୍ୟର ଉପଲବ୍ଧି ହିଁ ମୋକ୍ଷ । ଏହା ହିଁ ଅମରତ୍ୱ, ଏହା ହିଁ ଜୀବନର ଲକ୍ଷ୍ୟ । ଅନ୍ୟ ସବୁ ମୂଲ୍ୟହୀନ ।''

ଶୁଦ୍ଧ ଚୈତନ୍ୟର ସ୍ୱରୂପ ସଂପର୍କରେ ଏନ୍.ଜି. ଚନ୍ଦ୍ରକରଙ୍କ ପ୍ରଶ୍ନର ଉତ୍ତର ଦେଇ ବାବା କହିଥିଲେ – ''ଶୁଦ୍ଧ ଚୈତନ୍ୟ ହିଁ ମୂଳସତ୍ତା । ଏଥିରୁ ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି ହୋଇଛି । ସମଗ୍ର ସଜୀବ ଓ ନିର୍ଜୀବ ବସ୍ତୁ ମଧ୍ୟରେ ଏହା ବିଦ୍ୟମାନ । ସବୁଲୋକେ ଶୁଦ୍ଧ ଚୈତନ୍ୟର ଅନୁଭୂତି ପାଆନ୍ତି ନାହିଁ; କିନ୍ତୁ ଏହା ସେମାନଙ୍କ ମଧ୍ୟରେ ରହିଥାଏ । ଚୈତନ୍ୟ ନ ଥିବା କୌଣସି ସ୍ଥାନ ନାହିଁ । ଏହାକୁ ବାଦ୍ ଦେଇ କୌଣସି ରୂପ ବା ନାମ ମଧ୍ୟ ନାହିଁ । ଶୁଦ୍ଧ ଚୈତନ୍ୟ ହେଉଛି ବ୍ରହ୍ମ । ଜ୍ଞାନୀଲୋକମାନେ ଏହାର ଉପାସନା କରନ୍ତି । ଉପାସକମାନଙ୍କୁ ବ୍ରାହ୍ମଣ କୁହାଯାଏ । ସମସ୍ତ ଉଦ୍ଭିଦ ଜଗତ, ମନୁଷ୍ୟ ଜଗତ, ପ୍ରାଣୀ ଜଗତ ଓ ସମଗ୍ର ଜୀବଜଗତ ଏହାର ଅନ୍ତର୍ଭୁକ୍ତ । ସବୁର ଏହା ମୂଳବୀଜ । ଏହା ସର୍ବ ପରିବ୍ୟାପ୍ତ । ସତ୍, ଚିତ୍ ଓ ଆନନ୍ଦ ରୂପେ ଏହା ଉଦ୍‌ଭାସିତ ।''

ବ୍ରହ୍ମ ଆନନ୍ଦର ସ୍ୱରୂପ ହେବାସ୍ଥଳେ ମନୁଷ୍ୟ ଦୁଃଖ ଯନ୍ତ୍ରଣା କାହିଁକି ଭୋଗ କରେ ବୋଲି ଚନ୍ଦ୍ରକର୍ ବାବାଙ୍କୁ ପ୍ରଶ୍ନ କରିଥିଲେ । ଏହାର ଉତ୍ତର ଦେବାକୁ ଯାଇ ବାବା କହିଥିଲେ – ''ବ୍ରହ୍ମଙ୍କ ବିଷୟରେ ତୁମର ଭ୍ରମ ଧାରଣା ରହିଛି । ଶୁଣ, କଳା, ଧଳା, ନୀଳ, ଲାଲ ଓ ସବୁଜ ହେଉଛି ରଙ୍ଗସବୁ । ଏହାକୁ ଜଳରେ ମିଶାଅ । ଜଳ ସେହି ଜଳ ହୋଇ ରହିଥିଲେ ମଧ୍ୟ ତାହା ଭିନ୍ନ ଭିନ୍ନ ରଙ୍ଗ ଧାରଣ କରିବ ନାହିଁ କି ? ରଙ୍ଗକୁ ପୃଥକ୍ କରିଦେଲେ ତୁମେ କେବଳ ଜଳ ହିଁ ଦେଖିବ । ପ୍ରତି କ୍ଷେତ୍ରରେ ଅନ୍ତିମ ଫଳ କେବଳ ଜଳ ହିଁ ହେବ । ସେହିପରି ବ୍ରହ୍ମ ହେଉଛନ୍ତି ଏକ । କିନ୍ତୁ ସେ ଅଧିଷ୍ଠିତ ଥିବା ହୃଦୟ ହେଉଛି ପୃଥକ୍ ପୃଥକ୍ । ସବୁ ହୃଦୟରେ ସେହି ଏକ ବ୍ରହ୍ମ ପ୍ରତିଷ୍ଠିତ । ଆନନ୍ଦ ଓ ନିରାନନ୍ଦ ବ୍ରହ୍ମର ପ୍ରକୃତି ନୁହେଁ । ମାତ୍ର ବିଭିନ୍ନ ହୃଦୟର ଅନୁଭୂତି ଭିନ୍ନ ଭିନ୍ନ ହୋଇଥାଏ । ସେହି ଅନୁସରେ ଆନନ୍ଦ ଓ ନିରାନନ୍ଦର ଅନୁଭବ ମଧ୍ୟ ମିଳିଥାଏ । ''

ଜ୍ଞାନର ସାରମର୍ମ ସ୍ୱରୂପ ବ୍ରହ୍ମଙ୍କ ଏକତ୍ୱକୁ ଆହୁରି ମନୋଜ୍ଞ ଭାବରେ ବୁଝାଇବାକୁ ଯାଇ ବାବା କହୁଥିଲେ – ''ଶୁଦ୍ଧ ଚୈତନ୍ୟ ଚିରନ୍ତନ ସତ୍ୟ ହେଲେ ମଧ୍ୟ ଏହାର ପରିପ୍ରକାଶ ସୋପାନ ରହିଛି । ମନୁଷ୍ୟ ଶୈଶବ, ଯୌବନ ଓ ବାର୍ଦ୍ଧକ୍ୟ ଅବସ୍ଥାଦେଇ ଗତି କଲାପରି ଏହି ସତ୍ୟ ତିନୋଟି ସ୍ତର ଦେଇ ଗତି କରେ । ସେଗୁଡ଼ିକ ହେଉଛି – ପରିଭାଷିକ ସତ୍ୟ, ବ୍ୟବହାରିକ ସତ୍ୟ ଓ ପରମାର୍ଥିକ ସତ୍ୟ । ମନୁଷ୍ୟ ପରିଭାଷିକ ସତ୍ୟ ଦ୍ୱାରା ନିୟନ୍ତ୍ରିତ ହେଉଥିବା ସମୟରେ ଅଜ୍ଞତା ପୂରାପୂରି ଦୂର କରି ନଥାଏ । ସେ ଶ୍ରେୟ ପ୍ରେୟ ମଧ୍ୟରେ ପାର୍ଥକ୍ୟ ଜାଣି ନଥାଏ । ଅନେକ ସମୟରେ ଖରାପକୁ ଭଲ ଓ ଭଲକୁ ଖରାପ ବୋଲି ବିଚାର କରେ । ମାତ୍ର ବ୍ୟବହାରିକ ସତ୍ୟର ଉଦୟନ ଘଟିଲେ ସେ ଭଲ ମନ୍ଦର ବାଛବିଚାର କରେ । କିନ୍ତୁ ସବୁର ଅନ୍ତରାଳରେ ସେ ଏକମାତ୍ର ବ୍ରହ୍ମବିଦ୍ୟମାନ, ଏପରି ଜ୍ଞାନର ବିକାଶ ଘଟି ନଥାଏ । ପରମାର୍ଥିକ ସତ୍ୟର ଉଦୟ ହେଲେ ବ୍ୟକ୍ତିର ଆତ୍ମୋପଲବ୍ଧି ଘଟେ । ସେ ଅପରିବର୍ତ୍ତିତ ଚିରନ୍ତନ ସତ୍ୟକୁ ସତ୍ୟରୂପେ ଗ୍ରହଣ କରେ । ରାଜାଙ୍କର ସହକାରୀ ଓ ରାଜଦୂତ ରାଜକୀୟତା ସହିତ ସଂପୃକ୍ତ; କିନ୍ତୁ ସେମାନେ ରାଜା ନୁହନ୍ତି । ସେହିପରି ସତ୍ୟର ପରିଭାଷିକ ଓ ବ୍ୟବହାରିକ ପରିପ୍ରକାଶ ଥିଲେ ମଧ୍ୟ ଚିରନ୍ତନ ସତ୍ୟ ପୃଥକ୍ । ଏହି ପରମାର୍ଥିକ ସତ୍ୟର ଉପଲବ୍ଧି ହିଁ ଜ୍ଞାନର ଉପଲବ୍ଧି । ବ୍ରହ୍ମ ହିଁ ଏହି ପରମାର୍ଥିକ ସତ୍ୟ ।''

ପରମାର୍ଥିକ ସତ୍ୟର ଉପଲବ୍ଧି କାହିଁକି କଷ୍ଟକର, ସେ ବିଷୟରେ ବାବା ମଧ୍ୟ ସୂଚନା ଦେଇଥିଲେ । ଏ ପ୍ରସଙ୍ଗରେ ସେ ମାୟା ଓ ସଂସାର ପରି ବିରୋଧ ଶକ୍ତିଗୁଡ଼ିକ ବିଷୟରେ ବୁଝାଇଛନ୍ତି ।

## ମାୟା ଓ ସଂସାର

ପୂର୍ବରୁ କୁହାଯାଇଛି ଯେ ସୃଷ୍ଟିର ସକଳ ବସ୍ତୁତ୍ୱ ମଧ୍ୟରେ ଏକତ୍ୱ ଦେଖିବା ଓ ଅନୁଭବ କରିବା ଜ୍ଞାନର ମୂଳଲକ୍ଷ୍ୟ । କିନ୍ତୁ ଅଜ୍ଞତା ଓ ମାୟାର ଆଦର୍ଶ ମଧ୍ୟରେ ଥାଇ ମନୁଷ୍ୟ ଏ ଚିରନ୍ତନ ସତ୍ୟକୁ ଉପଲବ୍ଧି କରିପାରେ ନାହିଁ ।

ଥରେ ଚନ୍ଦ୍ରକର୍ ବାବଙ୍କୁ ପ୍ରଶ୍ନ କରିଥିଲେ – ''କିଏ ଏହି ମାୟା ? ତକୁ କିଏ ସୃଷ୍ଟି କଲା ? ତା'ର ସ୍ୱରୂପ କ'ଣ ? ସେ ଆସେ କେଉଁଠାରୁ ?''

ଜାଗତିକ ମନୁଷ୍ୟ ମନର ଜିଜ୍ଞାସାକୁ ଫଳବତୀ କରି ବାବା ଉତ୍ତର ଦେଇଥିଲେ – ''ମାୟା କିପରି ଓ କେଉଁଠାରୁ ଆସେ ମୁଁ ତୁମକୁ ବୁଝାଇଦେବି ।

ମାୟା ହେଉଛି ଶୁଦ୍ଧ ଚୈତନ୍ୟର ଏକ ଶକ୍ତି । ଚୈତନ୍ୟ ଏହି ଶକ୍ତି ପ୍ରୟୋଗ କରି ନିଜକୁ ଭିନ୍ନ ଭିନ୍ନ ରୂପରେ ଜଗତରେ ପ୍ରକାଶ କରାଏ । ତୁମେ ମଧୁରତାକୁ ଚିନିଠାରୁ ପୃଥକ୍ କରି ନ ପାରିଲା ପରି ଚୈତନ୍ୟକୁ ଶକ୍ତିଠାରୁ ଅଲଗା କରିପାରିବ ନାହିଁ । ମାୟା ଓ ଚୈତନ୍ୟକୁ ପ୍ରକୃତି ଓ ପୁରୁଷ ବୋଲି ମଧ ଅଭିହିତ କରାଯାଇଛି ।''

''ମାୟା ଖୁବ୍ ସକ୍ରିୟ । ମୁଁ ସ୍ୱଭାବତଃ ଏପରି । ତୁମେ ସ୍ୱଭାବତଃ ସେପରି । ଏସବୁ ଭାବନା ମାୟା ହିଁ ରଚନା କରିଥାଏ । ଏ ବିଭେଦ ସତ୍ୟ ଉପରେ ଆଧାରିତ ନୁହେଁ । ଏ ସବୁ ମାୟାର ପରିଣତି । ମାୟାର କବଳିତ ହେଲେ ସତ୍ୟ ସମ୍ମୁଖକୁ ଆସେ ନାହିଁ । ମାୟାର ଦୁଇଟି ଦିଗ ଅଛି । ପ୍ରଥମତଃ ଏହା ସତ୍ୟ ଉପରେ ଏକ ଆବରଣ ସୃଷ୍ଟି କରେ, ଫଳତଃ ସତ୍ୟକୁ ଆମେ ସିଧାସଳଖ ଦେଖି ନ ଥାଉ । ଦ୍ୱିତୀୟତଃ ମାୟା ମରୀଚିକା ସୃଷ୍ଟିକରି କେତେକ ସତ୍ୟପରି ପ୍ରତୀୟମାନ ହେଉଥିବା ବସ୍ତୁ ସୃଷ୍ଟି କରେ । ଗୋଟିଏ ଦରିଦ୍ର ଲୋକ ନିଜକୁ ରାଜାରୂପେ ସ୍ୱପ୍ନ ଦେଖିବା ବେଳେ ମାୟାର ଆବରଣ ତା'ର ଦାରିଦ୍ର୍ୟକୁ ଭୁଲାଇ ଦେଉଛି । ପୁନଶ୍ଚ ରାଜାପରି ପ୍ରତୀୟମାନ ହେବାର ସ୍ୱପ୍ନ ତାକୁ ପ୍ରଲୁବ୍ଧ କରୁଛି । ମାୟା ବ୍ରହ୍ମଙ୍କ ଉପରେ ଏକ ଆସ୍ତରଣ ସୃଷ୍ଟି କରିଥାଏ । ପୁଣି ସଂସାର ପରି ମରୀଚିକା ସୃଷ୍ଟି କରିଥାଏ । ପ୍ରକୃତରେ ସଂସାରର କୌଣସି ଅସ୍ତିତ୍ୱ ନାହିଁ । ଏହା କେବଳ ମାୟାସୃଷ୍ଟ, କେବଳ ବ୍ରହ୍ମ ବିଦ୍ୟମାନ ଓ ପରିବ୍ୟାପ୍ତ । କିନ୍ତୁ ବାହାରକୁ ଦେଖାଯାଉଥିବା ସଂସାରକୁ ବହୁ ଲୋକେ ସତ୍ୟ ବୋଲି ବିଚାରକରି ଭ୍ରମରେ ପଡ଼ନ୍ତି । ସୁତରାଂ ମାୟାକୁ ତ୍ୟାଗକରି ବ୍ରହ୍ମକୁ ସ୍ୱୀକାର କରିବାକୁ ହେବ । ପ୍ରଶ୍ନ ହେଉଛି : କିପରି ? ନିଜକୁ ଶୁଦ୍ଧ ଚୈତନ୍ୟ ରୂପେ ବିଚାର କର । ଜଳରୁ ଅପରିଷ୍କାର ଦ୍ରବ୍ୟସବୁ ଚାଲିଗଲେ ପରିଷ୍କୃତ ଜଳ ମିଳେ । ମାୟାପରି ଅପରିଷ୍କାର ଦ୍ରବ୍ୟ ବାହାର କରିଦିଅ । ମାୟା ତିରୋହିତ ହେଲେ ସତ୍ୟର ସନ୍ଧାନ ମିଳିବ ।''

''ସଦାସର୍ବଦା ଚିନ୍ତାକର ଯେ ତୁମେ ହେଉଛ ଶୁଦ୍ଧ ଚୈତନ୍ୟ । ତାହାହିଁ ତୁମର ସ୍ୱରୂପ । ନିରବଚ୍ଛିନ୍ନ ଭାବରେ ଏହି ଭାବନାରେ ତିଷ୍ଠି ରହିଲେ ତୁମର ଜ୍ଞାନର ଉପଲବ୍ଧି ହେବ । ମାୟା ଅପସରି ଯିବ । ତୁମର ଜୀବନଯାକ ମଧ୍ୟରେ ତୁମେ ମୁକ୍ତ ଆତ୍ମାର ସ୍ୱାଦୁ ପାଇବ ।''

ମାୟା ସଂପର୍କରେ ବାବାଙ୍କ ଉକ୍ତି ବୈଦିକ ମତ ଉପରେ ପ୍ରତିଷ୍ଠିତ । ଆଦି ଶଙ୍କର ମଧ ମାୟାକୁ ବ୍ରହ୍ମର ବୀଜଶକ୍ତି ରୂପେ ବର୍ଣ୍ଣନା କରିଛନ୍ତି । ସାଂଖ୍ୟ ଦର୍ଶନରେ

ଶୁଦ୍ଧ ଚୈତନ୍ୟକୁ ପୁରୁଷ ଓ ମାୟାକୁ ପ୍ରକୃତି ବୋଲି ବର୍ଣ୍ଣନା କରାଯାଇଛି । ମାୟା ସାହାଯ୍ୟରେ ପରମାତ୍ମା ଜଗତରେ ତାଙ୍କର ଲୀଳା ରଚନା କରନ୍ତି । ବିଶ୍ୱ ମଞ୍ଚରେ ବହୁ ନାଟକର ପରିକଳ୍ପନା ଓ ପରିବେଷଣ ହୁଏ ।

ମୁଖ୍ୟତଃ ବାବା କହୁଥିଲେ ମୁକ୍ତି ବା ମୋକ୍ଷ ଲାଭ ପାଇଁ ମାୟାକୁ ପୂରାପୂରି ଧ୍ୱଂସ କରିବା ଅସମ୍ଭବ । ସୁତରାଂ ଅବିଦ୍ୟା ଓ ଅଜ୍ଞତାକୁ ଦୂରକରି ମାୟାର କବଳରୁ ଖସିବାକୁ ହେବ । ସଂସାର ଚାକଚକ୍ୟ ପ୍ରତି ଆକର୍ଷଣ ଓ ଏହାର ନିର୍ଯ୍ୟାତନା ପ୍ରତି ବିକର୍ଷଣ ହିଁ ଅଜ୍ଞତା ସୃଷ୍ଟି କରିଥାଏ । ପୃଥିବୀ ବସ୍ତୁତଃ ଗୁଣହୀନ । ଆକର୍ଷଣଶୀଳତା ବା ବିକର୍ଷଣଶୀଳତା ବୋଲି କିଛି ନାହିଁ । କେବଳ ମନୁଷ୍ୟର ମନ ଏ ସବୁ ଆକର୍ଷଣ ଓ ବିକର୍ଷଣ ନିର୍ମାଣ କରିଥାଏ । ମନର କ୍ରିୟାକଳାପକୁ ଧୀରେ ଧୀରେ ସଂକୁଚିତ କଲେ ଆକର୍ଷଣ ଓ ବିକର୍ଷଣ ଭାବେ ମଧ୍ୟ ହ୍ରାସ ପାଏ ।

ମନ ସହିତ ସଂସାର ମଧ୍ୟ ଜଡ଼ିତ । ଥରେ ଚନ୍ଦ୍ରକର ନିଜର ବ୍ୟସ୍ତତା ପ୍ରକାଶ କରି କହିଲେ ଯେ ସଂସାର ତାଙ୍କୁ ଆଦୌ ଭଲ ଲାଗୁନାହିଁ । ଏହାର ନାଟକୀୟତାରରେ ସେ ଅତିଷ୍ଠ ହୋଇଉଠିଲାଣି । କେତେବେଳେ ସୁଖ ତାଙ୍କ ମନରେ ସ୍ୱପ୍ନର ଭ୍ରମ ସୃଷ୍ଟି କଲାଣି ତ ଅନ୍ୟସମୟରେ ଦୁଃଖ ତାଙ୍କୁ ଅସ୍ଥିର କଲାଣି । ସୁତରାଂ ସେ ସଂସାରର ଦୂରକୁ ଚାଲିଯିବାକୁ ଚାହାନ୍ତି । ଏଥିପାଇଁ ସେ ପ୍ରଶ୍ନ ପଚାରି ବାବାଙ୍କ ସହାୟତା ପ୍ରାର୍ଥନା କଲେ ।

ସାଇବାବା ତାଙ୍କର ଚିରାଚରିତ ସହାସ୍ୟ ଭଙ୍ଗୀରେ ଉତ୍ତର ଦେଲେ । ବାବା କହିଲେ – ''ସଂସାର ଛାଡ଼ି ପଳାଇବା ସହଜ ନୁହେଁ । ବଣକୁ ଚାଲିଗଲେ ମଧ୍ୟ ସଂସାର ତିରୋହିତ ହେବ ନାହିଁ । ଦେହ ଥିବା ପର୍ଯ୍ୟନ୍ତ ସଂସାର ତିରୋହିତ ହେବ ନାହିଁ । ଦେହ ଥିବା ପର୍ଯ୍ୟନ୍ତ ସଂସାର ରହିଥିବ । କାମ, କ୍ରୋଧ ଓ ଲୋଭ ଇତ୍ୟାଦି ମାନସିକ କ୍ରିୟାକଳାପ ଥିବା ପର୍ଯ୍ୟନ୍ତ ସଂସାର ରହିଥିବ । ମୁଁ ଦେହୀ ହୋଇଥିବାରୁ ମୁଁ ମଧ୍ୟ ସଂସାର ବନ୍ଧନରୁ ସମ୍ପୂର୍ଣ୍ଣ ମୁକ୍ତ ନୁହେଁ । ଏହା ଭଗବାନଙ୍କର । ସଦାସର୍ବଦା ଏହି ଚିନ୍ତାରେ ତିଷ୍ଠି ରୁହ । ସଂସାର ପ୍ରଭାବରୁ ତୁମେ ଧୀରେ ଧୀରେ ମୁକ୍ତ ହେବ । ସଂସାରର ଆକର୍ଷଣ ଓ ବିକର୍ଷଣ ତୁମ ଅନୁଭୂତିର ସୀମାରୁ ବାହାରିଯିବ । ତୁମେ ନଶ୍ୱରତାରୁ ଈଶ୍ୱରଙ୍କ ଆଡ଼କୁ ଅଗ୍ରସର ହେବ ।

ମନୁଷ୍ୟ ମନର ବହୁ ପ୍ରଶ୍ନ, ବହୁ ଆନ୍ଦୋଳନ ଓ ପ୍ରାଣର ଜିଜ୍ଞାସାରୁ ପରିତୃପ୍ତ କରିବା ପାଇଁ ଶ୍ରୀ ଶିରିଡ଼ି ସାଇବାବା ଏନ୍.ଜି. ଚନ୍ଦ୍ରକର୍‌ଙ୍କ ବହୁ ପ୍ରଶ୍ନର ଉତ୍ତର

ଦେଇଥିଲେ । ବ୍ରହ୍ମଙ୍କର ଉପଲବ୍ଧି ଯେ ଜ୍ଞାନର ନିର୍ଯ୍ୟାସ ସେ ବହୁବାର ବହୁବିଧ ଉପାୟରେ ବୁଝାଇଥିଲେ । ଧ୍ୟାନ ମାଧ୍ୟମରେ ଏ ଲକ୍ଷ୍ୟବିନ୍ଦୁରେ ଉପନୀତ ହେବାପାଇଁ ସେ ତାଙ୍କର ଅନୁଗତମାନଙ୍କୁ ପରାମର୍ଶ ଦେଉଥିଲେ । ପ୍ରାଥମିକ ଅବସ୍ଥାରେ ରୂପହୀନ ଧ୍ୟାନ କଷ୍ଟକର ହେବ ଜାଣି ସେ ତାଙ୍କର ଆଶ୍ରିତମାନଙ୍କୁ କହୁଥିଲେ – ''ତୁମେ ମୋତେ ଦେଖ । ମୋର ରୂପ ସ୍ମରଣ କର ।'' ଏପରି ସହଜ ସରଳ ଓ ବ୍ୟବହାରିକ ଉପଦେଶ ମାଧ୍ୟମରେ ଶିରିଡ଼ି ସାଇବାବା ଜିଜ୍ଞାସୁପ୍ରାଣରେ ଜ୍ଞାନର ଆଲୋକ ଜାଳି ଦେଇଥିଲେ । ତାଙ୍କର ପ୍ରଖ୍ୟାପିତ ଜ୍ଞାନମାର୍ଗ ସନାତନ ଧର୍ମ ଉପରେ ଆଧାରିତ ସେଇ ପୁରାତନ ତତ୍ତ୍ୱ ଉପରେ କେନ୍ଦ୍ରିତ ଥିଲେ ମଧ୍ୟ ତାଙ୍କର ଅଭିନବ ଶିକ୍ଷା କୌଶଳ ଆଧ୍ୟାତ୍ମିକ ବିବର୍ତ୍ତନ ଓ ରୂପାନ୍ତକରଣ ପାଇଁ ସମୟୋପଯୋଗୀ ଥିଲା ।



# ସାଇବାବାଙ୍କ ପ୍ରଦର୍ଶିତ ଭକ୍ତିପଥ

ମୁକ୍ତି ଓ ବନ୍ଧନ ପରସ୍ପର ବିରୋଧୀ । ମନୁଷ୍ୟର ବନ୍ଧନ ଯେତେ ଅଧିକ ହୁଏ ସେ ମୁକ୍ତିଠାରୁ ସେତେ ବେଶୀ ଦୂରକୁ ଚାଲିଯାଏ । ବନ୍ଧନର ପ୍ରାଚୀର ତା'ର ଦୃଷ୍ଟିକୁ ସୀମିତ ରଖେ । ବନ୍ଧନର ବେଡ଼ି ତା' ଆନନ୍ଦକୁ ବ୍ୟାହତ ରଖେ ।

କିନ୍ତୁ ଈଶ୍ୱରଙ୍କ ସହିତ ପ୍ରେମାନୁବନ୍ଧନ ଏ ସବୁର ବ୍ୟତିକ୍ରମ । ଭଗବାନଙ୍କ ସହିତ ବନ୍ଧନ ଯେତେ ନିବିଡ଼ ହୁଏ ମୁକ୍ତିର ସମ୍ଭାବନା ସେତେ ବେଶୀ ବୃଦ୍ଧି ପାଏ । ଏ କ୍ଷେତ୍ରରେ ବନ୍ଧନରେ ହିଁ ମୁକ୍ତି ମିଳେ । ଏହି ନିଗୂଢ଼ ବନ୍ଧନକୁ ଆବୋରି ନେଇ ତ୍ରେତୟା ଯୁଗରେ ଶବରୀ ପ୍ରଭୁ ଶ୍ରୀରାମଙ୍କ କୃପା ଲାଭ କରିବାରେ ସଫଳ ହୋଇଥିଲା । ଏହି ନିବିଡ଼ ବନ୍ଧନକୁ ସ୍ୱୀକାର କରି ଦ୍ୱାପର ଯୁଗରେ ପ୍ରଭୁ ଶ୍ରୀକୃଷ୍ଣ ରାଜା ଦୁର୍ଯ୍ୟୋଧନର ରାଜକୀୟ ଆତିଥ୍ୟକୁ ଏଡ଼ି ଦେଇ ବିଦୁର ଗୃହରେ ଶାଗଭଜା ଖାଇଥିଲେ । ପ୍ରୀତିବନ୍ଧନକୁ ସମ୍ମାନ ଦେବାପାଇଁ ସଖା ଅର୍ଜୁନର ପଦଭାର ନିଜ କାନ୍ଧରେ ତୋଳି ନେଇଥିଲେ । ପୁଣି ସମ୍ରାଟ ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ସମୟରେ ସମବେତ ଅତିଥିମାନଙ୍କର ଉଚ୍ଛିଷ୍ଟ ପତ୍ରସବୁ ଉଠାଇ ନେଇଥିଲେ । ପ୍ରତି ଯୁଗରେ ପ୍ରତି କାଳରେ ଭଗବାନ କେବଳ ଭକ୍ତି ପଥର ମହତ୍ତ୍ୱ ନିର୍ଦ୍ଦେଶ କରିନାହାନ୍ତି, ନିଜର ଅବତାରୀ କ୍ରିୟାକଳାପ ମାଧ୍ୟମରେ ଭକ୍ତିପଥର ଗଭୀରତା ପ୍ରଦର୍ଶନ କରିଛନ୍ତି । ଗୋପୀମାନଙ୍କ ସହିତ ସଂପର୍କ ଓ କ୍ରିୟାକଳାପ କେବଳ ରସବ୍ୟଞ୍ଜକ ଓ ବର୍ଣ୍ଣନାମୂଳକ ନୁହେଁ, ଭକ୍ତ ଓ ଭଗବାନ୍‌ଙ୍କ ପ୍ରେମାନୁବନ୍ଧନର ଏକ ସୁନ୍ଦର ଚିତ୍ରଣ ।

## ଭକ୍ତି ଓ ପ୍ରୀତି

ଅବତାର ପୁରୁଷ ଶିରିଡ଼ିର ଶ୍ରୀ ସାଇବାବା ମଧ୍ୟ ଭକ୍ତିପଥର ପରାକାଷ୍ଠା ସୂଚାଇଛନ୍ତି । ସାଇବାବାଙ୍କ ସମୟରେ ଅନେକଗୁଡ଼ିଏ ଘଟଣା ବାବାଙ୍କ ପ୍ରଦର୍ଶିତ ଭକ୍ତିପଥର ଗୁରୁତ୍ୱ ଦର୍ଶାଏ । ଭଗବାନଙ୍କ ପ୍ରତି ଗଭୀର ଅନୁରକ୍ତି ହିଁ ଭକ୍ତି । ଏହି ଭକ୍ତି ପଥରେ ଯାତ୍ରା କରୁଥିବା ବ୍ୟକ୍ତି ବିଶେଷଙ୍କୁ ବାବା କିପରି ସ୍ୱୀକୃତି ଓ ସହାୟତା ଦେଉଥିଲେ ତାହା ବହୁ ଘଟଣାରୁ ଜଣାଯାଏ । ଏଠାରେ ଦୁଇ ତିନୋଟି ଘଟଣାର ଅବତାରଣା କରାଯାଇପାରେ ।

୧୯୧୩-୧୪ ମସିହାରେ ଶିରିଡ଼ିରେ ସବୁବର୍ଷ ପରି ରାମନବମୀ ଉତ୍ସବ ମହାସମାରୋହରେ ପାଳିତ ହେଉଥିଲା । ସେଦିନ ବାବାଙ୍କ ଦର୍ଶନ ପାଇଁ ପ୍ରବଳ ଭିଡ଼ ଲାଗିରହିଥାଏ । ଉତ୍ସବର ପରିଚାଳନା ପାଇଁ ସ୍ଥାନୀୟ ମାମଲତଦାର, ପୋଲିସ୍ ପଦାଧିକାରୀ ଓ ଅନ୍ୟାନ୍ୟ ଆୟୋଜକମାନେ ସଚେଷ୍ଟ ଥାଆନ୍ତି । ସବୁଦିନ ପରି ବାବା ପ୍ରତ୍ୟୁଷରୁ ଦ୍ୱାରକାମୟୀ ମସ୍‌ଜିଦ୍‌ରେ ବସି ଦର୍ଶନାର୍ଥୀମାନଙ୍କୁ ଆଶୀର୍ବାଦ କରୁଥାନ୍ତି । ସମୟ ପ୍ରାୟ ଦିନ ଏଗାରଟା । ଦୀର୍ଘ ସମୟ ଧରି ବାବା ନିର୍ଦ୍ଦିଷ୍ଟ ସ୍ଥାନରେ ବସିରହିଥିବାରୁ ତାଙ୍କର ଅନୁଗତମାନେ ବାବାଙ୍କୁ କିଛି ସମୟ ପାଇଁ ବିଶ୍ରାମ ସୁଯୋଗ ଦେବାପାଇଁ ପୋଲିସ୍‌କୁ ଅନୁରୋଧ ଜଣାଇଲେ ଦର୍ଶକଧାଡ଼ି ବନ୍ଦରଖିବା ପାଇଁ । ମାତ୍ର ବାବା ଏଥିରେ ଅସମ୍ମତି ପ୍ରକାଶ କରି ସେ କ୍ଷୁଧାର୍ତ୍ତ ନ ଥିବାରୁ ବିଶ୍ରାମର ପ୍ରୟୋଜନ ନାହିଁ ବୋଲି ଇଙ୍ଗିତ ଦେଲେ । ସଭାମଣ୍ଡପ ଓ ତା'ର ବାହାରେ ଅସଂଖ୍ୟ ଲୋକ ବାବାଙ୍କ ଦର୍ଶନ ପାଇଁ ବ୍ୟାକୁଳ ଥିଲେ । ଗ୍ରୀଷ୍ମକାଳ ହୋଇଥିବାରୁ ଲୋକମାନଙ୍କ ଶରୀର ସ୍ୱେଦଯୁକ୍ତ ହୋଇପଡୁଥାଏ । ତଥାପି ଦର୍ଶନ ପାଇଁ ଉତ୍ସାହର ଅନ୍ତ ନ ଥାଏ ।

ଏହିପରି ଏକ ପରିବେଶ ମଧ୍ୟରେ ସଭାମଣ୍ଡପ ବାହାରେ ପଞ୍ଚଷଠୀ ବର୍ଷର ଜଣେ ବୃଦ୍ଧା ଦୀର୍ଘସମୟ ଧରି ଅପେକ୍ଷା କରି ରହିଥାନ୍ତି । ସେ କାହିଚାଲିଥାନ୍ତି "ହେ ବାବା ! ଏ ଗରିବ ବୁଢ଼ୀକୁ ଦୟା କର । ତା'କୁ ଥରେ ଦର୍ଶନ ଦିଅ ।" ଅଜସ୍ର କୋଳାହଳ ମଧ୍ୟରେ ତା'ର ସ୍ୱର ଅନ୍ୟମାନଙ୍କୁ ଶୁଣାଯିବା ସମ୍ଭବ ନ ଥିଲା । ବିରାଟ ଗହଳି ମଧ୍ୟରେ ତାଙ୍କୁ ସାହାଯ୍ୟ କରିବା ସମ୍ଭବପର ନଥିଲା ।

ଏହିପରି ସମୟରେ ଶ୍ରୀ ରାମଚନ୍ଦ୍ର ଆତ୍ମାରାମ ତାରଖଡ୍ ସେ ବାଟଦେଇ ଯାଉଥିବା ସମୟରେ ବୃଦ୍ଧାର କାକୁତି ମିନତୀ ତାଙ୍କ କାନରେ ପଡ଼ିଲା । ସେ ବୃଦ୍ଧାଟିର ଦୁର୍ଦ୍ଦଶା ଦେଖି ବିଗଳିତ ହୋଇ ତା'ର ଗୋଟିଏ ହାତକୁ ଧରି ଟାଣିନେଇ ଆଗକୁ ମାଡ଼ିଚାଲିଲେ ଏବଂ ବାବାଙ୍କ ଦର୍ଶନର ବନ୍ଦୋବସ୍ତ କରାଇବେ ବୋଲି କହିଲେ । ପୋଲିସ୍ ଓ ଅନ୍ୟାନ୍ୟ କର୍ମକର୍ତ୍ତାମାନେ ତାରଖଡ୍‌କୁ ଚିହ୍ନିଥିବାରୁ ବାଧା ଦେଲେ ନାହିଁ । ବାବାଙ୍କୁ ଦେଖିବା ମାତ୍ରେ ବୃଦ୍ଧାଜଣକ ଉଚ୍ଚ ସ୍ୱରରେ ମମତାଭରା କଣ୍ଠରେ ଡାକିଚାଲିଲେ ଏବଂ ପାଖରେ ପହଞ୍ଚିବା ମାତ୍ରେ ବାବାଙ୍କୁ ଜଡ଼ାଇଧରିଲେ । ତାଙ୍କର ଦୁଇ ଚକ୍ଷୁରୁ ଆନନ୍ଦାଶ୍ରୁ ଅନବରତ ବହିଚାଲିଥିଲା । ସେ ଭାବାବେଗରେ ଅଧୀର ହୋଇଉଠୁଥିଲେ । ବାବା ତାଙ୍କ ମସ୍ତକରେ ହାତରଖି ବୃଦ୍ଧାଙ୍କ ବିଷୟରେ ଓ ତାଙ୍କର

ସ୍ୱାମୀଙ୍କ ବିଷୟରେ ଟିକିନିଖି ପଚାରିଲେ । ବାବା କହିଲେ – ''ମା, ମୁଁ ତୁମକୁ କେତେବେଳୁ ଚାହିଁବସିଛି । ତୁମେ ମୋ ପାଇଁ କ'ଣ ଆଣିଛ ?'' ବୃଦ୍ଧା ଉତ୍ତର ଦେଲେ – ''ବାବା, ମୁଁ ସାଙ୍ଗରେ ଖଣ୍ଡେ ରୁଟି ଓ ଖଣ୍ଡେ ପିଆଜ ଖାଇନେଇଛି । ମୋ ପାଖରେ ଅଧା ରୁଟି ଓ ଗୋଟିଏ ପିଆଜ ଅଛି । କୃପାକରି ସେତିକି ଗ୍ରହଣ କରନ୍ତୁ ।'' ଏହା କହି ବୃଦ୍ଧାଜଣକ ବାବାଙ୍କ ଆଡ଼କୁ ରୁଟି ଓ ପିଆଜ ବଢ଼ାଇଦେଲେ । ବାବା ପରମ ଆନନ୍ଦରେ ସେତକ ଟାଣିନେଇ ଖାଇବାକୁ ଲାଗିଲେ । ଖାଇସାରି କହିଲେ – ''ମା, ତୁମର ରୁଟି ମୋତେ ପରମ ତୃପ୍ତି ଦେଲା ।'' ତାରଖଡ଼୍‌ଙ୍କ ସମେତ ଉପସ୍ଥିତ ଥିବା ଅନ୍ୟସବୁ ଭକ୍ତ ବାବାଙ୍କ ଭକ୍ତବତ୍ସଳତା ଦେଖି ଆନନ୍ଦରେ ବିହ୍ୱଳିତ ହୋଇଉଠିଲେ । ସେମାନଙ୍କ ଚକ୍ଷୁରୁ ଧାର ଧାର ଅଶ୍ରୁ ବୋହିବାକୁ ଲାଗିଲା ।

ସେହିପରି ଅନ୍ୟ ଏକ ସମୟରେ ଶ୍ରୀ ଆର.ବି. ପୁରନ୍ଦର ନାମକ ଜଣେ ବ୍ୟକ୍ତି ତାଙ୍କର ସ୍ତ୍ରୀଙ୍କ ସହ ଶିରିଡ଼ି ଯାଉଥିଲେ । ଶ୍ରୀମତୀ ଆର୍.ଏ. ତାରଖଡ଼୍ ଏକଥା ଶୁଣି ତାଙ୍କୁ ଦୁଇଟି ଭଲ ବାଇଗଣ ଦେଇ ଗୋଟିଏ ବାଇଗଣରେ ଭର୍ତ୍ତା ଓ ଅନ୍ୟ ବାଇଗଣଟିରେ ଭଜା ତିଆରିକରି ତାଙ୍କ ପକ୍ଷରୁ ସାଇବାବାଙ୍କୁ ଅର୍ପଣ କରିବା ପାଇଁ ଅନୁରୋଧ କଲେ । ଶିରିଡ଼ିରେ ପହଞ୍ଚି ଶ୍ରୀମତୀ ପୁରନ୍ଦର ବାଇଗଣ ଭର୍ତ୍ତା ପ୍ରସ୍ତୁତ କରି ବାବାଙ୍କ ପାଖକୁ ନେଲେ । ବାବାଙ୍କ ପାଖରେ ଅନ୍ୟମାନଙ୍କଠାରୁ ଆସିଥିବା ଅନ୍ୟସବୁ ଖାଦ୍ୟ ଥିଲେ ମଧ୍ୟ ସେ କେବଳ ବାଇଗଣ ଭର୍ତ୍ତା ଖାଇବାକୁ ଲାଗିଲେ । ବାବା କହିଲେ – ''ବେଶ୍ ସ୍ୱାଦୁକର ହେଇଛି । ବାଇଗଣ ଭଜା ଆସିଲେ ଖାଇବା ଆହୁରି ଜମିବ ।'' ବର୍ଷର ସେ ସମୟ ବାଇଗଣ ଉତ୍ପାଦନର ସମୟ ହୋଇ ନଥିବାରୁ ଉପସ୍ଥିତ ଥିବା ବ୍ୟକ୍ତିମାନେ ବାବାଙ୍କ ବାଇଗଣ ଭଜା ମନ୍ତବ୍ୟ ଶୁଣି ପରସ୍ପରକୁ ଚାହିଁବାକୁ ଲାଗିଲେ । ମାତ୍ର ଅଳ୍ପ ମୁହୂର୍ତ୍ତ ପରେ ଜଣାପଡ଼ିଲା ଯେ ଶ୍ରୀମତୀ ତାରଖଡ଼୍ ବାଇଗଣ ପଠାଇଛନ୍ତି ଏବଂ ଶ୍ରୀମତୀ ପୁରନ୍ଦର ବାଇଗଣ ଭଜା ପ୍ରସ୍ତୁତ କରି ବାବାଙ୍କ ପାଖକୁ ଆଣିବେ । ପରମ ତୃପ୍ତିରେ ବାଇଗଣ ଭଜା ଖାଇବାର ଉଦ୍ଦେଶ୍ୟ ଉଦର ପୂର୍ତ୍ତି ପାଇଁ ଉଦ୍ଦିଷ୍ଟ ନଥିଲା । ଗଭୀର ଭକ୍ତି ଓ ଆନନ୍ଦରେ ସମର୍ପିତ ବସ୍ତୁ ଭଗବାନ ଯେ ଗ୍ରହଣ କରନ୍ତି ଏବଂ ଗୁରୁତ୍ୱ ଦିଅନ୍ତି ତାହା ନିର୍ଦ୍ଦେଶ କରିବା ବାବାଙ୍କ ଲକ୍ଷ୍ୟ ଥିଲା ।

ଶ୍ରଦ୍ଧାପୂର୍ଣ୍ଣ ପ୍ରାଣରେ ସମର୍ପିତ ବସ୍ତୁ ଗ୍ରହଣ କରି ବାବା ଉକ୍ତର ନୈବେଦ୍ୟକୁ କିପରି ସ୍ୱୀକୃତି ଦିଅନ୍ତି, ତାହା ଶ୍ରୀମତୀ ତାରଖଡ଼୍‌ଙ୍କୁ ଜୀବନରେ ଆଉଥରେ ମଧ୍ୟ ଘଟିଥିଲା । ବାବାଙ୍କର ଜଣେ ଭକ୍ତ ବାଲକ୍‌ରାମ ମାନ୍‌କର ୧୯୧୫ ମସିହାରେ

ଡିସେମ୍ବର ମାସରେ ଶିରିଡ଼ିରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ତାଙ୍କର କ୍ରିୟାକର୍ମ ସମ୍ପାଦନ ପାଇଁ ତାଙ୍କର ପୁତ୍ର ଶିରିଡ଼ି ବାହାରିଲେ । ସେ ସମୟରେ ଶ୍ରୀମତୀ ତାରଖଡ଼୍ ବାବାଙ୍କ ପାଖକୁ କିଛି ପଠାଇବା ପାଇଁ ମନସ୍ଥ କଲେ । ମାତ୍ର ହଠାତ୍ କିଛି ଯୋଗାଡ଼ କରି ନ ପାରି ମାନ୍‌କରଙ୍କ ପୁଅ ହାତରେ ଘରେ ପ୍ରସ୍ତୁତ କରାଯାଇଥିବା ପେଡ଼ା ଭକ୍ତି ସହକାରେ ପଠାଇଲେ । ସାଇବାବାଙ୍କୁ ଅର୍ପଣ କରିବା ପାଇଁ ଅନୁରୋଧ ଜଣାଇଲେ । ମାନ୍‌କରଙ୍କ ପୁଅ ଶିରିଡ଼ିରେ ପହଞ୍ଚିବା ମାତ୍ରେ ବାବାଙ୍କୁ ଦେଖାକଲେ । ମାତ୍ର ବ୍ୟସ୍ତତା ମଧ୍ୟରେ ପେଡ଼ା କଥା ବିସ୍ମୃତ ହୋଇଯାଇଥିଲେ । ସେ କିଛି ଆଣିଛନ୍ତି ବୋଲି ପଚାରିବାରୁ ମାନ୍‌କର ନାସ୍ତିବାଣୀ ଶୁଣାଇଲେ । ବାବାଙ୍କ ପାଇଁ କିଛି ଆଣିଛନ୍ତି କି ନାହିଁ ବୋଲି ବାବା ପୁନଶ୍ଚ ପଚାରିଲେ । ଏଥର ମଧ୍ୟ ମନ୍‌କର 'ନାହିଁ' ବୋଲି କହିଲେ । ବାବା ପଚାରିଲେ – ''ତମେ ଏଠାକୁ ଆସିବା ପୂର୍ବରୁ ମୋତେ ଦେବା ପାଇଁ ମା' କିଛି ଦେଇନାହାନ୍ତି ?'' ପେଡ଼ା କଥା ମାନକର୍‌ଙ୍କ ମନେ ପଡ଼ିଲା । ସେ ବାବାଙ୍କୁ କ୍ଷମାପ୍ରାର୍ଥନା ଜଣାଇ ଶ୍ରୀମତୀ ଦାରଖଡ଼୍‌ଙ୍କ ପ୍ରଦତ୍ତ ପେଡ଼ା ଅର୍ପଣ କରିଥିଲେ । ବାବା ମହାଆନନ୍ଦରେ ତାହା ଗ୍ରହଣ କରିଥିଲେ ।

ପ୍ରୀତିପୂର୍ଣ୍ଣ ଭାବରେ ଅର୍ପଣ କରାଯାଇଥିବା ବସ୍ତୁକୁ ବ୍ୟବହାର କରି ବାବା ଯେପରି ସ୍ୱୀକୃତି ଦିଅନ୍ତି, ସମର୍ପଣ ପ୍ରତି ଶ୍ରଦ୍ଧା ସୂଚାଇ ବାବା ସେପରି ସମର୍ଥନ ଜଣାନ୍ତି । ଥରେ ବାବାଙ୍କ ପରମ ଅନୁଗତ ଏବଂ ଶ୍ରୀ ସତ୍‌ଚରିତର ରଚୟିତା ଦାସଗଣୁଁ (ଆନ୍ନାସାହେବ ଧାବୋଲ୍‌କର୍) ଗୋଟିଏ ଦୁଃସ୍ୱପ୍ନ ଦେଖିଲେ । ନିଜର ମାନସିକ ଅବସାଦ କମାଇବା ପାଇଁ ସେ ଶିରିଡ଼ିକୁ ଯାଉଥିବା ଜଣେ ଭକ୍ତ ହାତରେ ଶହେ ପାନପତ୍ର, କିଛି ନଡ଼ିଆ ଓ ଆଠଅଣା ବାବାଙ୍କ ପାଖକୁ ପଠାଇଲେ । କୌଣସି କାରଣରୁ ଉକ୍ତ ଭକ୍ତଜଣକ ଦୁଇଦିନ ପରେ ଶିରିଡ଼ି ଯାତ୍ରା ଆରମ୍ଭ କଲେ । ଫଳରେ ପାନପତ୍ର ସବୁ ଶୁଖିଗଲା । ଶିରିଡ଼ିରେ ପହଞ୍ଚିଲା ବେଳକୁ ପାନପତ୍ରର ଅବସ୍ଥା ନଥିଲା । ପହଞ୍ଚିବାରେ ବିଳମ୍ବ ଯୋଗୁ ଏପରି ଘଟିଛି ବୋଲି ବିନୀତ ଭାବରେ ଜଣାଇ ଭକ୍ତଜଣକ ବାବାଙ୍କ ପାଖରେ ସମର୍ପିଦେଲେ । ସାଇବାବା ନିଜ ଆସନରୁ ଉଠିବା ପରେ ନିକଟସ୍ଥ ବ୍ୟକ୍ତିଜଣକ ବାବାଙ୍କୁ ଏକଥା ଜଣାଇଲା । ସାଧାରଣତଃ ଭକ୍ତମାନଙ୍କଠାରୁ ଆସିଥିବା ଜିନିଷ ବାବା ଗ୍ରହଣ କରି ତାହା ଅନ୍ୟମାନଙ୍କ ମଧ୍ୟରେ ବିତରଣ କରନ୍ତି । ପାନସବୁ ଶୁଖିଯାଇଥିବାରୁ ଏବଂ ସେଗୁଡ଼ିକ ନଷ୍ଟ କରିଦେବା ପାଇଁ ସମ୍ଭବତଃ ବ୍ୟକ୍ତିଜଣକ ବାବାଙ୍କ ଅନୁମତି ଆଶା କରୁଥିଲା । ମାତ୍ର ପାନଗୁଡ଼ିକ ସେପରି ରହିଥାଉ ବୋଲି ବାବା ନିର୍ଦ୍ଦେଶ ଦେଲେ । ଶ୍ରଦ୍ଧାପୂର୍ଣ୍ଣ ଭାବରେ ଦାସଗଣୁଁ ଅର୍ପଣ କରିଥିବା ବସ୍ତୁକୁ ବାପା କିପରି ଅବହେଳା କରିପାରିଥାନ୍ତେ ?

ଭଗବାନଙ୍କ ପ୍ରତି ଅନୁରକ୍ତି ପ୍ରକାଶ କରି ଭକ୍ତ ଅଗ୍ରସର ହେଲେ ଭୌଗୋଳିକ ଦୂରତ୍ୱ କୌଣସି ବାଧା ସୃଷ୍ଟି କରିପାରେ ନାହିଁ । ହୃଦୟେଶ୍ୱର ପରମପିତା ଭଗବାନ ମନର ସାତ୍ତ୍ୱିକ ଅଭିଳାଷ ଜାଣିପାରି ବାଧାବଂଧନ ଦୂରେଇ ନିଅନ୍ତି । ଶିରିଡ଼ିଠାରେ ବହୁଦୂରରେ ବସବାସ କରୁଥିବା ଓ ଶିରିଡ଼ିକୁ ଆଦୌ ଆସି ନଥିବା ଜଣେ ଡାକବିଭାଗୀୟ କର୍ମଚାରୀଙ୍କ ପତ୍ନୀ ସ୍ୱପ୍ନରେ ଦେଖିଲେ ଯେ ବାବା ତାଙ୍କୁ ଖେଚୁଡ଼ୀ ଖାଇବା ପାଇଁ ମାଗୁଛନ୍ତି । ସେ ଏକଥା ତାଙ୍କର ସ୍ୱାମୀଙ୍କୁ ଜଣାଇଲେ । ଆଶ୍ଚର୍ଯ୍ୟର କଥା ଅଳ୍ପଦିନ ମଧ୍ୟରେ ଶିରିଡ଼ିର ନିକଟବର୍ତ୍ତୀ ଆକୋଲାକୁ ତାଙ୍କର ବଦଳି ଆଦେଶ ଆସିଲା । ପରିବାରଟି ସେଠାକୁ ଗଲାପରେ ମହିଳାଜଣକ ସଯତ୍ନରେ ଖେଚୁଡ଼ୀ ପ୍ରସ୍ତୁତ କରି ସାଇବାବାଙ୍କ ପାଖକୁ ନେଲେ । ମହିଳା ଜଣକ ପହଞ୍ଚିବା ମାତ୍ରେ ବାବା ପାଖକୁ ଡାକିଲେ ଏବଂ ଖେଚୁଡ଼ୀ ଖାଇବାକୁ ଆରମ୍ଭ କଲେ । ଉପସ୍ଥିତ ଥିବା ସବୁ ବ୍ୟକ୍ତିଙ୍କର ବିସ୍ମୟର ସୀମା ରହିଲା ନାହିଁ । ମାତ୍ର ମହିଳାଙ୍କ ସ୍ୱାମୀ ସ୍ୱପ୍ନ ବୃତ୍ତାନ୍ତ ଜଣାଇଲା ପରେ ବାବାଙ୍କର କରୁଣା ବିଷୟରେ ସମସ୍ତେ ଅବଗତ ହେଲେ ।

ଭକ୍ତମନର ରହିଯାଉଥିବା ଯତ୍‌ସାମାନ୍ୟ ଶୂନ୍ୟଭାବ ପୂରଣ କରିବା ପାଇଁ ବାବା ଦାସବତ୍ସଳର ରୂପ ନେଉଥିଲେ । ଥରେ ନବରାତ୍ର ସମୟରେ ବାବାଙ୍କ ଅନୁଗତ କାକାସାହେବ ଦୀକ୍ଷିତ୍ ଶିରିଡ଼ିରେ ଥିଲେ । ରହୁରହୁ ବିଜୟା ଦଶମୀ ଆସିଗଲା । ଦୀର୍ଘଦିନର ଉତ୍ସବ ମଧ୍ୟରେ ବାବାଙ୍କୁ କିଛି ଅର୍ପଣ କରିବା ପାଇଁ ତାଙ୍କର ଖୁବ୍ ଇଚ୍ଛା ଥିଲା । କିନ୍ତୁ ତାଙ୍କ ପାଖରେ ଫଳମୂଳ କିଛି ନଥିଲା । ସଂଗ୍ରହ କରିବାରେ ମଧ୍ୟ ବିଶେଷ ଅସୁବିଧା ଥିଲା । ଏପରି ପରିପ୍ରେକ୍ଷୀରେ ଜଣେ ଭକ୍ତ ବାବାଙ୍କୁ ଦେଇଥିବା ଅଙ୍ଗୁରସବୁରୁ କିଛି ପରିମାଣରେ ଅଙ୍ଗୁର କାକାସାହେବ ଦୀକ୍ଷିତ୍‌ଙ୍କୁ ଦେବାର ବ୍ୟବସ୍ଥା କଲେ । ଏପରି ବ୍ୟବସ୍ଥା ପରେ ବାବାଙ୍କୁ ଅଙ୍ଗୁର ଦେବାପାଇଁ କାକାସାହେବଙ୍କୁ ସହାୟକ ହେଲା ।

କେବଳ ବାହ୍ୟିକ ବସ୍ତୁର ଶ୍ରଦ୍ଧାପୂର୍ଣ୍ଣ ସମର୍ପଣ ନୁହେଁ, ହୃଦୟର ଦୋଷଗୁଣ ମଧ୍ୟ ପ୍ରଭୁଙ୍କ ପାଦରେ ସମର୍ପଣ କରିବା ଆବଶ୍ୟକ ବୋଲି ବାବା ଦର୍ଶାଉଥିଲେ। ଥରେ ଦାସଗଣୁଁ ମହାଶୟ ଜଗନ୍ନାଥଧାମ ପୁରୀରୁ ଫେରିଥାନ୍ତି । ତାଙ୍କ ସହିତ ପୁଣ୍ଡଲିକର୍ ମଧ୍ୟ ଥିଲେ । ପୁରୀ ଭ୍ରମଣ ସମୟରେ ବାସୁଦେବାନନ୍ଦ ସରସ୍ୱତୀ ବାବାଙ୍କ ପାଇଁ ଗୋଟିଏ ନଡ଼ିଆ ଦେଇଥିଲେ । ବାସୁଦେବାନନ୍ଦ ସରସ୍ୱତୀ ବ୍ରାହ୍ମଣ ରୀତିନୀତିର ପ୍ରଖ୍ୟାପକ । ଅନ୍ୟପକ୍ଷରେ ବାବା ବାହ୍ୟିକ ଉପଚାରକୁ ଗୁରୁତ୍ୱ ଦିଅନ୍ତି ନାହିଁ । ଏ ଦୃଷ୍ଟିରୁ ବାସୁଦେବାନନ୍ଦ ଓ ବାବାଙ୍କ ମତବାଦ ମଧ୍ୟରେ ପାର୍ଥକ୍ୟ ଥିଲେ ମଧ୍ୟ

ବାସୁଦେବାନନ୍ଦ ସରସ୍ୱତୀ ଜଗତର ମଙ୍ଗଳ ପାଇଁ ଚେଷ୍ଟିତ ବୋଲି ବିଚାର କରି ବାବା ଅନ୍ତର ମଧ୍ୟରେ ଅର୍ପିତ ନଡ଼ିଆଟି ଗ୍ରହଣ କରିଥିଲେ ।

ମାତ୍ର ଦାସଗଣୁଁ ଓ ପୁଣ୍ଡଲିକର୍ ବାବାଙ୍କ ଦର୍ଶନ ପାଇଁ ଆସିବା ସମୟରେ ନଡ଼ିଆ ଆଣି ନଥିଲେ । ବାବା ପରିହାସ ଛଳରେ ଶ୍ୟାମକୁ (ମାଧବରାଓ ଦେଶ୍‌ପାଣ୍ଡେ) କହିଲେ ଯେ ଦାସଗଣୁଁ ହେଉଛି ବଡ଼ ଠକ । ବାବାଙ୍କର ଭାଇ ପଠାଇଥିବା ନଡ଼ିଆ ସେ ନିଜେ ମାରିନେଇଛି । ଏ କଥା ଶୁଣିଲା ପରେ ପୁଣ୍ଡଲିକର୍ କ୍ଷମାପ୍ରାର୍ଥନା କରି ଜଣାଇଲା ଯେ ସେ ଭୁଲବଶତଃ ନଡ଼ିଆଟି ଖାଇ ଦେଇଛି । ସେ ଅନୁତପ୍ତ ଓ କ୍ଷମାପ୍ରାର୍ଥୀ । ବାବା ସାମାନ୍ୟ କ୍ରୋଧ ପ୍ରକାଶ କରି କହିଲେ ଯେ ତା' ମନ ମଧ୍ୟରେ 'ମୁଁ' 'ମୁଁ' ଶବ୍ଦଟି ଚିତ୍କାର କରୁଥିବାରୁ ସେ ଏପରି କହୁଛି । ମନରେ ଅହମିକା ଶକ୍ତିଶାଳୀ ଥିବାରୁ ସେ ଏପରି କହୁଛି । ବାବା ପୁଣି କହିଲେ ଯେ ସବୁ ହିଁ ତାଙ୍କ ଇଚ୍ଛାରୁ ଘଟିଛି । ତାଙ୍କର ଇଚ୍ଛା ବ୍ୟତୀତ ବିଶ୍ୱର କୌଣସି ଘଟଣା ଘଟେ ନାହିଁ । ନଡ଼ିଆ ଖାଇଲା ବେଳେ ବାବାଙ୍କୁ ଅର୍ପଣ କରାଯାଇଛି । ସୁତରାଂ ବାବା ନଡ଼ିଆ ପାଇଛନ୍ତି ବୋଲି ଜଣାଇଲେ । ମାତ୍ର ବାବା କହିଲେ ଯେ ବଡ଼କଥା ହେଉଛି ନିଜର ଦୋଷଗୁଣସବୁ ଈଶ୍ୱରଙ୍କ ପାଖରେ ସମର୍ପି ଦେବାକୁ ହେବ । ଏପରି ମନୋବୃତ୍ତି ରହିଲେ ଅମହିକାର ଦଂଶନର ଜ୍ୱାଳା ଅନୁଭୂତ ହେବ ନାହିଁ ।

ସ୍ଥୂଳତଃ, ଭକ୍ତି ଓ ପ୍ରୀତି ଏକ ଓ ଅଭିନ୍ନ ବୋଲି ସାଇବାବା ନିଜର କ୍ରିୟା କଳାପ ଓ ଉପଦେଶ ମାଧ୍ୟମରେ ବୁଝାଉଥିଲେ । ଅବଶ୍ୟ ମନ ଓ ହୃଦୟରେ ଏହି ଈଶ୍ୱର ପ୍ରୀତିର ଅଂକୁରଣ, ବିକାଶ ଓ ପରିପକ୍ୱତା ପାଇଁ କେତେକ ମାଧ୍ୟମର ଆବଶ୍ୟକତା ଥିବା ଦୃଷ୍ଟିରୁ ବାବା ଜପ, ଧ୍ୟାନ, ସଦ୍‌ଗ୍ରନ୍ଥ ଅଧ୍ୟୟନ ଓ ସର୍ବୋପରି ଗୁରୁସେବାର ଭୂମିକା ବୁଝାଉଥିଲେ ।

## ସଦ୍‌ଗ୍ରନ୍ଥ ଓ ସଦ୍‌ଗୁରୁ

କୌଣସି ନିର୍ଦ୍ଦିଷ୍ଟ ଧର୍ମପ୍ରଚାର କରିବା ଶିରିଡ଼ି ସାଇବାବାଙ୍କ ଦିବ୍ୟସଂକଳ୍ପର ଅନ୍ତର୍ଭୁକ୍ତ ନ ଥିଲା । ମନୁଷ୍ୟକୁ ତା'ର ଦିବ୍ୟତ୍ୱ ସଂପର୍କରେ ସଚେତନ କରାଇ ତାକୁ ଈଶ୍ୱରାଭିମୁଖୀ କରାଇବା ବାବାଙ୍କର ମୌଳିକ ଆଭିମୁଖ୍ୟ ଥିଲା । ସୁତରାଂ ଜଣେ ମୁସଲ୍‌ମାନ୍‌କୁ ସଚ୍ଚା ମୁସଲ୍‌ମାନ୍ ହେବା ପାଇଁ ଉପଦେଶ ଦେଉଥିବାବେଳେ ହିନ୍ଦୁମାନଙ୍କୁ ଉତ୍କୃଷ୍ଟ ହିନ୍ଦୁହେବାପାଇଁ ପ୍ରବର୍ତ୍ତାଇ ଥିଲେ । ପବିତ୍ର କୋରାନ୍‌ର ଅଧ୍ୟୟନ ଓ ଆବୃତ୍ତି କରିବା ପାଇଁ ସେ ମୁସ୍‌ଲିମ୍ ଭକ୍ତମାନଙ୍କୁ ପରାମର୍ଶ ଦେଉଥିଲେ । ବାବା ବେଳେବେଳେ

କୋରାନ୍‌ର ପଂକ୍ତି ଉଦ୍ଧାର କରୁଥିବା କଥା କେତେକଙ୍କ ଗବେଷକ ଉଲ୍ଲେଖ କରିଛନ୍ତି । ଅବଶ୍ୟ କୋରାନ୍ ସମ୍ପର୍କରେ ବାବାଙ୍କର ମନ୍ତବ୍ୟ ସବିଶେଷ ଭାବରେ ଲିପିବଦ୍ଧ କରାଯାଇ ନାହିଁ ।

ବାବା ତାଙ୍କର ହିନ୍ଦୁ ଭକ୍ତମାନଙ୍କୁ ଉପନିଷଦ, ଶ୍ରୀମଦ୍ ଭଗବଦ୍ ଗୀତା ଓ ପୁରାଣସବୁ ଅଧ୍ୟୟନ କରିବାକୁ ପରାମର୍ଶ ଦେଉଥିଲେ । ଉପନିଷଦ ଓ ଗୀତା ବ୍ୟତୀତ ଜ୍ଞାନେଶ୍ୱରୀ, ଭାଗବତ, ଯୋଗବଶିଷ୍ଠ, ଅଧ୍ୟାତ୍ମ୍ୟ ରାମାୟଣ, ପଞ୍ଚଦଶୀ, ବିଷ୍ଣୁ ସହସ୍ରନାମ, ଅମୃତାନୁଭବ, ଏକନାଥ ଭାଗବତ, ଦାସବୋଧ ଓ ଗୁରୁଚରିତ ପରି ପବିତ୍ର ଗ୍ରନ୍ଥମାନ ଅଧ୍ୟୟନ କରିବାକୁ ପ୍ରବର୍ତ୍ତାଉ ଥିଲେ ।

ଈଶୋପନିଷଦକୁ ମରାଠୀ ଭାଷାରେ ଅନୁବାଦ କରିବାର ପ୍ରୟାସ ପୂର୍ବରୁ ବାବାଙ୍କ ଅନୁଗତ ଦାସଗଣୁଙ୍କୁ ବାବା ଯେଉଁ ପ୍ରତ୍ୟକ୍ଷ ଅନୁଭବର ସୁଯୋଗ ଦେଇଥିଲେ ତାହାର ମନୋଜ୍ଞ ବର୍ଣ୍ଣନା ଶ୍ରୀ ସଦ୍‌ଚରିତରେ ଦିଆଯାଇଛି । ସେହିପରି ବହୁଶାସ୍ତ୍ର ପାରଦର୍ଶୀ ନାନାଚନ୍ଦ୍ରକର୍ ଗୀତାର ଗୋଟିଏ ଶ୍ଳୋକ ଗୁଣୁଗୁଣୁ ହୋଇ ଆବୃତ୍ତି କରୁଥିବାବେଳେ ବାବା ଚନ୍ଦ୍ରକର୍‌ଙ୍କୁ ପ୍ରଶ୍ନ ପଚାରି ସେ ଶ୍ଳୋକଟିର ପ୍ରକୃତ ତାତ୍ପର୍ଯ୍ୟ କିପରି ବୁଝାଉଥିଲେ ତାହା ମଧ୍ୟ ସଦ୍‌ଚରିତରେ ବର୍ଣ୍ଣିତ । ଭକ୍ତହୃଦୟରେ ଅଦ୍ୱୈତ ଚେତନାକୁ ଦୃଢ଼ କରିବା ପାଇଁ ବାବା ଉପନିଷଦ ଓ ଗୀତା ଅଧ୍ୟୟନ ପାଇଁ ପରାମର୍ଶ ଦେଉଥିଲେ । ତା' ସହିତ ଭକ୍ତିରସରେ ଭାବାପ୍ଳୁତ ହେବାପାଇଁ ଭାଗବତ ଓ ବିଷ୍ଣୁ ସହସ୍ରନାମ ପରି ଶାସ୍ତ୍ର ଅଧ୍ୟୟନର ଗୁରୁତ୍ୱ ବୁଝାଉଥିଲେ ।

ଅନ୍ୟ ଗ୍ରନ୍ଥଗୁଡ଼ିକର ଆଧ୍ୟାତ୍ମିକ ତାତ୍ପର୍ଯ୍ୟ ବେଶ୍ ହୋଇଥିବାରୁ ବାବା ସେସବୁ ନିତ୍ୟ ଅଧ୍ୟୟନ ଉପରେ ଗୁରୁତ୍ୱ ଦେଉଥିଲେ । 'ଯୋଗବଶିଷ୍ଠ'ରେ ଶ୍ରୀରାମ ଲକ୍ଷ୍ମଣ ଶିକ୍ଷାକାଳରେ ଶ୍ରୀରାମଙ୍କ ପ୍ରଶ୍ନ ଓ ଗୁରୁ ବଶିଷ୍ଠଙ୍କ ଉତ୍ତର ଛଳରେ ଜୀବନର ସ୍ଥିତି ଓ ଉର୍ଦ୍ଧ୍ୱାୟନ ସଂପର୍କରେ ତାତ୍ତ୍ୱିକ ଚିନ୍ତାଧାରା ପ୍ରକଟିତ । ସେହିପରି ଆଧ୍ୟାତ୍ମ୍ୟ ରାମାୟଣରେ ରାମାୟଣ ଗଳ୍ପର ଅନ୍ତରାଳରେ ରହିଥିବା ମୂଳ ତତ୍ତ୍ୱ ଚିତ୍ରଣ କଗରାଯାଇଛି । ସୁତରାଂ ଏ ଦୁଇଟି ଉପାଦେୟ ସଦ୍‌ଗ୍ରନ୍ଥ ।

ଅନ୍ୟ ଗ୍ରନ୍ଥଗୁଡ଼ିକ ମଧ୍ୟରୁ ଅଧିକାଂଶ ମହାରାଷ୍ଟ୍ରର ସନ୍ଥ ଓ ପରମ ଭକ୍ତମାନଙ୍କ ବିରଚିତ ବହୁମୂଲ୍ୟ ଗ୍ରନ୍ଥ । ପ୍ରଖ୍ୟାତ ସନ୍ଥ ଜ୍ଞାନଦେବଙ୍କ ବିରଚିତ 'ଜ୍ଞାନେଶ୍ୱରୀ'ରେ ଅଦ୍ୱୈତ ବେଦାନ୍ତ ସାବଲୀଳ ଓ ମନୋଜ୍ଞ ଭାବରେ ପ୍ରକଟିତ । 'ଅମୃତାନୁଭବ' ମଧ୍ୟ ଜ୍ଞାନଦେବଙ୍କ କୃତୀ । ଏକନାଥ ଭାଗବତ ଅନ୍ୟ ଏକ ସନ୍ଥ 'ଏକନାଥ'ଙ୍କ କୃତି ।

ମୋଟ ଉପରେ ଉପାଦେୟ ସଦ୍‌ଗ୍ରନ୍ଥ ଅଧ୍ୟୟନ ମାଧ୍ୟମରେ ସାକାର ଓ ନିରାକାର ଉପାସନାରେ ବ୍ରତୀ ହେବା ପାଇଁ ବାବା ପରାମର୍ଶ ଦେଉଥିଲେ । ସାକାର ଉପାସନା ଓ ନିରାକାର ଉପାସନା ମଧ୍ୟରେ କୌଣସି ଅସଙ୍ଗତି ରହିଛି ବୋଲି ବାବା କହୁ ନଥିଲେ ।

ଈଶ୍ୱର ପ୍ରୀତିକୁ ଘନୀଭୂତ କରିବା ପାଇଁ ଗୁରୁକୃପାର ଯଥେଷ୍ଟ ଆବଶ୍ୟକତା ରହିଛି ବୋଲି ବାବା କହୁଥିଲେ । ସେଥିପାଇଁ 'ଗୁରୁଚରିତ' ପରି ସଦ୍‌ଗ୍ରନ୍ଥ ବାବାଙ୍କ ଉପଦେଶ ତାଲିକାରେ ସ୍ଥାନ ପାଇଥିଲା । ବାବା ବାରମ୍ବାର କହୁଥିଲେ – ଗୁରୁଙ୍କ ଆଶୀର୍ବାଦ ବ୍ୟତୀତ ସାଧନା ପଥରେ ଅଗ୍ରସର ହେବା କଷ୍ଟକର । ଗୁରୁ ଯାତ୍ରାପଥରୁ ସମସ୍ତ ବାଧାବିଘ୍ନ ଦୂର କରନ୍ତି । ଶିଷ୍ୟର ହାତଧରି ସେ ଆଗକୁ ନେଇ ଯାଆନ୍ତି ।

ବାବା କହୁଥିଲେ ଗୁରୁକୃପା ଲାଭ କରିବାକୁ ହେଲେ ଏକ ନିର୍ଦ୍ଦିଷ୍ଟ ମନୋବୃତ୍ତିର ଅଧିକାରୀ ହେବାକୁ ପଡ଼ିବ । ଏହିପରି ଚିନ୍ତାଧାରା ସାଧନାର ଅନୁକୂଳ ହେବ – ''ଗୁରୁ ତୁମ ଚିନ୍ତାର କେନ୍ଦ୍ରବିନ୍ଦୁ ହେଇ ରହିବେ । ତୁମେ ନିଜକୁ ଗୁରୁଙ୍କର ଦାସାନୁଦାସ ମନେକରିବ ।''

ଗୁରୁ ଶିଷ୍ୟର ସଂପର୍କ କ୍ଷେତ୍ରରେ ଗଭୀରତା ମହତ୍ତ୍ୱପୂର୍ଣ୍ଣ । ବାବା ସ୍ଥଳବିଶେଷରେ ନିଜ ଗୁରୁଙ୍କ ସହିତ ତାଙ୍କର ସମ୍ପର୍କର ଗଭୀରତା ଉଲ୍ଲେଖ କରି କହିଥିଲେ – ''ମୁଁ ତାଙ୍କ ଆଡ଼କୁ ଏକନିଷ୍ଠ ନୟନରେ ଚାହିଁ ରହିଛି । ଆମ ହୃଦୟ ଆନନ୍ଦରେ ଭରିଗଲା । ମୁଁ ଦୃଷ୍ଟି ଫେରାଇ ଅନ୍ୟତ୍ର ନିବଦ୍ଧ କରିପାରିଲି ନାହିଁ । ରାତି ଦିନ ବିତିଗଲା । ସେ ମଧ୍ୟ ମୋ ଉପରେ ତାଙ୍କର ଅଜସ୍ର କୃପା ବର୍ଷିଗଲେ । ମୁଁ ମନରେ ଧ୍ୟାନରେ କେବଳ ଗୁରୁଙ୍କୁ ହିଁ ଦେଖିଲି । ମୋ ମନରେ ଅନ୍ୟ କୌଣସି ଚିନ୍ତା ନଥିଲା । ମୋ ହୃଦୟରେ ଅନ୍ୟ କୌଣସି ଅଭିଳାଷ ନଥିଲା । ଅବାରିତ ଭାବରେ ମୁଁ କେବଳ ତାଙ୍କୁ ହିଁ ଦେଖୁଥିଲି । ମୋର ମନେହେଲା ମୁଁ ଏକମାତ୍ର ତାଙ୍କୁ ଚାହେଁ; ସେ ମଧ୍ୟ କେବଳ ମୋତେ ଚାହାନ୍ତି ।''

ବାବାଙ୍କର ଏହି ଉକ୍ତିରୁ ସ୍ପଷ୍ଟ ସୂଚିତ ହୁଏ ଯେ ବାବା ଗୁରୁକୃପା ଲାଭ ପାଇଁ ଭକ୍ତମାନଙ୍କୁ ସାଧନାର ପରାମର୍ଶ ଦେଉଥିଲେ । ଦୀକ୍ଷା ଗ୍ରହଣ କରିବା ଆଶାରେ ଆସିଥିବା ଜଣେ ବୃଦ୍ଧା ମହିଳାକୁ ସେ କାନରେ ମନ୍ତ୍ର ନ ଦେଇ କେବଳ ଗୁରୁଭକ୍ତିର ଅବତାରଣା କରିଥିଲେ ।'' ଏକ ସୁନ୍ଦର ଦୃଷ୍ଟାନ୍ତ ଦେଇ ସେ ମହିଳା ଜଣକୁ କହିଥିଲେ – ''ମା କଇଁଛ ନଦୀର ଗୋଟିଏ ପାର୍ଶ୍ୱରେ ଥାଏ । ତା'ର ଛୁଆ କଇଁଛମାନେ ନଦୀର ଅପର ପାର୍ଶ୍ୱରେ ଥାଆନ୍ତି । କିନ୍ତୁ ମା'ର ଦୃଷ୍ଟି ସଦାସର୍ବଦା ଛୁଆ କଇଁଛ ଉପରେ

ରହିଥାଏ । ଏ ଦୃଷ୍ଟିରେ ହୁଏତ ଛୁଆମାନଙ୍କର ପେଟ ପୂରେ ନାହିଁ, କିନ୍ତୁ ମା' ଓ ଛୁଅମାନଙ୍କର ଏହି ଏକନିଷ୍ଠ ଚାହାଣି ମଧ୍ୟରେ ଜୀବନଯାତ୍ରାର ଅଦମ୍ୟ ସାହସ ଓ ଜୀବନୀ ଶକ୍ତି ଭରି ରହିଥାଏ ।''

କବିହା ଅନାବଶ୍ୟକ ଯେ ଏପରି ଦୃଷ୍ଟାନ୍ତ ଦେଇ ବାବା ଗୁରୁଭକ୍ତିର ଅନନ୍ୟ ମହତ୍ତ୍ୱ ପ୍ରତିପାଦିତ କରିଥିଲେ । ଗୁରୁକୃପା ତଥା ଈଶ୍ୱରପ୍ରାପ୍ତି ପାଇଁ ସବୁଠାରୁ ଅଧିକ ଆବଶ୍ୟକ ହେଉଛି ଶ୍ରଦ୍ଧା ଓ ସବୁରୀ । ଅଟଳ ବିଶ୍ୱାସ ଓ ଅବିଚଳିତ ନିଷ୍ଠା ନେଇ ସାଧନା ପଥରେ ଅଗ୍ରସର ହେବାପାଇଁ ବାବା ସଦାସର୍ବଦା କହିଆସୁଥିଲେ । ସବୁରୀ ବା ଧୈର୍ଯ୍ୟର ସହିତ ସାଧକକୁ ଈଶ୍ୱରାନୁଭୂତି ପଥରେ ଅଗ୍ରସର ହେବାକୁ ପଡ଼ିବ – ଏକଥା ବାବା ବାରମ୍ବାର ଚେତଉଥିଲେ । ଶ୍ରଦ୍ଧା ଓ ସବୁରୀର ପୁନଃପୁନଃ ପ୍ରୟୋଗ ଯୋଗୁଁ ବାବାଙ୍କ ଉପଦେଶାବଳୀରେ ଶ୍ରଦ୍ଧା ଓ ସବୁରୀ ଯୁଗ୍ମ ପଥପ୍ରଦର୍ଶକ ରୂପେ ବିବେଚିତ ।

## ଶରଣାଗତି ଓ ପ୍ରପତ୍ତି

ବାବାଙ୍କ ପ୍ରଦର୍ଶିତ ଭକ୍ତିପଥରେ ଲକ୍ଷ୍ୟବିନ୍ଦୁ ହେଉଛି ଶରଣାଗତି ଓ ପ୍ରପତ୍ତି । ଈଶ୍ୱରଙ୍କ ପାଖରେ ସର୍ବୋତୋଭାବେ ନିଜକୁ ସମର୍ପଣ କରି ପୂର୍ଣ୍ଣମୋକ୍ଷ ଲାଭ ସାଧକର ବା ଭକ୍ତର ଶୀର୍ଷ ଅନୁଭବ ।

ବାବା ଭକ୍ତି ଓ ଜ୍ଞାନ ମଧ୍ୟରେ ବିଭେଦତ୍ୱ ଦେଖୁ ନଥିଲେ । ଦୁଇଟି ପଥର ଲକ୍ଷ୍ୟ ବିନ୍ଦୁ ଏକ । କିନ୍ତୁ ସୁନ୍ଦର ଉଦାହରଣ ଦେଇ ବାବା କହୁଥିଲେ ଯେ ଜ୍ଞାନ ହେଉଛି ରାମଫଳ ସଦୃଶ । ବାହାରର କଠିନ ଆବରଣ ଭାଙ୍ଗି ଭିତରେ ଥିବା ମିଷ୍ଟତାକୁ ଅନୁଭବ କରାଯାଇପାରେ । ମାତ୍ର ଭକ୍ତି ହେଉଛି ସୀତାଫଳ । ଏହା ରସ ପରିପୂର୍ଣ୍ଣ । ବାହାର ଓ ଭିତର କୋମଳତା ଓ ମିଷ୍ଟତାରେ ପରିପୂର୍ଣ୍ଣ । ପୁନଶ୍ଚ ରାମଫଳ କେବଳ ଗଛରେ ଥାଇ ପାଚିବା ଆବଶ୍ୟକ । ତଳେ ପଡ଼ିଗଲେ ରାମଫଳ ନଷ୍ଟ ହୁଏ । ସେହିପରି ଜ୍ଞାନୀର ମଧ୍ୟ ପତନ ଘଟିପାରେ । ଗର୍ବ ଓ ଅହମିକାର ପ୍ରଭାବରେ ଜ୍ଞାନୀର ବିଚ୍ୟୁତି ଘଟିପାରେ । ଏ ଦୃଷ୍ଟିରୁ ଭକ୍ତିପଥର ମହତ୍ତ୍ୱ ଅଧିକ ।

ଭକ୍ତିପଥରେ ଯାତ୍ରା କରୁଥିବା ବ୍ୟକ୍ତି ବିଭିନ୍ନ ମାଧ୍ୟମରେ ଆଶ୍ରୟ ନେଇପାରେ । ଏ ପ୍ରସଙ୍ଗରେ ବାବା ନବଧା ଭକ୍ତି କଥା ମଧ୍ୟ କହୁଥିଲେ । ଶ୍ରବଣ, କୀର୍ତ୍ତନ, ମନନ (ନାମସ୍ମରଣ), ପଦସେବନ, ବନ୍ଦନ, ଅର୍ଚ୍ଚନ, ଦାସ୍ୟ, ବାତ୍ସଲ୍ୟ ଏବଂ ଆତ୍ମନିବେଦନ । ନବଧା ଭକ୍ତି ଉପରେ ବାବା କିପରି ଗୁରୁତ୍ୱ ଦେଉଥିଲେ ତାହା ଗୋଟିଏ ଘଟଣାରୁ

ସୂଚିତ । ଥରେ ଅନନ୍ତରାଓ ପଟ୍ଟଙ୍କର ନାମଧେୟ ଜଣେ ବ୍ୟକ୍ତି ବାବାଙ୍କ ଦର୍ଶନ ପାଇଁ ଆସିଲେ । ବ୍ୟକ୍ତିଜଣକ ବାବାଙ୍କ ପାଖରେ ଉପସ୍ଥିତ ଥିବା ସମୟରେ ବାବା ହଠାତ୍ ଗୋଟିଏ ଗପର ଅବତାରଣା କରିବସିଲେ । ବାବା କହିଲେ ଯେ ଥରେ ଜଣେ ବ୍ୟକ୍ତି ଶିରିଡ଼ିକୁ ଆସିଥିଲା । ତା'ର ଖଚର ନ'ଟି ଲେଣ୍ଡି ଛାଡ଼ି ଦେବାପରେ ବ୍ୟକ୍ତିଜଣକ ସଯତ୍ନରେ ଲେଣ୍ଡିସବୁ ସଂଗ୍ରହ କରିନେଲା । ପ୍ରଥମେ ଅନନ୍ତରାଓ ପଟ୍ଟଙ୍କର୍ ଏ କଥାର ତାତ୍ପର୍ଯ୍ୟ ବୁଝିପାରିଲେ ନାହିଁ । ସେ ମସ୍‌ଜିଦ୍‌ରୁ ଫେରିଯିବା ପରେ ଅନ୍ୟମାନଙ୍କ ସହିତ ବାବାଙ୍କ ବିଷୟରେ କଥାବାର୍ତ୍ତା ହେବାପରେ ତାଙ୍କର ଅନ୍ତର୍ଦୃଷ୍ଟି ଉଦୟ ହେଲା । ନ'ଟି ଲେଣ୍ଡି ନବଧା ଭକ୍ତିର ସୂଚକ ବୋଲି ସେ ଜାଣିପାରିଲେ । ପରଦିନ ସେ ମସ୍‌ଜିଦ୍‌କୁ ଆସିଲା ପରେ ସେ ନ'ଟି ଲଣ୍ଡି ଏହା ମଧ୍ୟରେ ସଂଗ୍ରହ କରିଛନ୍ତି କି ନାହିଁ ବୋଲି ପଚାରିବାରୁ ଅନନ୍ତରାଓ ବିନୀତ ଭାବରେ ମଥା ନତ କଲେ ।

ଭକ୍ତିର ଶୀର୍ଷବିନ୍ଦୁ ହେଉଛି ଶରଣାଗତି । ସମ୍ପୂର୍ଣ୍ଣ ଶରଣାଗତିକୁ ସାଇବାବା 'ପ୍ରପତ୍ତି' ବୋଲି କହୁଥିଲେ । ବାବା କହୁଥିଲେ ଯେ ଶରଣାଗତି ପୂର୍ବରୁ ଜ୍ଞାନ କିମ୍ବା ଭକ୍ତିର ବିକାଶ ପାଇଁ ଜପଧ୍ୟାନ ଇତ୍ୟାଦି ଆବଶ୍ୟକ । ମାତ୍ର ଶରଣାଗତି ଆସିଗଲେ ଏ ସବୁ ନିଷ୍ପ୍ରୟୋଜନ ହୋଇପଡ଼େ ।

ବାବା ନାନା ସାହେବ ଚନ୍ଦ୍ରକର୍‌ଙ୍କୁ ଓ ଚନ୍ଦ୍ରକର୍ ଆବୃତ୍ତି କରୁଥିବା ଗୀତାର ଗୋଟିଏ ଶ୍ଳୋକରେ 'ପ୍ରଣିପାତ'ର ତାତ୍ପର୍ଯ୍ୟ ବୁଝାଇବାକୁ ଯାଇ ସାଷ୍ଟାଙ୍ଗ ପ୍ରଣିପାତ ଉପରେ ପ୍ରାଧାନ୍ୟ ଦେଇଥିଲେ । ସାଷ୍ଟାଙ୍ଗ ପ୍ରଣିପାତରେ ଶରୀରରେ ଆଠୋଟି ଅଙ୍ଗ ଭୂମିକୁ ସ୍ପର୍ଶ କରେ । କିନ୍ତୁ, ସାଇବାବା ସାଷ୍ଟାଙ୍ଗ ଶବ୍ଦକୁ ଅଧିକ ଗଭୀର ଓ ବ୍ୟାପକ ଅର୍ଥ ଦେବାକୁ ଯାଇ ସୂଚାଇଥିଲେ ଯେ ପ୍ରଣିପାତ ପ୍ରସଙ୍ଗରେ ଆଠୋଟି ଶାରୀରିକ ଅଙ୍ଗ ସଂପର୍କରେ ଯାହା କୁହାଯାଇଛି ଶରଣାଗତି କ୍ଷେତ୍ରରେ ମନବୁଦ୍ଧି ଅହଂକାର ସହିତ ସବୁ ଶାରୀରିକ ଓ ମାନସିକ ବିଭାବର ସମର୍ପଣ ହେଉଛି ପ୍ରକୃତ ତାତ୍ପର୍ଯ୍ୟ । ସୁତରାଂ ପ୍ରପତ୍ତି ବା ପୂର୍ଣ୍ଣ ମୋକ୍ଷଲାଭ ପାଇଁ ପରିପୂର୍ଣ୍ଣ ସମର୍ପଣ ଆବଶ୍ୟକ ।

ଶରଣାଗତିର ପ୍ରଥମ ସୋପାନରେ ବ୍ୟକ୍ତି ସକ୍ରିୟ ଥାଏ । ଜପ ଧ୍ୟାନ ପୂଜା ଅର୍ଚ୍ଚନା ଇତ୍ୟାଦି କ୍ରିୟାକଳାପରେ ନିମଗ୍ନ ଥାଇପାରେ । କିନ୍ତୁ ଶରଣାଗତିର ପରବର୍ତ୍ତୀ ସୋପାନରେ ବ୍ୟକ୍ତି ନିଷ୍କ୍ରିୟ ହେବାକୁ ଲାଗେ । ମନର କାର୍ଯ୍ୟକଳାପ ତିରୋହିତ

ହୋଇଥାଏ । ଅହମିକା ସମ୍ପୂର୍ଣ୍ଣ ଭାବରେ ଦୂରୀଭୂତ ହୋଇଥାଏ । ଏକାତ୍ମ ଭାବ ପୂର୍ଣ୍ଣ ପ୍ରତିଷ୍ଠିତ ହୋଇଥାଏ । ପ୍ରପତ୍ତିର ଉଜ୍ଜ୍ୱଳ ସମ୍ଭାବନା ଉପସ୍ଥିତ ହୋଇ ସାରିଥାଏ ।

ପରିଶେଷରେ କୁହାଯାଇପାରେ ଯେ ଆତ୍ମପ୍ରୀତି, ନିଜ ପରିବାର ପାଇଁ ପ୍ରୀତି ଓ ସଂସାର ପ୍ରୀତିର ଉର୍ଦ୍ଧ୍ୱକୁ ଯାଇ ନିଃସ୍ୱାର୍ଥପର ଭାବରେ ଈଶ୍ୱରଙ୍କ ପ୍ରତି ପ୍ରୀତି ପ୍ରକାଶ କରିବା ହିଁ ଭକ୍ତି । ଶିରିଡ଼ିର ସାଇବାବା ଏହି ପରା ଭକ୍ତି ସଂପର୍କରେ ବ୍ୟକ୍ତିବିଶେଷଙ୍କୁ ସଚେତନ କରାଇବାକୁ ଚାହୁଁଥିଲେ । ଏପରି ଉପଲବ୍ଧି ପାଇଁ ଗୁରୁଙ୍କ ସହିତ ଏକନିଷ୍ଠ ସଂପର୍କ ପ୍ରତିଷ୍ଠା କରିବା, ସେବା କରିବା ଏବଂ ଗୁରୁକୃପା ଲାଭ କରିବା ଉପରେ ଗୁରୁତ୍ୱ ଦେଉଥିଲେ । ଭକ୍ତିର ଫଳସ୍ୱରୂପ ପ୍ରପତ୍ତି ବା ପୂର୍ଣ୍ଣମୋକ୍ଷଲାଭ ହୁଏ ବୋଲି ବାରମ୍ବାର ସୂଚାଉଥିଲେ । ଭକ୍ତି ସଂପର୍କରେ ତାଙ୍କର ସନ୍ଦେଶ କେବଳ ତତ୍ତ୍ୱରୂପରେଖ ନେଇ ନଥିଲା । ସ୍ନେହମୟୀ ଜନନୀ ତା'ର ପ୍ରିୟ ସନ୍ତାନକୁ ଶିକ୍ଷା ଦେଲା ପରି ସାଇବାବା ମାନବ ସମାଜ ଆଗରେ ଘଟଣାସବୁର ବିନ୍ୟାସ କରାଇ ମନୋଜ୍ଞଭାବରେ ବୁଝାଉଥିଲେ ।



# ସାଇନାଥଙ୍କ ନିର୍ଦ୍ଦେଶିତ କର୍ମଯୋଗ

ଆଧୁନିକ ଯୁଗ କର୍ମପ୍ରବାହର ଯୁଗ । ମନୁଷ୍ୟର ଚତୁଃପାର୍ଶ୍ୱରେ ଜାଗତିକ କର୍ମର ଆହ୍ୱାନ ତାକୁ ଅସ୍ଥିର କରୁଛି । ମନୁଷ୍ୟର ମସ୍ତିଷ୍କରେ ଆଗାମୀ କାଲିର କର୍ମଯୋଜନା ତା'ର ଶାନ୍ତିପୂର୍ଣ୍ଣ ନିଦ୍ରା ହରଣ କରୁଛି । ବାସ୍ତବରେ ତା'ର କାର୍ଯ୍ୟର ପରିମାଣ ଯେତେ ସୀମିତ ହେଉ ନା କାହିଁକି, ବାହ୍ୟିକ ଦୃଷ୍ଟିରେ ନିଜର ପରିବାରର ନିକଟସ୍ଥ ପରିପାର୍ଶ୍ୱର ଏବଂ ନିଜ ସମାଜର କାମସବୁର ବୁଢ଼ୀଆଣୀ ଜାଲ ଭିତରେ ପଡ଼ି ମଣିଷ ଅସହାୟ ହୋଇପଡ଼ିଛି । ଏହି ଅସହାୟତାବୋଧ ତା'ର ମାନସିକ ପ୍ରସନ୍ନତାକୁ ନଷ୍ଟକରି ଅବସାଦର ଗ୍ଳାନି ଆଣିଦେଇଛି ।

କର୍ମଜନିତ ଯନ୍ତ୍ରଣାରୁ ମୁକ୍ତିଦେଇ କର୍ମସୃଷ୍ଟ ଆନନ୍ଦ ପ୍ରବାହ ସକ୍ରିୟ କରିବାକୁ ଅବତାର ପୁରୁଷମାନେ ସବୁବେଳେ ଦିଗ୍‌ଦର୍ଶନ ଦେଇଛନ୍ତି । କର୍ମ ମନୁଷ୍ୟକୁ ଯନ୍ତ୍ରଣା ବିଜଡ଼ିତ ନ କରି ଏହା ଭଗବାନଙ୍କ ସହିତ ସଂଯୋଗ ସ୍ଥାପନର ମାଧ୍ୟମ ହୋଇପାରେ ବୋଲି ବାରମ୍ବାର ନିର୍ଘୋଷଣ କରିଛନ୍ତି । ଈଶ୍ୱରପ୍ରାପ୍ତି ପାଇଁ ଜ୍ଞାନ ଓ ଭକ୍ତି ପରି କର୍ମ ମଧ୍ୟ ଏକ ସୁପ୍ରଶସ୍ତ ରାଜମାର୍ଗ ହୋଇପାରେ ବୋଲି ବୁଝାଇଛନ୍ତି । ତଥାପି ବିସ୍ମରଣଶୀଳ ମନୁଷ୍ୟ ନିଜର କର୍ମକୁ ନିଜ ମୁକ୍ତିର ମାଧ୍ୟମରୂପେ ପ୍ରୟୋଗ ନ କରି ନିଜକୁ କର୍ମବଦ୍ଧ କରିଚାଲିଛି ।

ଏ ଯୁଗର ଅବତାର ପୁରୁଷ ଶିରିଡ଼ିର ଶ୍ରୀ ସାଇନାଥ ମଧ୍ୟ ଜନମାନସର ମୁକ୍ତି ପାଇଁ କର୍ମଯୋଗର ସାରବତ୍ତା ନିଜ ଜୀବନ ତଥା ଉପଦେଶ ମାଧ୍ୟମରେ ଦର୍ଶାଇଛନ୍ତି । ସଂସାରରେ ନିତ୍ୟନୈମିତ୍ତିକ ଜୀବନ ଯାପନ କରି ମଧ୍ୟ ମନୁଷ୍ୟ ବ୍ରହ୍ମାନନ୍ଦ ପ୍ରାପ୍ତିର ସମ୍ଭାବନା ସୃଷ୍ଟି କରିପାରେ ବୋଲି ସାଇନାଥ ନିର୍ଦ୍ଦେଶ ଦେଇ ଯାଇଛନ୍ତି । ଶିରିଡ଼ି ସାଇବାବାଙ୍କ ଜୀବନ ଚରିତ ଲେଖିଥିବା ପ୍ରଖ୍ୟାତ ଗବେଷକ ଆର୍ଥର ଅସ୍‌ବର୍ଣ୍ଣ କହନ୍ତି ଯେ ଆଧୁନିକ ଜୀବନ ସହିତ ସଙ୍ଗତି ରକ୍ଷା କରି ଆଧ୍ୟାତ୍ମିକ ବିକାଶର ସମ୍ଭାବନା ସୃଷ୍ଟି କରିବା ସାଇବାବାଙ୍କର ଏକ ମୁଖ୍ୟ ବିଶେଷତ୍ୱ ଥିଲା । ପାରିବାରିକ ଜୀବନ ପ୍ରତି ବିରାଗ ଭାବ ପରିବର୍ତ୍ତେ ସେ ଅନୁରାଗ ସୃଷ୍ଟି କରୁଥିଲେ । ଜଙ୍ଗଲର କୁଟୀର ମଧ୍ୟରେ ଯେଉଁ ସାଧନା ସମ୍ଭବପର, ନିଜର ଗୃହରେ, କାର୍ଯ୍ୟାଳୟରେ

ଏବଂ ଲୋକାଳୟରେ ମଧ୍ୟ ଆଧ୍ୟାତ୍ମିକ ସାଧନା ସମ୍ଭବପର ବୋଲି ସେ ଦର୍ଶାଉଥିଲେ । ଅସ୍‌ବର୍ଣ୍ଣ ପୁଣି କହନ୍ତି ଯେ ସଂସାରତ୍ୟାଗୀ ବହୁ ସାଧୁସନ୍ଥ ଶିରିଡ଼ି ବାବାଙ୍କ ପାଖକୁ ଆସୁଥିଲେ ମଧ୍ୟ ସାଧନାରତ ବହୁ ଗୃହୀ ସାଇବାବାଙ୍କୁ ଜୀବନର ପରମ ଦିଗଦର୍ଶକରୂପେ ସ୍ୱୀକାର କରିନେଇଥିଲେ ।

## ମୁକ୍ତି ଓ ଭୁକ୍ତି

ଏହା ସତ୍ୟ ଯେ ମୁକ୍ତି ମନୁଷ୍ୟର ଅନ୍ତିମ ଲକ୍ଷ୍ୟବିନ୍ଦୁ । ନିଷ୍କାମ କର୍ମ ମାଧ୍ୟମରେ ମନୁଷ୍ୟକୁ ମୁକ୍ତିପଥରେ ଆଗେଇନେବା ସାଇନାଥଙ୍କ ଅବତାରତ୍ୱର ଉଦ୍ଦେଶ୍ୟ ଥିଲା । ତଥାପି ଜୀବନର ଏହି ଯାତ୍ରାପଥରେ ଗତି କରୁଥିବା ମନୁଷ୍ୟର ସାଂସାରିକ ଦୁଃଖକଷ୍ଟ ଓ ଶାରୀରିକ ଯନ୍ତ୍ରଣା ଆଦି ପ୍ରତି ସେ ଉଦାସୀନ ନ ଥିଲେ । ବରଂ ଆଗ୍ରହର ସହିତ ସେ ଲୋକମାନଙ୍କର ଜାଗତିକ ବେଦନାସବୁ ଶୁଣୁଥିଲେ, କ୍ଳେଶନାଶ ପାଇଁ ଉପାୟ କରୁଥିଲେ ଏବଂ ଏ ସବୁ କରିବା ମଧ୍ୟରେ ନୀତିଉପଦେଶ ଦେଉଥିଲେ । ଅସ୍ୱାଭାବିକ ଅବସ୍ଥା ଦୂର ହେଲାପରେ ଆଧ୍ୟାତ୍ମିକ ସନ୍ଦେଶ ବେଶୀ ଫଳବତୀ ହେବାର ଜଣାପଡୁଥିଲା ।

କେତେକ ସ୍ଥଳରେ ବାବା ଆଶ୍ରିତ ବ୍ୟକ୍ତିମାନଙ୍କର ଆର୍ଥିକ ଦୁରବସ୍ଥା ଦୂରକରି ଅର୍ଥନୈତିକ ସ୍ୱଚ୍ଛଳତାରେ ସହାୟକ ହେଉଥିଲେ । ବାବା ବାୟାଜୀ ଆପାଜୀ ପଟେଲଙ୍କୁ ବର୍ଷ ବର୍ଷ ଧରି ନିୟମିତ ଭାବେ ପ୍ରତିଦିନ ଚାରିଟଙ୍କା ଦେଉଥିଲେ । ଏହି ଅର୍ଥ ସେ ଅନ୍ୟମାନଙ୍କୁ ଧାର ଦେବାରେ କିମ୍ୱା ଖାଇବା ପିଇବାରେ ଖର୍ଚ୍ଚ କରିନଦେଉ ବୋଲି ମଧ୍ୟ ନିର୍ଦ୍ଦେଶ ଦେଇଥିଲେ । ଫଳତଃ ବାୟାଜୀ ଏହି ଅର୍ଥର ବିନିମୟରେ ୮୪ ଏକର ଜମି କିଣିବାରେ ସମର୍ଥ ହୋଇପାରିଥିଲେ ।

ଆର୍ଥିକ ଦୁରବସ୍ଥା ଦୂରକରି ବ୍ୟକ୍ତିଙ୍କୁ ସାଧନା ପଥରେ ନେଇଯିବା ପାଇଁ ବାବା ଯେପରି ଅନୁକୂଳ ପରିବେଶ ସୃଷ୍ଟି କରୁଥିଲେ, ସେହିପରି ବ୍ୟକ୍ତିର ସୀମାହୀନ ଅବାନ୍ତର ପାର୍ଥିବ କାମନାରେ ଅଂକୁଶ ଦେଇ ନିୟନ୍ତ୍ରଣ ମଧ୍ୟ କରୁଥିଲେ । ଥରେ ବମ୍ବେର ଜଣେ ଦଲାଲ ଦାମୋଦର ରସନେଙ୍କୁ ତୁଳାବ୍ୟବସାୟୀ କ୍ଷେତ୍ରର ଲକ୍ଷ ଲକ୍ଷ ଟଙ୍କାର ଲାଳସା ଦେଖାଇଲେ । ରସନେ ବାବାଙ୍କ ଏକ ଅନୁଗତ ହୋଇଥିବାରୁ ବାବାଙ୍କ ଅନୁମତି ପାଇଁ ଶ୍ୟାମଙ୍କ ପାଖକୁ ପତ୍ର ଲେଖିଲେ । ଶ୍ୟାମ ସେ ପତ୍ରଟି ଧରି ବାବାଙ୍କ ପାଖକୁ ଆସି ପଢ଼ିବା ପୂର୍ବରୁ ବାବା କହିଲେ – ‘‘ଦାମୋଦର ଆକାଶ ଛୁଇଁବାକୁ ଚାହୁଁଛି । ଭଗବାନ ତାକୁ ଯାହା ଦେଇଛନ୍ତି ସେ ସେଥିରେ ସନ୍ତୁଷ୍ଟ ନୁହେଁ ।

ତା'ର ବୁଦ୍ଧିବୃତ୍ତି ହାନି ହେଲାଣି, ତାକୁ ଲେଖିଦିଅ ଯେ, ତା'ର ବର୍ତ୍ତମାନର ଅବସ୍ଥା କିଛି ଖରାପ ନୁହେଁ । ବର୍ତ୍ତମାନର ମିଳୁଥିବା ଖାଦ୍ୟ ତା' ପାଇଁ ଯଥେଷ୍ଟ, ଲକ୍ଷ ଲକ୍ଷ ଟଙ୍କା ପଛରେ ଗୋଡ଼ାଇ ଅଶାନ୍ତ ହେବାର ଦରକାର ନାହିଁ ।''

ବାବାଙ୍କର ଏପରି ନିର୍ଦ୍ଦେଶ ପାଇ ମଧ୍ୟ ଦାମୋଦରଙ୍କ ମନ ମାନିଲା ନାହିଁ । ସେ ନିଜେ ଆସିଲେ ବାବା ତାଙ୍କର ମତ ପରିବର୍ତ୍ତନ କରିପାରନ୍ତି ଭାବି ସେ ପୁନଶ୍ଚ ଅନୁରୋଧ ଜଣାଇଲେ । ବାବାଙ୍କ ପାଦରେ ମାଲିସ୍ କରୁ କରୁ ସେ ଆଉଥରେ ଲକ୍ଷ ଲକ୍ଷ ଟଙ୍କାର ଲାଭର ସମ୍ଭାବନା କଥା କହିଲେ ଏବଂ ଏପରି ଲାଭରୁ ବାବାଙ୍କୁ ମଧ୍ୟ କିଛି ଅଂଶ ମିଳିବ ବୋଲି ସୂଚନା ଦେଲେ । ବାବା ବିରକ୍ତି ପ୍ରକାଶ କରି କହିଲେ – ''ମୁଁ ସଂସାରର ଲାଭକ୍ଷତିର ହିସାବ ମଧ୍ୟରେ ନାହିଁ ।'' କହିବା ଅନାବଶ୍ୟକ ଯେ ଦାମୋଦର ତାଙ୍କର ବ୍ୟବସାୟ ବାସନା ପରିତ୍ୟାଗ କଲେ ।

ଏହି ଘଟଣାରୁ ସ୍ପଷ୍ଟ ଯେ ବାବା ବ୍ୟକ୍ତି ବିଶେଷଙ୍କୁ ଦୁର୍ଗତି ଦୂର କରୁଥିଲେ । ଏହା ସତ୍ତ୍ୱେ କାମନାର ସୀମାଙ୍କନ ପାଇଁ ତାଙ୍କର ପ୍ରଚ୍ଛନ୍ନ ନିର୍ଦ୍ଦେଶ ରହିଥିଲା । ଧନ ସମ୍ପଦର ଆଧିକ୍ୟ ଯେ ବ୍ୟକ୍ତିପାଇଁ ବିଷମ ସମସ୍ୟା ସୃଷ୍ଟି କରିପାରେ ଏବଂ ସତ୍‌କର୍ମ ସାଧନାରେ ବାଧା ସୃଷ୍ଟି ପଡ଼ିପାରେ, ଏପରି ଚେତାବନୀ ସେ ପ୍ରଚ୍ଛନ୍ନ ଏବଂ ପ୍ରକାଶ୍ୟ ଭାବରେ ଦେଉଥିଲେ ।

ଏ ପରିପ୍ରେକ୍ଷୀରେ ଶିରିଡ଼ି ସାଇବାବାଙ୍କୁ ଦତ୍ତାତ୍ରେୟଙ୍କ ଏକ ଅବତାରର ମହତ୍ତ୍ୱ ଦିଆଯାଇଥାଏ । ଦତ୍ତାତ୍ରେୟ ହେଉଛନ୍ତି ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କ ସମ୍ମିଳିତ ରୂପ । ପୁନଶ୍ଚ ସେ ପ୍ରାର୍ଥନାକାରୀର ସବୁପ୍ରକାର ଅଭୀଷ୍ଟ ପୂରଣ କରନ୍ତି । ସେ ଆଧ୍ୟାତ୍ମିକ ମୁକ୍ତି ଦିଅନ୍ତି ଏବଂ ଜାଗତିକ ଧନସଂପଦ (ଭୁକ୍ତି) ମଧ୍ୟ ଦିଅନ୍ତି । ପ୍ରଭୁ ଦତ୍ତାତ୍ରେୟଙ୍କ ସାକାର ଅବତାର ରୂପେ ଶିରିଡ଼ି ସାଇବାବା ଉଭୟେ ମୁକ୍ତି ଓ ଭୁକ୍ତି ପ୍ରଦାନକାରୀ ପୁରୁଷ ଥିଲେ ।

ଦତ୍ତାତ୍ରେୟ ଅବତାରର ଏହି ବୈଶିଷ୍ଟ୍ୟ ସଂପର୍କରେ ୧୯୮୬ ମସିହାରେ ପ୍ରଫେସର କସ୍ତୁରୀ ଥରେ କହିଥିଲେ ଯେ ଦତ୍ତାତ୍ରେୟ କେତେବେଳେ ଯୋଗୀ ତ କେତେବେଳେ ଭୋଗୀ, ପୁଣି ଅନ୍ୟ ସମୟରେ ସେ ବୈରାଗୀ ! ଭୋଗୀ ହିସାବରେ ସେ ସଂସାରରେ ଜୀବନଯାପନ କରନ୍ତି; ସାଂସାରିକ ବିଷୟ ବସ୍ତୁରେ ଜଡ଼ିତ ହୁଅନ୍ତି, ପୁଣି ହଠାତ୍ ସଂସାର ତ୍ୟାଗ କରି ବୈରାଗୀର ଜୀବନ ଆଦରି ନିଅନ୍ତି, ଶିରିଡ଼ି ବାବାଙ୍କଠାରେ ମୁକ୍ତି ଓ ଭୁକ୍ତିର ଏପରି ଅପୂର୍ବ ସମନ୍ୱୟ ଥିଲା । ସନ୍ତାନ ଲାଭପାଇଁ

ଆରୋଗ୍ୟ ପାଇଁ କାମନା କରି, ଧନସମ୍ପଦର ଆଶା ରଖି ଲୋକମାନେ ବାବାଙ୍କୁ ପ୍ରାର୍ଥନା କରୁଥିଲେ । ତଥାପି ସାଧନାରୁ ସଫଳତା ପାଇଁ ଓ ମୁକ୍ତିଲାଭ ପାଇଁ କୌଣସି ପ୍ରତିବନ୍ଧକ ନଥିଲା । ବାବା ଭୁକ୍ତି ପ୍ରଦାନ କରି ମନର ଅସ୍ଥିରତା ଦୂର କଲାପରେ ମୁକ୍ତି ପାଇଁ ଲୋକମନରେ ବ୍ୟାକୁଳତା ସୃଷ୍ଟି କରୁଥିଲେ ।

## ସଦାଚାର ଓ ସମର୍ପଣ

ଶିରିଡ଼ି ସାଇବାବା ସମସ୍ତ ଅଭୀଷ୍ଟ ପୂରଣ କରିବା ମାଧ୍ୟମରେ ସଦାଚାରପୂର୍ଣ୍ଣ ଜୀବନ ଯାପନ ପାଇଁ ଲୋକମାନଙ୍କୁ ପ୍ରେରଣା ଦେଉଥିଲେ । ସନାତନ ଧର୍ମ ଯେଉଁ ସମସ୍ତ ନୀତିନିୟମ ଉପରେ ଗୁରୁତ୍ୱ ଦିଏ ସେଗୁଡ଼ିକ ଜୀବନର ଅଙ୍ଗୀଭୂତ କରିବା ପାଇଁ ପରାମର୍ଶ ଦେଉଥିଲେ ।

ବାବା କହୁଥିଲେ ଯେ କର୍ମ ଓ ତା'ର ଫଳାଫଳକୁ ଏଡ଼ାଇ ଦେଇ ହେବ ନାହିଁ । ଆମ ସାଂସାରିକ ସ୍ଥିତି ଓ ଜୀବନ ଚକ୍ରର ଏ ଏକ ଅବିଚ୍ଛେଦ୍ୟ ଅଂଶ । କର୍ମ ଦୁଇଧାର ବିଶିଷ୍ଟ ଏକ ଖଣ୍ଡା ପରି । ଏହାକୁ ଠିକ୍ ରୂପେ ପ୍ରୟୋଗ କରି ମନୁଷ୍ୟ ନିଜ ଭାଗ୍ୟର ପ୍ରଭୁ ହୋଇପାରେ । ପୁଣି ଏହାର ଅପପ୍ରୟୋଗ କରି ନିଜର କାରାଗାର ବି ନିର୍ମାଣ କରିପାରେ । ମୁଣ୍ଡକ ଉପନିଷଦରେ କୁହାଯାଇଛି ଯେ କର୍ମର ଚାରୋଟି ଅସ୍ଥାୟୀ ପରିଣତି ରହିଛି । ସେଗୁଡ଼ିକ ହେଉଛି କିଛି ଉତ୍ପାଦନ କରିବା, କିଛି ପରିବର୍ତ୍ତନ କରିବା, କିଛି ପବିତ୍ର କରିବା ଏବଂ କିଛି ପଦାର୍ଥ ହାସଲ କରିବା । ବାବା ସଦାସର୍ବଦା ଉପଦେଶ ଦେଉଥିଲେ ନିଷ୍କାମ ଓ ସ୍ୱାର୍ଥହୀନ କର୍ମ ମାଧ୍ୟମରେ ନିଜକୁ ପବିତ୍ର ବା ବିଶୁଦ୍ଧ କରିବା ପାଇଁ ।

ନିଷ୍କାମ ଭାବରେ କର୍ମ ସଂପାଦନ ପ୍ରକୃତରେ ସାଧ୍ୟାତୀତ । ସୁତରାଂ ଭଗବାନ କିମ୍ବା ଗୁରୁଙ୍କ ଉଦ୍ଦେଶ୍ୟରେ କର୍ମସବୁକୁ ସମର୍ପଣ କରି କର୍ମପଥରେ ଅଗ୍ରସର ହେବା ହିଁ ସମ୍ଭବ । ପ୍ରତ୍ୟେକ କର୍ମକୁ ଏକଗ୍ରତା, ନିଷ୍ଠା, ଭକ୍ତି ଓ ବୈରାଗ୍ୟଭାବ ରଖି କରିବା ପ୍ରୟୋଜନ ବୋଲି ବାବା କହୁଥିଲେ ।

କର୍ମ ସଂପାଦନ ସମୟରେ ବୈରାଗ୍ୟଭାବ ବା ସମତା କିପରି ପ୍ରୟୋଜନ ଥରେ ବାବା ଗୋଟିଏ ଘଟଣା ସୃଷ୍ଟିକରି ପ୍ରାଞ୍ଜଳ ଭାବରେ ବୁଝାଇଥିଲେ । ରାମଦାସୀ ନାମକ ଜଣେ ବ୍ୟକ୍ତି ବାବାଙ୍କ ପାଖରେ ପ୍ରତ୍ୟେହ ବିଷ୍ଣୁ ସହସ୍ରନାମ ପାରାୟଣ କରୁଥିଲେ । ଏ ପୋଥିଟି ତାଙ୍କର ଅତି ପ୍ରିୟ ଥିଲା । ନିରନ୍ତର ସେ ଏ ପୋଥିଟି ସହିତ ସଂଯୋଗ ରଖିଥିଲେ । କାହାରିକୁ ଏ ପୋଥିଟି ଦେଉ ନଥିଲେ । ଥରେ

ବାବା ନିଜର ପେଟରେ ଯନ୍ତ୍ରଣା ହେଉଛି ବୋଲି ଛଳନା ପ୍ରକାଶ କଲେ । ପାଖରେ ଅନ୍ୟ କେହି ନଥିବାରୁ ରାମଦାସୀକୁ ଅଗତ୍ୟା ଔଷଧ ଆଣିବା ପାଇଁ ବାହାରକୁ ଯିବାକୁ ହେଲା । ରାମଦାସୀଙ୍କ ଅନୁପସ୍ଥିତିରେ ବାବା ପୋଥିଟି ନେଇ ଶ୍ୟାମକୁ ଦେଲେ ଏବଂ ବିଷ୍ଣୁ ସହସ୍ରନାମ ପାଠ କଲେ ଅପୂର୍ବ କଲ୍ୟାଣ ହେବ ବୋଲି ଜଣାଇଲେ ।

ପୋଥି ସହିତ ରାମଦାସୀଙ୍କ ସଂପର୍କ ବିଷୟରେ ଶ୍ୟାମ ଅଜ୍ଞ ନ ଥିଲେ । ସୁତରାଂ ସେ ନେବାକୁ ପ୍ରଥମେ ଅନିଚ୍ଛା ପ୍ରକାଶ କଲେ । ରାମଦାସୀ ପୋଥି ନ ଦେଖି କ୍ଷୁବ୍ଧ ହେବେ ବୋଲି ଜଣାଇଲେ । ତା'ଛଡ଼ା ଶ୍ୟାମ ଜଣେ ସାଧାରଣ ଗାଉଁଲି ଲୋକ ହୋଇଥିବାରୁ ଏପରି ପାଣ୍ଡିତ୍ୟପୂର୍ଣ୍ଣ ପୋଥି ତା' ପାଇଁ ଉପଯୋଗୀ ନୁହେଁ ବୋଲି ଶ୍ୟାମ ବିନୀତ ଭାବରେ ପ୍ରକାଶ କଲେ । କିନ୍ତୁ ବାବା ବାଧକରି ଶ୍ୟାମକୁ ଦେଲେ ଏବଂ ବିଷ୍ଣୁ ସହସ୍ରନାମ ପାରାୟଣ କରିବାକୁ ନିର୍ଦ୍ଦେଶ ଦେଲେ । ରାମଦାସୀ ଫେରିଲା ପରେ ଯାହା ଘଟିବାର କଥା ତାହା ହିଁ ହେଲା । ନିଜର ପ୍ରିୟ ପୋଥି ଯଥାସ୍ଥାନରେ ନ ଦେଖି ରାମଦାସୀ ଖୁବ୍ ରାଗିଗଲେ । ଏଣୁତେଣୁ କହିବାକୁ ଲାଗିଲେ । ବାବା ମଧ ଛାଡ଼ ପାଇଲେ ନାହିଁ । ବାବା ବାଧାଦେଇ କହିଲେ – ''ତୁମେ ଅନବରତ ପୋଥି ପଢୁଛ, ସହସ୍ରନାମ ଉଚ୍ଚାରଣ କରୁଛ; କିନ୍ତୁ ତୁମ ହୃଦୟରେ ଶୁଦ୍ଧତା କାହିଁ ? ସହସ୍ରନାମ ପାଠ କଲେ ମଧ ତୁମର ଦୁଃଖ ଯିବ ନାହିଁ । ତୁମେ ନିଜକୁ ରମାଦାସୀ ବୋଲି ପରିଚୟ ଦେଉଛ । ମାତ୍ର ବାହାରକୁ ବସ୍ତୁଜଗତ ପ୍ରତି ତୁମର ଉଦାସୀନତା କାହିଁ ? ତୁମର ଆସକ୍ତି ଅଛି । ମମତା ଅଛି, କିନ୍ତୁ ସମତା କାହିଁ ? ତୁମେ ଗୋଟିଏ ଛୋଟ ବାଳକ ପରି ବହି ଖଣ୍ଡିକ ପାଇଁ କଳି କରୁଛ । ଟଙ୍କା ଥିଲେ ଅଜସ୍ର ବହି ଆସିବ, କିନ୍ତୁ ମନୁଷ୍ୟର ବଂଧୁତା ଓ ଭଲପାଇବା ମିଳିପାରିବ ନାହିଁ ।'' ବାବାଙ୍କଠାରୁ ଦୃଢ଼ ସ୍ୱରରେ ଏପରି ଶୁଣିବା ପରେ ରାମଦାସୀଙ୍କର ମନୋଭାବ ପରିବର୍ତ୍ତନ ହୋଇଥିଲା । ସେ ଶାନ୍ତଭାବରେ ବାବାଙ୍କ ପରାମର୍ଶ ଗ୍ରହଣ କଲେ ।

ଦୈନନ୍ଦିନ କର୍ମ ସମ୍ପାଦନା କ୍ଷେତ୍ରରେ ବାବା ସମତାକୁ କିପରି ଗୁରୁତ୍ୱ ଦିଅନ୍ତି, ତାହା ଆଉ ଗୋଟିଏ ଘଟଣାରୁ ଜଣାପଡ଼େ । ଥରେ ବାବା ଏଚ୍.ଏସ୍. ଦୀକ୍ଷିତ୍‌ଙ୍କୁ ଏପରି ଗୋଟିଏ ପରୀକ୍ଷାରେ ପକାଇଲେ । ଦୀକ୍ଷିତ୍ ନିଜର କଠିନ ପରିଶ୍ରମ ବଳରେ ପ୍ରଭୂତ ଅର୍ଥ ଲାଭ କଲାପରେ କୃତଜ୍ଞତାବଶତଃ କିଛି ରୂପାମୁଦ୍ରା ବାବାଙ୍କୁ ଦେଲେ । ବାବା ଏ ପ୍ରୀତି ଉପହାର ଗ୍ରହଣ କଲାପରେ ମସ୍‌ଜିଦ୍‌ରେ ଉପସ୍ଥିତ ଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ମୁଠାଏ ମୁଠାଏ ଟଙ୍କା ବାଣ୍ଟିବାକୁ ଲାଗିଲେ । ଅଳ୍ପ ସମୟ ମଧ୍ୟରେ ସବୁତକ

ଟଙ୍କର ସରିଗଲା ତଥାପି ଦୀକ୍ଷିତ ମହାଶୟ ଅବିଚଳିତ ଭାବରେ ସ୍ଥିରହୋଇ ଠିଆ ହୋଇଥାନ୍ତି । ବାବା ନିଜର ଅନୁଗତମାନଙ୍କଠାରୁ ଏପରି ସମତା ଆଶା କରୁଥିଲେ ।

ନିଷ୍କାମ କର୍ମ ସଂପାଦନ ସହିତ ଆଉ ଗୋଟିଏ ଉପାଦାନ ବିଶେଷଭାବେ ଜଡ଼ିତ – ତାହା ହେଉଛି ପ୍ରେମପୂର୍ଣ୍ଣ ବ୍ୟବହାର । ନିଃସ୍ୱାର୍ଥପର ଭାବରେ ଅନ୍ୟର ସେବା କରିବା କର୍ମଯୋଗୀର ଏକ ବିଶିଷ୍ଟ ଅଙ୍ଗ, ମାତ୍ର ଏହି ସେବାକାର୍ଯ୍ୟ ପ୍ରେମରହିତ ନ ହୋଇ ପ୍ରେମପୂର୍ଣ୍ଣ ହେବା ଆବଶ୍ୟକ । ଭୀମାବାଈ ନାମକ ଜଣେ ମହିଳା ଭକ୍ତକୁ ଗୋଟିଏ କୁଷ୍ଠରୋଗୀର ସେବା କରିବାକୁ ନିର୍ଦ୍ଦେଶ ଦେଲାବେଳେ ବାବା ଏହାର ସୂଚନା ଦେଇଥିଲେ । ସେବା ଦରକାର କରୁଥିବା ନାରୀ ଜଣକ କୁଷ୍ଠରୋଗୀ ହୋଇଥିବାରୁ ଭୀମାବାଈ ଦ୍ୱିଧା ପ୍ରକାଶ କରିବା ମାତ୍ରେ ବାବା କହିଲେ ଯେ ରୋଗିଣୀ ଜଣକ ତାଙ୍କର ଭଉଣୀ । ତା'ର ସେବା କରିବା ନିତାନ୍ତ ଦରକାର । ଭୀମାବାଈ ସମ୍ମତି ପ୍ରକାଶ କଲେ । ସେହିପରି ବାବା ବାଲାଜୀ ପଟେଲ ନେଭାସ୍କର ନାମକ ଜଣେ ବ୍ୟକ୍ତିକୁ ନିର୍ଦ୍ଦେଶ ଦେଇଥିଲେ ପ୍ରେମପୂର୍ଣ୍ଣ ଭାବରେ ଗୋଟିଏ ମୁସ୍‌ଲିମ୍ କୁଷ୍ଠରୋଗୀର ସେବା କରିବା ପାଇଁ ।

**କର୍ମତତ୍ତ୍ୱ**

ଶିରିଡ଼ିର ସାଇବାବା ଆଳସ୍ୟକୁ ସଦାସର୍ବଦା ସମାଲୋଚନା କରୁଥିଲେ । ସଂସାରରେ କର୍ତ୍ତବ୍ୟ ସଂପାଦନ କରି, ଶାସ୍ତ୍ର ଅଧ୍ୟୟନ କରି ଏବଂ ଭଗବାନଙ୍କ ନାମ ସ୍ମରଣ କରି ଜୀବନ ଯାପନ କରିବା ପାଇଁ ସଦୁପଦେଶ ଦେଉଥିଲେ । ଥରେ ଜଣେ ଭକ୍ତକୁ ଟୀକ୍‌କା ସମ୍ବଳିତ ବାଳଗଙ୍ଗାଧର ତିଳକଙ୍କ ଲିଖିତ 'ଗୀତା ରହସ୍ୟ' ପୁସ୍ତକଟି ଉପହାର ରୂପେ ପ୍ରଦାନ କରିଥିଲେ । ଗୀତ ରହ୍‌ସ୍ୟ ପୁସ୍ତକଟି କର୍ମଯୋଗ ମହତ୍ତ୍ୱ ଉପରେ ଆଧାରିତ । ଏଥିରୁ ବାବାଙ୍କର କର୍ମଯୋଗ ସଂପର୍କୀୟ ପ୍ରାଧାନ୍ୟ ଲକ୍ଷ୍ୟ କରାଯାଏ ।

କର୍ମର ତାତ୍ତ୍ୱିକ ରୂପଲେଖ ସଂପର୍କରେ ବାବାଙ୍କ ମତ ହିନ୍ଦୁ ସଂସ୍କୃତି ପର୍ଯ୍ୟବସିତ ଥିଲା । କର୍ମଗତ ନିୟମର ଘୋଷଣା କରି ବାବା କହୁଥିଲେ – ''ତୁମେ ଯେପରି କରିବ, ସେପରି ପାଇବ, ଯେପରି ଦେବ ସେପରି ପାଇବ ।'' ବାବା ନିଜର ଅନୁଗତମାନଙ୍କୁ ଶିକ୍ଷା ଦେଇଥିଲେ ଯେ ବର୍ତ୍ତମାନର କେତେକ ପରିଣତ ନିଜ କୃତ କର୍ମର ଫଳ ବୋଲି ସହଜରେ ଜାଣିହେବ । ଅନ୍ୟ କେତେକ ସ୍ଥଳରେ ପରିଣତିର ଉତ୍ପତ୍ତିସ୍ଥଳ କେଉଁଠି, ତାହା ଜାଣି ନ ପାରିଲେ ମଧ୍ୟ ଏସବୁ ପୂର୍ବଜନ୍ମର କର୍ମଫଳ

ବୋଲି ଗ୍ରହଣ କରିବାକୁ ହେବ । ପୂର୍ବକର୍ମର ଭିନ୍ନତା ଫଳରେ ବର୍ତ୍ତମାନର ପରିଣତି (ଫଳାଫଳ) ପୃଥକ୍ ପୃଥକ୍ ହୋଇଥାଏ ।

ପୂର୍ବ କର୍ମରୁ ଏପରି ପ୍ରାଧାନ୍ୟ ଥିଲେ ମଧ୍ୟ ନୈରାଶ୍ୟ ମନୋଭାବ ଦୂର କରିବାକୁ ବାବା ଉପଦେଶ ଦେଇଛନ୍ତି । ବିଶ୍ୱଜାଗତିକ ନୀତିନିୟମର ଶାସନକୁ ଗ୍ରହଣ କଲେ ଅନେକ ମାନସିକ ବ୍ୟଥା ଦୂରହୋଇଯିବ, ପୁନଶ୍ଚ ସଚେତନ ହୋଇ ବର୍ତ୍ତମାନ ସଦାଚାରପୂର୍ଣ୍ଣ କାର୍ଯ୍ୟ କଲେ ଭବିଷ୍ୟତରେ ଆଶଙ୍କା ରହିବ ନାହିଁ ।

ପ୍ରାରବ୍ଧ ବା ପୂର୍ବ କର୍ମର ଚାପ ଯେତେ ବେଶୀ ହେଉନା କାହିଁକି, ସାଇନାଥଙ୍କ ଚରଣାଶ୍ରିତ ବ୍ୟକ୍ତିବିଶେଷଙ୍କ ପାଇଁ ସବୁଠାରୁ ଆଶ୍ୱାସନାର ବିଷୟ ହେଉଛି ତାଙ୍କର ଅଭୟବାଣୀ । ଥରେ ସେ ଭକ୍ତମାନଙ୍କୁ ଆଶ୍ୱାସନାର ବାଣୀ ଶୁଣାଇ କହିଥିଲେ – ''ତୁମ୍ଭେମାନେ ମୋତେ ଧ୍ୟାନ କର, ମୋର ନାମ ସ୍ମରଣ କର, ମୋର କଥା ଗାନ କର । ତୁମର ରୂପାନ୍ତର ଘଟିବ । ତୁମର କର୍ମସବୁ ବିଧ୍ୱଂସ ହେବ । ମୁଁ ତୁମ ପାଖେପାଖେ ରହିଥିବି ।''

କର୍ମକ୍ଳିଷ୍ଟ ସଂସାରରେ ଯାତ୍ରା କରୁଥିବା ସମୟରେ ଏହା ଅପେକ୍ଷା ଅଧିକ ଶକ୍ତିଦାୟକ ଆଉ କ'ଣ ହୋଇପାରେ ? କର୍ମର ଚାପରେ ନିଷ୍ପେଷିତ ହେଉଥିବା ବେଳେ ଏପରି ବିଶ୍ୱାସ ଅପେକ୍ଷା ଅଧିକ ଉପଯୋଗୀ ଔଷଧ ଆଉ କ'ଣ ହୋଇପାରେ ? ଅତୀତର ଭୀତି ଓ ଭବିଷ୍ୟତର ଆଶଙ୍କାରେ ଆନ୍ଦୋଳିତ ହେଉଥିବା ମୁହୂର୍ତ୍ତର ଏପରି ଅଭୟ ଆଶ୍ୱାସନା କି ସମ୍ଭାବନା ସୃଷ୍ଟି ନ ପରିପାରେ ?



# ଦୈନନ୍ଦିନ ଜୀବନରେ ଜ୍ଞାନ, ଭକ୍ତି ଓ କର୍ମର ସମନ୍ୱୟ

ଆତ୍ମୋପଲବ୍ଧି ପାଇଁ ଜ୍ଞାନ, ଭକ୍ତି ଓ କର୍ମ ମାର୍ଗର ମହତ୍ତ୍ୱ ଭାରତୀୟ ଦର୍ଶନରେ ବିସ୍ତୃତ ଭାବରେ ଆଲୋଚିତ ହୋଇଛି । ଶ୍ରୀମଦ୍ ଭଗବଦ୍ ଗୀତାରେ ଜ୍ଞାନ, ଭକ୍ତି ଓ କର୍ମ ଯୋଗର ସ୍ୱରୂପ ସୁନ୍ଦରଭାବେ ଚିତ୍ରିତ । ସାଧନାର ସଫଳତା ପାଇଁ ପ୍ରତିଟି ମାର୍ଗର ଉପାଦେୟତା ସୃଷ୍ଟି ଓ ପ୍ରମାଣିତ । ପରିପକ୍ୱତାର ଅଭାବ ଫଳରେ ବ୍ୟକ୍ତି ମନରେ ବେଳେବେଳେ ପ୍ରଶ୍ନ ଉଠେ – କେଉଁ ମାର୍ଗଟି ଅଧିକ ସହଜ ଓ ନିଶ୍ଚିତ ଫଳପ୍ରଦ ? ପ୍ରକୃତରେ ଯେ କୌଣସି ମାର୍ଗର ଗଭୀରତା ହିଁ ବ୍ୟକ୍ତିର ସାଧନାକୁ ଫଳବତୀ କରାଏ । ଅବଶ୍ୟ ଜଣେ ବ୍ୟକ୍ତି ମନରେ କୌତୂହଳପୂର୍ଣ୍ଣ ଜିଜ୍ଞାସା ଆସିପାରେ – କେଉଁ ମାର୍ଗଟି ତା'ର ନିଜ ବ୍ୟକ୍ତିତ୍ୱ ପକ୍ଷେ ଅଧିକ ଉପଯୋଗୀ ? ପୁଣି ଜଣେ ବ୍ୟକ୍ତିର ଜୀବନରେ ଜ୍ଞାନ, କର୍ମ ଓ ଭକ୍ତିର ସମନ୍ୱୟ ସମ୍ଭବ କି ?

ବାସ୍ତବରେ ଗଙ୍ଗା, ଯମୁନା ଓ ଅନ୍ତଃସଲୀଳା ସରସ୍ୱତୀର ସଙ୍ଗମସ୍ଥଳ ପବିତ୍ରତାର ସ୍ୱରୂପ ହେଲାଭଳି ଜୀବନରେ ଜ୍ଞାନ, ଭକ୍ତି ଓ କର୍ମର ସମନ୍ୱୟ ମଧ୍ୟ ଜୀବନକୁ ପବିତ୍ର କରେ । ସାଧାରଣ ବ୍ୟାବହାରିକ ଦୃଷ୍ଟିକୋଣରୁ ବିଚାର କଲେ ମନୁଷ୍ୟ ଜୀବନର ବହୁକ୍ଷେତ୍ରରେ ଜ୍ଞାନ, ଭକ୍ତି ଓ କର୍ମର ସମାବେଶ ଘଟୁଛି । ଖାଦ୍ୟ ଖାଇବାର କଥା ବିଚାର କରାଯାଉ । ଶରୀର ରକ୍ଷା ଓ ଶରୀର ପୁଷ୍ଟିସାଧନା ପାଇଁ ରୁଟି ଖାଇବାକୁ ହେବ – ଏପରି ଭାବନା ହେଉଛି ଜ୍ଞାନ । ଆଗ୍ରହର ସହିତ ରୁଟି ଖାଇବା ହେଉଛି ଭକ୍ତି ଏବଂ ରୁଟି ଖାଇବା ଓ ଖାଇବାର ପ୍ରସ୍ତୁତି ପର୍ବ ହେଉଛି କର୍ମ । ଦୈନନ୍ଦିନ ଜୀବନରେ ଜ୍ଞାନ, ଭକ୍ତି ଓ କର୍ମ ସମ୍ମିଳିତ ଭାବରେ ରହିଛି । ତଥାପି ଏ ତିନୋଟି ଉପାଦାନକୁ ସମନ୍ୱିତ କରି ସାଧନାକୁ ଦୃଢ଼ତର କରିବାକୁ ହେଲେ ମନୁଷ୍ୟକୁ କିଛି ପଦକ୍ଷେପ ନେବାକୁ ହେବ । ପ୍ରଥମେ ଜ୍ଞାନ, ଭକ୍ତି ଓ କର୍ମର ସଂକ୍ଷିପ୍ତ ଓ ପ୍ରୟୋଗାତ୍ମକ ଅର୍ଥ ବିଚାର କରାଯାଉ ।

ବେଦରେ ଚାରୋଟି ଅଭିବ୍ୟକ୍ତିକୁ 'ମହାକାବ୍ୟ'ର ସ୍ୱୀକୃତି ଦିଆଯାଇଛି । ପ୍ରଥମଟି ହେଉଛି – 'ପ୍ରଜ୍ଞାନଂ ବ୍ରହ୍ମଃ' । ବିଶ୍ୱଚୈତନ୍ୟ ସବୁଠାରେ ସବୁବସ୍ତୁରେ

ପରିବ୍ୟାପ୍ତ । ଦ୍ୱିତୀୟଟି ହେଉଛି – 'ଅହଂ ବ୍ରହ୍ମାସ୍ମି' ଏହା ଅର୍ଥ ହେଉଛି ଯେ ମୁଁ ମଧ୍ୟ ସେହି ପରିବ୍ୟାପ୍ତ ଚୈତନ୍ୟର ଅଂଶବିଶେଷ । ତୃତୀୟ ମହାବାକ୍ୟଟି କହେ 'ତତ୍ତ୍ୱମସି' । ସେ ପୂର୍ବରୁ ଥିଲା ଏବଂ ପରେ ମଧ୍ୟ ରହିବ । ଚତୁର୍ଥଟି ହେଉଛି – 'ଅୟଂ ଆତ୍ମା ବ୍ରହ୍ମଃ' । ବ୍ରହ୍ମ ସବୁବେଳେ ଦୀପ୍ତ ।

ଚାରୋଟିଯାକ ମହାବାକ୍ୟର ନିର୍ଯ୍ୟାସ ହେଉଛି ଜୀବାତ୍ମା ଓ ପରମାତ୍ମାଙ୍କ ମଧ୍ୟରେ ଅଭେଦତ୍ୱ, ବ୍ୟକ୍ତିଚେତନା ଓ ବିଶ୍ୱଚେତନାର ଏକତ୍ୱକୁ ଏକ ଉପଲବ୍ଧି କରିବା ହିଁ ଜ୍ଞାନ । ଏହି ସତ୍ୟ ବା ଜ୍ଞାନ ସମ୍ମୁଖରେ ମାୟାର ପରଦା ରହିଥିବାରୁ ଆମେ ପରମାତ୍ମାଙ୍କୁ ଭେଦ କରି ସତ୍ୟକୁ ଦେଖିବା କଷ୍ଟକର ହୁଏ ।

ଅଭେଦତ୍ୱର ଉପଲବ୍ଧି କିପରି କଷ୍ଟକର ତାହା ଏକ ଉଦାହରଣ ଦ୍ୱାରା ସ୍ପଷ୍ଟ କରାଯାଇପାରେ । ତରଙ୍ଗ ସମୁଦ୍ରର ଏକ ଅଂଶବିଶେଷ । ମାତ୍ର ଏପରି ଉପଲବ୍ଧି ସବୁବେଳେ ସହଜରେ ଆସି ନଥାଏ । ସମୁଦ୍ରର ତରଙ୍ଗକୁ ସ୍ପର୍ଶ କଲାଭଳି ଅତି ପାଖରେ ଥାଇ ତରଙ୍ଗ ଓ ସମୁଦ୍ରକୁ ଲକ୍ଷ୍ୟ କଲେ ଦୁଇଟିର ଏକତ୍ୱ ଖୁବ୍ ସହଜରେ ଜାଣିହୁଏ । କିଛି ଦୂରରେ ଓଦା ବାଲି ଉପରେ ଠିଆ ହୋଇଥିଲେ ଅଳ୍ପ ଟିକିଏ ଅଧିକା ସମୟ ଲାଗେ । ସମୁଦ୍ର ଉଚ୍ଛଳ ଥିଲାବେଳେ ଢେଉ ସବୁ ଆସି ଏ ବାଲୁକା ସବୁକୁ ସିକ୍ତ କରି ଚାଲିଯାଇଛି, ଏହା ଜାଣିହୁଏ । ଆଉ କିଛି ଦୂରରେ ଗୋଟିଏ ଛୋଟ ଖାଲରେ ପାଣିକୁ ଦେଖି ହଠାତ୍ ମନକୁ ଆସି ନଥାଏ ଯେ ଏହା ସମୁଦ୍ରର ପାଣି । ମାତ୍ର କିଛି ସମୟ ଚିନ୍ତା କଲା ପରେ ଏହା ସ୍ପଷ୍ଟ ହୁଏ ଯେ ଅତୀତରେ ସମୁଦ୍ରର ପାଣି ଆସି ଏହି ଖାଲୁଆ ସ୍ଥାନରେ ଅଟକି ଯାଇଛି । ପୁଣି ଅନ୍ୟ ସମୟରେ ଆକାଶର ମେଘ ଓ ସମୁଦ୍ର ମଧ୍ୟରେ ଥିବା ସଂପର୍କ କଥା ମନକୁ ଆସେ ନାହିଁ । ଭାବନା ଚିନ୍ତା ପରେ ହିଁ ସ୍ପଷ୍ଟ ହୁଏ ଯେ ଗ୍ରୀଷ୍ମକାଳର ଉତ୍ତାପ ଫଳରେ ବାଷ୍ପୀଭୂତ ସମୁଦ୍ର ଜଳ ଆକାଶରେ ରହିଥିଲା ଏବଂ ବର୍ତ୍ତମାନ ତାହା ବର୍ଷାଜଳ ହୋଇ ପୃଥିବୀକୁ ସ୍ପର୍ଶ କରୁଛି । ପୁଣି ବରଫକୁ ଦେଖି ବରଫ ଓ ସମୁଦ୍ର ଜଳ ମଧ୍ୟରେ ଥିବା ସଂପର୍କକୁ ଜାଣିହୁଏ ନାହିଁ । ଜଳର ଭୌତିକ ପରିବର୍ତ୍ତନ ଫଳରେ ବରଫ ଏପରି ରୂପ ନେଇଥାଏ ଯେ ଅଭେଦତ୍ୱର ପରିକଳ୍ପନା କରିବା ସମ୍ଭବପର ହୁଏ ନାହିଁ । ମାତ୍ର ଜ୍ଞାନୀ ମାୟାର ସକଳ ଆବରଣକୁ ଭେଦକରି ଜୀବ ଓ ବ୍ରହ୍ମ ମଧ୍ୟରେ ଅଭେଦତ୍ୱ ଦେଖେ ।

ଭକ୍ତି ହେଉଛି ଭଗବାନଙ୍କ ପ୍ରତି ଅନୁରକ୍ତି । ଶ୍ରୀମଦ୍ ଭଗବତ୍ ଗୀତାର ଦ୍ୱାଦଶ ଅଧ୍ୟାୟରେ ଭକ୍ତିର ସ୍ୱରୂପ ଏବଂ ଭକ୍ତିର ଲକ୍ଷଣ ସ୍ପଷ୍ଟଭାବେ ବର୍ଣ୍ଣନା କରାଯାଇଛି । ଭକ୍ତର ଲକ୍ଷଣ ସଂପର୍କରେ କୁହାଯାଇଛି ଯେ –

''ଅନପେକ୍ଷଃ ଶୁଚିର୍ଦକ୍ଷ ଉଦାସୀନୋ ଗତବ୍ୟଥଃ ।
ସର୍ବାରମ୍ଭପରିତ୍ୟାଗୀ ଯୋମେଦ୍‌ଭକ୍ତଃ ସ ମେ ପ୍ରିୟଃ ॥''

ଭକ୍ତ ସଦାସର୍ବଦା ବାସନା ରହିତ । ତା' ପାଖରେ ବାହାରର ଓ ଭିତରର ପବିତ୍ରତା ରହିଛି । ସେ ଦକ୍ଷ । ସେ ସୁଖ ଦୁଃଖରେ ବିଚଳିତ ନୁହେଁ । ସେ ଅତୀତ ବ୍ୟଥାରୁ ମୁକ୍ତ ଏବଂ କର୍ତ୍ତାର ଅହମିକାରୁ ମୁକ୍ତ ।

ଭକ୍ତି ଭାବର ପ୍ରକୃଷ୍ଟ ଉଦାହରଣ ହେଉଛନ୍ତି ଗୋପୀଗଣ । ଗୋପୀମାନେ ଯାହା ଭାବୁଥିଲେ ତାହା ଶ୍ରୀକୃଷ୍ଣଙ୍କ ପାଇଁ । ଗୋପୀମାନେ ଯାହା କହୁଥିଲେ ସେ ସବୁର କେନ୍ଦ୍ରବିନ୍ଦୁ ଥିଲେ ଶ୍ରୀକୃଷ୍ଣ । ସୁତରାଂ ନିଜକୁ ସର୍ବତୋଭାବେ ସମର୍ପଣ କରିଦେବା ହିଁ ଭକ୍ତିଭାବ । ଶରଣାଗତି ହେଉଛି ଭକ୍ତି ଭାବର ନିଦର୍ଶନ, ମୁଖ୍ୟତଃ 'ତବାସ୍ମିନ୍' ବା 'ମୁଁ ତୁମର' – ଏହି ଭାବର ଗଭୀରତା ହେଉଛି ଭକ୍ତି ।

ସେହିପରି ଗୀତାର ତୃତୀୟ ଅଧ୍ୟାୟରେ କର୍ମଯୋଗର ବିସ୍ତାରିତ ବ୍ୟାଖ୍ୟା ରହିଛି । ମନୁଷ୍ୟ କର୍ମ କଲାବେଳେ ଯେଉଁ ମନୋବୃତ୍ତି ନେଇ କର୍ମ କରେ ସେହି ମନୋବୃତ୍ତି ଉପରେ ନିର୍ଭର କରି କିଛି 'କର୍ମଯୋଗ'ର ସ୍ୱୀକୃତି ଲାଭ କରେ । ସେ ନିଜର ମନୋବୃତ୍ତି ନେଇ ପ୍ରଭୁ ପାଇଁ କର୍ମ କରିବା ହିଁ କର୍ମଯୋଗର ମୂଳଭିତ୍ତି । ''ତଦର୍ଥ କର୍ମ କୌନ୍ତେୟ'' ଅଭିବ୍ୟକ୍ତିରେ ଏହି ମର୍ମ ସ୍ପଷ୍ଟ ପ୍ରତିଫଳିତ । ବ୍ୟକ୍ତି ଯେଉଁ ସବୁ କର୍ମ କରୁଛି, ସେସବୁ କର୍ମ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ନିବେଦିତ ହେଲେ ବ୍ୟକ୍ତି କର୍ମଯୋଗୀ ରୂପେ ଈଶ୍ୱରଙ୍କ ସହିତ ସଂଯୁକ୍ତ ହେବାର ସୌଭାଗ୍ୟ ଲାଭ କରେ ।

ମୋଟ ଉପରେ ଜୀବାତ୍ମା ଓ ପରମାତ୍ମାଙ୍କ ମଧ୍ୟରେ ଅଭେଦତ୍ୱ ଜ୍ଞାନ, 'ମୁଁ ତୁମର' ବୋଲି ଭାବି ଈଶ୍ୱରଙ୍କ ପ୍ରତି ଗଭୀର ଅନୁରକ୍ତି ହେଉଛି ଭକ୍ତିଭାବ ଏବଂ ଈଶ୍ୱରଙ୍କ ପ୍ରୀତି ପାଇଁ କର୍ମ କରିବାର ମନୋବୃତ୍ତି ହେଉଛି କର୍ମଯୋଗର ସାରକଥା ।

ବର୍ତ୍ତମାନ ପ୍ରଶ୍ନ ହେଉଛି – ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତି ପାଇଁ କେଉଁ ମାର୍ଗଟି ଅଧିକ ଉପଯୋଗୀ ? ପୂର୍ବରୁ କୁହାଯାଇଛି ଯେ ଜୀବନ କ୍ୟାନ୍‌ଭାସ୍‌ରେ 'ଜ୍ଞାନ, ଭକ୍ତି ଓ କର୍ମର ତିନୋଟି ମୌଳିକ ରଂଗ' ସମ୍ମିଳିତ ଭାବରେ ମିଶାମିଶି ରହିଥାଏ । ତେବେ କୌଣସି କୌଣସି ବ୍ୟକ୍ତିଙ୍କ କ୍ଷେତ୍ରରେ ଗୋଟିଏର ପ୍ରାଧାନ୍ୟ ଥାଇପାରେ । କେବଳ ଜ୍ଞାନ ପୃଥକ୍ ହୋଇ ରହିବାରେ ଅସୁବିଧା ରହିଛି । କେବଳ ଜ୍ଞାନ ବ୍ୟକ୍ତି ମନରେ ଅହମିକା ସୃଷ୍ଟି କରି ଈଶ୍ୱରଙ୍କଠାରୁ ଦୂରେଇ ନିଏ । ସେଥିପାଇଁ ଗୀତାରେ

କୁହାଯାଇଛି – ''ଶ୍ରଦ୍ଧାବାନ ଲଭତେ ଜ୍ଞାନମ୍'' । ଜ୍ଞାନ ସହିତ ଶ୍ରଦ୍ଧା ବା ଭକ୍ତି ଭାବ ମିଶ୍ରିତ ହେଲେ ଜ୍ଞାନର ପରିପକ୍ୱତା ବୃଦ୍ଧି ପାଏ । ସେହିପରି ଭକ୍ତି ଭାବର ବ୍ୟକ୍ତି ସଚେତନ ଥାଏ ଯେ ଈଶ୍ୱର ହେଉଛନ୍ତି ସବୁ ପ୍ରୀତିର କେନ୍ଦ୍ରବିନ୍ଦୁ । ଏପରି ସଚେତନଶୀଳତା ହିଁ ଜ୍ଞାନ । ପୁଣି ଜ୍ଞାନ ଓ ଭକ୍ତି ବ୍ୟକ୍ତିଙ୍କୁ ନିଷ୍କ୍ରିୟ ନ ରଖି ସଦାସର୍ବଦା ଈଶ୍ୱରାଭିମୁଖୀ କର୍ମରେ ନିୟୋଜିତ କରେ । ସୁତରାଂ ଜ୍ଞାନ, ଭକ୍ତି ଓ କର୍ମର ସମାରୋହ ଜୀବନର ଏକ ସ୍ୱାଭାବିକ ପ୍ରକ୍ରିୟା ।

ତେବେ ମନୁଷ୍ୟର ମୁଖ୍ୟ ସମ୍ବଳସବୁକୁ ବିଚାର କଲେ ଦେଖାଯିବ ଯେ ତାହାର ତିନୋଟି ମୁଖ୍ୟ ସମ୍ବଳ ରହିଛି । ସେଗୁଡ଼ିକ ହେଉଛି ଶରୀର, ମନ ଓ ଆବେଗ । ସୁସ୍ଥ ସବଳ ଶରୀର ଅଧିକ କର୍ମ ତତ୍ପର । ସୁତରାଂ ଶାରୀରିକ ପୁଷ୍ଟିଲାଭ କରିଥିବା ବ୍ୟକ୍ତି ସେବା କାର୍ଯ୍ୟରେ ଅଧିକ ଶକ୍ତି ପ୍ରୟୋଗ ସଫଳ କର୍ମର ହୋଇପାରିବ । ଜୀବନରେ କର୍ମଯୋଗର ଉନ୍ମେଷ ଓ ବିକାଶ ଏଠାରେ ଅଧିକ ଫଳପ୍ରଦ ହେବ ।

ବ୍ୟକ୍ତିର ଅନ୍ୟ ସମ୍ବଳଟି ହେଉଛି ମନ, ବିଶେଷକରି ଭାବନା ପ୍ରକ୍ରିୟା । ବ୍ୟକ୍ତି ଇନ୍ଦ୍ରିୟସବୁର ସହାୟତା ଦେଖି ବାହ୍ୟଜଗତକୁ ପ୍ରତ୍ୟକ୍ଷ କରେ ଏବଂ ମାନସିକ ସ୍ତରରେ ବିଚାର ଭାବନା କରେ । ମନର ସକ୍ରିୟତା ଭାବନାରେ ପ୍ରତିଫଳିତ ହୁଏ । ଆମେ ସମସ୍ତେ ମାନସିକ କ୍ରିୟାକଳାପ କରୁଥିଲେ ମଧ ମନ ଓ ବୁଦ୍ଧିର ପ୍ରୟୋଗ କ୍ଷେତ୍ରରେ କେତେକ ବ୍ୟକ୍ତିଙ୍କର କୁଶଳତା ରହିଥାଏ । ଏପରି ଭାବନାଦକ୍ଷ ବ୍ୟକ୍ତିମାନେ ସତ୍ୟାସତ୍ୟର ଅନୁସନ୍ଧାନ କରି ପ୍ରକୃତ ଜ୍ଞାନ ଆହରଣରେ ବ୍ରତୀ ହୋଇପାରିବେ । ତେଣୁ ଭାବନା ଦକ୍ଷ ବ୍ୟକ୍ତିଙ୍କ ପାଇଁ ଜ୍ଞାନଯୋଗ ଅଧିକ ଉପଯୋଗୀ ମନେହୁଏ ।

ଭକ୍ତି ଭାବନା ଆବେଗ ଉପରେ ଆଧାରିତ । ଭାବ ମଧ ମନୁଷ୍ୟର ଅନ୍ୟତମ ସମ୍ବଳ । କୌତୂହଳର ବିଷୟଟି ମନୁଷ୍ୟ ମନର ଭୌତିକ ପ୍ରତିନିଧି ରୂପେ ସକ୍ରିୟ ଥିବା ମସ୍ତିଷ୍କ ମଧ ଦୁଇଟି ଶକ୍ତିର ସମାହାର । ମନୁଷ୍ୟ ମସ୍ତିଷ୍କର ବାମ ଗୋଲାର୍ଦ୍ଧଟି ବିଚାର ଆଲୋଚନାରେ ସକ୍ରିୟ ରହୁଥିବାରୁ ଏହାକୁ ଭାବନା ମସ୍ତିଷ୍କ କୁହାଯାଇପାରେ । ଅନ୍ୟପକ୍ଷରେ ଦକ୍ଷିଣ ଗୋଲାର୍ଦ୍ଧଟି ଭାବର ନିୟନ୍ତ୍ରଣ ଓ ପରିପ୍ରକାଶରେ ଅଂଶ ନେଉଥିବାରୁ ଏହାକୁ ଭାବ ମସ୍ତିଷ୍କ କୁହାଯାଇପାରେ । ଗଠନ ଦୃଷ୍ଟିରୁ ମସ୍ତିଷ୍କ ଗୋଟିଏ ହେଲେ ମଧ ଭୂମିକା ଦୃଷ୍ଟିରୁ ଦୁଇ ମସ୍ତିଷ୍କର ସ୍ପଷ୍ଟ ପରିପ୍ରକାଶ ରହିଛି । ଆମ ମଧମରେ ଏପରି ବ୍ୟକ୍ତି ଅଛନ୍ତି ଯେଉଁମାନଙ୍କର ଭାବ ଅଧିକ ବିକଶିତ । ଏପରି ଭାବ-ପ୍ରଧାନ ବ୍ୟକ୍ତିମାନେ ଭକ୍ତିମାର୍ଗର ପଥିକ ହେଲେ ସେମାନଙ୍କର ସାଧନା ତ୍ୱରାନ୍ୱିତ ହେବାର ସମ୍ଭାବନା ଅଧିକ ରହିବ ।

ଶାରୀରିକ ପୁଷ୍ଟି ଲାଭ କରିଥିବା ବ୍ୟକ୍ତି କର୍ମଯୋଗର ପଥିକ, ଭାବନା-ପ୍ରଧାନ ବ୍ୟକ୍ତି ଜ୍ଞାନ ମାର୍ଗର ପଥିକ ଏବଂ ଭାବ-ପ୍ରଧାନ ବ୍ୟକ୍ତି ଭକ୍ତି ଯୋଗର ପଥିକ ହେବା ଏକ ପ୍ରକାର ସମାଧାନ । ପୁଣି ଦୈନନ୍ଦିନ ଜୀବନରେ ଜ୍ଞାନ, ଭକ୍ତି ଓ କର୍ମର ସମନ୍ୱୟ ଘଟାଇବା ଅନ୍ୟ ଏକ ବିଜ୍ଞତା ।

ମନୁଷ୍ୟ ଏକ ଉପଯୋଗୀ ମନୋଭାବ ନେଇ ଦୈନନ୍ଦିନ ଜୀବନରେ ଜ୍ଞାନ, ଭକ୍ତି ଓ କର୍ମଯୋଗର ସମନ୍ୱୟ ଘଟାଇ ପାରିବ । ମନୁଷ୍ୟର କର୍ମମୟ ଜୀବନ ଆରମ୍ଭ ହୁଏ ପ୍ରାତଃକାଳରୁ । ଶଯ୍ୟାତ୍ୟାଗ କରି ସେ ଦାନ୍ତ ଘଷିବା, ସ୍ନାନ ଓ ଜଳଖିଆ ଖାଇବା ପରି କେତେକ ନିତ୍ୟ ନୈମିତ୍ତିକ କାର୍ଯ୍ୟ କରେ । ଅନେକ ସମୟରେ ଗତାନୁଗତିକ ଭାବରେ ଏପରି ସବୁ ରୁଟିନବନ୍ଧା କାମ କରିବାରେ କିଛିଟା ବିରକ୍ତିଭାବ ରହିଥାଏ । କିନ୍ତୁ କର୍ମଯୋଗୀର ଭାବ ନେଇ ବ୍ୟକ୍ତି ଅନ୍ୟ ପ୍ରକାର ଚିନ୍ତା କରିପାରେ । ଅତି ପ୍ରତ୍ୟୁଷରୁ ଉଠି ମନ୍ଦିରର ପୂଜକ ମନ୍ଦିରର ସେବା କାର୍ଯ୍ୟ କରିଥାଏ । ହୁଏତ ସେ ବେଢ଼ା ପରିଷ୍କାର କରେ, ମନ୍ଦିରରେ ଅଧିଷ୍ଠିତ ବିଗ୍ରହଙ୍କର ସେବା କରିଥାଏ । ସ୍ନାନ କରାଇବା ଏବଂ ବସ୍ତ୍ର ପିନ୍ଧାଇବା ପରି କାର୍ଯ୍ୟସବୁ କରିବା ସେବକ ବା ପୂଜକର କାର୍ଯ୍ୟ । ଠିକ୍ ସେହିପରି ଆମେ ସକାଳେ ନିତ୍ୟକର୍ମ କଲାବେଳେ ଭାବିବା ଉଚିତ ଯେ ଭଗବାନ ହେଉଛନ୍ତି ଆମ ହୃଦୟର ଅଧିଷ୍ଠିତ ଈଶ୍ୱର । ସୁତରାଂ ଆମର ଦେହ ରୂପକ ଦେବାଳୟକୁ ପରିଷ୍କାର କରିବା, ତାକୁ ସଜାଇବା ଆମର ଦାୟିତ୍ୱ । ଭିତର ଓ ବାହାରର ପବିତ୍ରତା ରକ୍ଷାପାଇଁ ଆମକୁ କିଛି କରିବାକୁ ହେବ । ଶରୀରକୁ ଭଗବାନଙ୍କ ମନ୍ଦିରର ମର୍ଯ୍ୟାଦା ଦେଇ ନିତ୍ୟକର୍ମ ସବୁ ସମାପନ କଲେ ମାନସିକ ଆନନ୍ଦ ମିଳିବ ।

ସେହିପରି ଆମେ କର୍ମକ୍ଷେତ୍ରକୁ ଯିବାପରେ ସେଠାରେ ଉପସ୍ଥିତ ଥିବା ଲୋକ ବା ଅନ୍ୟସବୁ କର୍ମଚାରୀମାନେ ଆମ ପାଇଁ ଈଶ୍ୱର ସଦୃଶ । ସୁତରାଂ ଅନ୍ୟମାନଙ୍କର ହିତ ହେଲାଭଳି କାର୍ଯ୍ୟ ରହିଛି କର୍ମଯୋଗର ଅଭିବ୍ୟକ୍ତି । ଶିକ୍ଷକ ଛାତ୍ରଛାତ୍ରୀମାନଙ୍କୁ ଈଶ୍ୱର ମନେ କରି ସେମାନଙ୍କୁ ପଢ଼ାଇବେ । ଛାତ୍ରଛାତ୍ରୀମାନେ ଶିକ୍ଷକଙ୍କୁ ଈଶ୍ୱର ମନେ କରି ଗ୍ରହଣଶୀଳତା ଦର୍ଶାଇବେ । ସଂସ୍ଥାର ଅଧସ୍ତନ କର୍ମଚାରୀ ଉପରିସ୍ଥ ବ୍ୟକ୍ତିକୁ ଈଶ୍ୱର ଜ୍ଞାନରେ ଶ୍ରଦ୍ଧା ସମ୍ମାନ ଜଣାଇବେ । ଉପର କର୍ତ୍ତୃପକ୍ଷ ଅଧସ୍ତନ କର୍ମଚାରୀଙ୍କ ମଧ୍ୟରେ ଈଶ୍ୱରଙ୍କ ପ୍ରତିମୂର୍ତ୍ତି ଦେଖି ସେମାନଙ୍କୁ ସ୍ନେହ ଦେବେ ।

କର୍ମସଂସ୍ଥାକୁ ନ ଯାଇ ଘରେ ସମୟ କାଟୁଥିବା ବ୍ୟକ୍ତି ଓ ମହିଳାମାନେ ମଧ୍ୟ କର୍ମଯୋଗର ସାଧନା କରିପାରିବେ । ଘରେ ପ୍ରସ୍ତୁତ ହେଉଥିବା ଖାଦ୍ୟ ପୁତ୍ରକନ୍ୟାଙ୍କ ପାଇଁ ନୁହେଁ, ଏହା ନରନାରାୟଣ ରୂପେ ପିଲାମାନଙ୍କ ପାଇଁ । ଏପରି ଭାବାନା ଖାଦ୍ୟ ପ୍ରସ୍ତୁତିରେ ପବିତ୍ରତାପୂର୍ଣ୍ଣ ମନ ଆଣିଦେବ । ପ୍ରତିଟି କାର୍ଯ୍ୟକୁ ଈଶ୍ୱରଙ୍କ ସହିତ ସଂଯୋଜିତ କରିବା ସମ୍ଭବ । ବାସନପତ୍ର ଧୋଇବା ବେଳେ ମନରେ ଜମିରହିଥିବା ମଇଳା ସବୁ ଧୋଇଯାଉଛି । ପରିବା କାଟିବା ସମୟରେ ଅହମିକା ସବୁ କଟିଯାଉଛି । ରୁଟିର ଆକାର ବର୍ତ୍ତୁଳାକାର ହୋଇ ପ୍ରସାରିତ ହେବା ସମୟରେ ହୃଦୟର ଭାବ ପ୍ରସାରିତ ହେଉଛି । ଏପରି ସବୁ ଭାବନା ପ୍ରତିଟି କର୍ମକୁ ସମର୍ପିତ କର୍ମରୂ ରୂପ ଦେବ ।

ପ୍ରଶ୍ନ ଉଠିପାରେ ଯେ ଦୈନନ୍ଦିନ ଜୀବନର କର୍ମ ପ୍ରବାହ ମଧ୍ୟରେ କର୍ମୀ ହେବା ସମ୍ଭବ ହେଲେ ମଧ୍ୟ ଜ୍ଞାନ ଓ ଭକ୍ତିର ସଂଯୋଜନା କିପରି କରାଯିବ ? କାର୍ଯ୍ୟର ସମୟକୁ ବାଦ୍ ଦେଲେ ବ୍ୟକ୍ତି ଅନ୍ୟ କେତେକ ସମୟରେ ଚୁପ୍‌ଚାପ୍ ବସି ଚିନ୍ତା କରେ । ଅବସର ସମୟ କଟାଏ । ଦିବାସ୍ୱପ୍ନ ଓ ମନୋବିଳାସ (Fantasy) ରେ କଟାଇ ଏପରି ସବୁ ମୁହୂର୍ତ୍ତକୁ ଭାବନା-ପ୍ରଧାନ ମୁହୂର୍ତ୍ତରେ ପରିଣତ କରି ସେସବୁକୁ ଈଶ୍ୱରାଭିମୁଖୀ କରିହେବ । ମନ୍ଦିରରେ ବସିଥିବାର ପରିକଳ୍ପନା କରି କିମ୍ବା ନିଜର ପୂଜନରେ ବସିଥିବାର କଳ୍ପନା କରି ଈଶ୍ୱର ଚିନ୍ତା ଅଣାଯାଇପାରିବ । ନିଜର ଇଷ୍ଟଦେବଙ୍କ ସହିତ ମନେ ମନେ କଥାବାର୍ତ୍ତା କରିବାର ଅଭିନୟ କରାଯାଇପାରିବ । ନିଜ ପାଖରେ ଇଷ୍ଟଦେବଙ୍କର ଉପସ୍ଥିତିକୁ କଳ୍ପନା କରି ନିଜର ଅନ୍ତରର କଥା ତାଙ୍କ ପାଖରେ ବାଢ଼ି ଦେଇହେବ । ଏପରି ସବୁ ପବିତ୍ର ଭାବନା ଜ୍ଞାନର ପରିପ୍ରକାଶ । ଜୀବାତ୍ମା ଓ ପରମାତ୍ମାଙ୍କ ମଧ୍ୟରେ ଥିବା ଅଭେଦତ୍ୱର ଉପଲବ୍ଧି ପୂର୍ବରୁ ଭଗବାନଙ୍କର ସର୍ବବ୍ୟାପକତ୍ୱ ଏବଂ ତାଙ୍କ ସାମୀପ୍ୟ ଅନୁଭବ କରିବାର ଏହା ସହଜ ଉପାୟ ।

ସେହିପରି ମନୁଷ୍ୟର ଭାବମୟ ମୁହୂର୍ତ୍ତ ମଧ୍ୟ ରହିଛି । ମନୋଜ୍ଞ ଦୃଶ୍ୟ ଦେଖି, ସୁମଧୁର ଗୀତ ଶୁଣି, ସତ୍‌ସଙ୍ଗ ଲାଭ କରି ମନୁଷ୍ୟ ମନରେ ସୁନ୍ଦର ଭାବର ଉଦୟ ହୁଏ । ହୃଦୟରେ ପ୍ରୀତି ଓ ଆନନ୍ଦ ଜାଗରିତ ହୋଇଥିବାବେଳେ ତାହା ଈଶ୍ୱରାଭିମୁଖୀ କରିହେବ । ମନୋଜ୍ଞ ପ୍ରାକୃତିକ ଦୃଶ୍ୟ ଈଶ୍ୱରଙ୍କ ପରିପ୍ରକାଶ ଭାବି ହୃଦୟର କୃତଜ୍ଞତା ଜଣାଇବାକୁ ହେବ । ସ୍ଥୂଳତଃ ଭଲ ସମୟରେ ହୃଦୟରେ ପ୍ରୀତି, ଆନନ୍ଦ ଓ ପ୍ରସନ୍ନତା

ପରି ଭଲ ଭଲ ଭାବ ଉଚ୍ଛୁଳି ଉଠୁଥିବା ସମୟରେ ତାହାର କେନ୍ଦ୍ରବିନ୍ଦୁ ରୂପେ ଈଶ୍ୱରଙ୍କୁ ସେସବୁର ଉତ୍ସ ରୂପେ ନିବେଦନ ଜଣାଇବା ଭକ୍ତି ଯୋଗର ଅଭିବ୍ୟକ୍ତି ହେବ ।

ଜ୍ଞାନ, ଭକ୍ତି ଓ କର୍ମ ଭିନ୍ନ ଭିନ୍ନ ନୁହନ୍ତି । ଦୈନନ୍ଦିନ ଜୀବନର ଗତି ମଧ୍ୟରେ ଏ ତିନୋଟି ଧାରାର ଏକତ୍ରୀକରଣ ସମ୍ଭବ । କର୍ମମୟ ମୁହୂର୍ତ୍ତରେ ସମର୍ପିତ କର୍ମର ମନୋଭାବ, ଭାବନାମୟ ମୁହୂର୍ତ୍ତରେ ଈଶ୍ୱରଙ୍କର ଚିନ୍ତା ଏବଂ ଆନନ୍ଦ ବେଳାରେ ଈଶ୍ୱରଙ୍କୁ ପ୍ରୀତିର ସହିତ ସମର୍ପଣ ସାଧନାକୁ ମହତ୍ତର କରିବା ସଂଗେ ସଂଗେ ଆତ୍ମୋପଲବ୍ଧିର ମାର୍ଗ ପ୍ରଶସ୍ତ କରିବ । ଅବତାର ପୁରୁଷ ଶ୍ରୀ ଶିରିଡ଼ି ସାଇଙ୍କ ଦିବ୍ୟ ସନ୍ଦେଶରେ ଏବଂ ତାଙ୍କର ଦିବ୍ୟ ସଂକଳ୍ପରେ ଏ ତିନୋଟି ଧାରାର ସମନ୍ୱୟ ଆମ ଜୀବନ ପାଇଁ ସ୍ପଷ୍ଟ ସଂକେତ ବହନ କରିଛି ।





# ଶ୍ରୀ ଶିରିଡ଼ି ସାଇବାବାଙ୍କ ଏକାଦଶ ପ୍ରତିଶ୍ରୁତି

୧. ଯେକୌଣସି ବ୍ୟକ୍ତି ଶିରିଡ଼ି ମାଟିରେ ପାଦ ଦେବା କ୍ଷଣି ତା'ର ସକଳ ଦୁଃଖ କ୍ଲେଶର ପରିସମାପ୍ତି ଘଟିବ ।

୨. ମୋ ମସଜିଦ୍‌ର ପାହାଚକୁ ଉଠିବା ମାତ୍ରକେ ଅତି ଦୀନହୀନ ଲୋକଙ୍କର ମନ ମଧ୍ୟ ପ୍ରଭୂତ ଆନନ୍ଦ ଉଲ୍ଲାସରେ ଭରି ଉଠିବ ।

୩. ଏଇ ମର ଶରୀର ତ୍ୟାଗ କଲା ପରେ ମଧ୍ୟ ମୁଁ ସଦାସର୍ବଦା କର୍ମକ୍ଷମ ଓ ଶକ୍ତିମନ୍ତ ହୋଇ ରହିବି ।

୪. ମୋ ଆଶ୍ରିତମାନଙ୍କ ଇଚ୍ଛାନୁଯାୟୀ ମୋ ସମାଧି ସେମାନଙ୍କୁ କଥା କହିବ ଓ ଆଶୀର୍ବାଦ ପ୍ରଦାନ କରିବ ।

୫. ମୋ ସମାଧି ଭିତରୁ ହିଁ ମୁଁ ଶକ୍ତିମନ୍ତ ଓ କର୍ମକ୍ଷମ ହେବି ।

୬. ସମାଧି ଭିତରୁ ମୋ ମର ଶରୀର ବିଶେଷ କଥା କହିବ ।

୭. ଯେଉଁମାନେ ମୋ ନିକଟକୁ ଆସନ୍ତି, ମୋ ପାଖରେ ଆତ୍ମସମର୍ପଣ କରନ୍ତି ଓ ମୋର ଶରଣାପନ୍ନ ହୁଅନ୍ତି ସେମାନଙ୍କୁ ସାହାଯ୍ୟ କରିବାକୁ, ପଥ ଦେଖାଇବାକୁ ମୁଁ ଚିରଜାଗ୍ରତ ।

୮. ତୁମେ ମୋ ଆଡ଼କୁ ଚାହିଁଲେ ମୁଁ ତମକୁ ଚାହିଁବି ।

୯. ତୁମର ସକଳ ଭାର ମୋ ଉପରେ ଛାଡ଼ିଦେଲେ ମୁଁ ନିଶ୍ଚିତ ଭାବରେ ତାହା ବହନ କରିବି ।

୧୦. ତୁମେ ମୋ ଉପଦେଶ ଓ ସାହାଯ୍ୟ ଚାହିଁଲେ ତାହା ତୁମକୁ ତତ୍‌କ୍ଷଣାତ୍ ମିଳିବ ।

୧୧. ମୋ ଭକ୍ତ ଓ ଆଶ୍ରିତମାନଙ୍କ ଗୃହରେ ଅଭାବ ବୋଲି କିଛି ରହିବ ନାହିଁ ।



"ତୁମେ ମୋ ଆଡକୁ ଚାହଁ; ମୁଁ ତୁମ ଆଡେ ଚାହିଁବି ।
ଈଶ୍ୱର ଯାହା ଦିଅନ୍ତି, ତାହା ସରେ ନାହିଁ । ମଣିଷ ଯାହା
ଦିଏ, ତାହା ରହେ ନାହିଁ ।"

-ସାଇବାବା

## 'ସାଇ କଲ୍ଲୋଳ'ର କଳେବର ମଧ୍ୟରେ

- ସାଇଲୀଳାର ଝଲକ
- ଦୈନନ୍ଦିନ ଜୀବନ ପାଇଁ ମାର୍ଗ ଦର୍ଶନ
- ପରିବାର ପାଇଁ ଶାନ୍ତିମନ୍ତ୍ର
- ସାମାଜିକ ଜୀବନ ପାଇଁ ନୀତିବାଣୀ
- ଆଧ୍ୟାତ୍ମିକ ପ୍ରଗତି ପାଇଁ ଅଭୟବାଣୀ





ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ

ବିନୋଦବିହାରୀ, କଟକ-୭୫୩୦୦୨